**ମେଜର ଅପାରେଶନ୍**—ଲେଖକ : ବସନ୍ତ କୁମାର ଶତପଥୀ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୯୨, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରାକର : ଦୁର୍ଗାମାଧବ ପ୍ରେସ୍, ଡଗରପଡ଼ା, କଟକ-୨



**MEJAR APARATION**—Author : Basanta Kumar Satapathi, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), 1st Edition : 1992, Cover Design : Asit Mukherjee, Printer : Durgamadhaba Press, Dagarapara, Cuttack-2

PRICE : Rs. 22.

DELUX : Rs. 28.

# ସୂଚୀପତ୍ର

ବିଷୟ | ପୃଷ୍ଠା


| ବିଷୟ | ପୃଷ୍ଠା |
|---|---|
| ୧ । ମେଜର ଅପାରେଶନ୍ | ୧-୧୭ |
| ୨ । ବେଲ୍ଲ | ୧୮-୨୯ |
| ୩ । କୂଳଗାଁର ଶ୍ରୀମତୀ ସରୋଜିନୀ ମାହାନ୍ତି କେଆର୍‌ଅଫ୍ ସୁଦାମ ମାହାନ୍ତି | ୩୦-୪୩ |
| ୪ । ଅବଶୋଷ | ୪୪-୫୭ |
| ୫ । ପୁଅ ହେବୁ ବା ଝିଅହେବୁ | ୫୮-୬୯ |
| ୬ । ସେବା ଓ ସାଥୀ | ୭୦-୭୯ |
| ୭ । ସୋଽହମ୍ | ୮୦-୮୬ |
| ୮ । ଭାଲୁ ଶିକାର | ୮୭-୯୯ |
| ୯ । ରକ୍ତମନ୍ଦାର | ୧୦୦-୧୦୬ |
| ୧୦ । ତାକୁ କାହିଁକି ? | ୧୦୭-୧୧୭ |
| ୧୧ । ସୀମାରେଖା | ୧୧୮-୧୨୭ |
| ୧୨ । ଅପମୃତ୍ୟୁ—ଗୋଟିଏ କୁଷ୍ଠରୁଗ୍ଣାର | ୧୨୮-୧୪୪ |
| ୧୩ । କୁକୁର | ୧୪୫-୧୫୪ |
| ୧୪ । ଖୁଚୁରା | ୧୫୫-୧୬୨ |
| ୧୫ । ଜନ୍ମଦିନ | ୧୬୩-୧୬୮ |




# ମେଜର ଅପାରେଶନ୍

"ଦେଖ ବାପା, ମୁଁ ଆଗରୁ ତୁମକୁ କହୁଛି ଷାଠିଏ ବା'ଷଠି ବର୍ଷ ବୟସ ପରେ ନିହାତି ଦରକାର ନ ହେଲେ, ମେଜର ଅପାରେଶନ୍ କରିବା ଶାସ୍ତ୍ର ମନା କରୁ ନ କରୁ, ଉଚିତ ନୁହେଁ । ତଥାପି ଯଦି ସମସ୍ତେ ମିଶି ନିଷ୍ପତ୍ତି ନେଲ ଏବଂ ଆମର ଏତେ ମଡ଼ାର୍ଣ୍ଣ ବଡ଼ ହସ୍ପିଟାଲର ପ୍ରଖ୍ୟାତ ସର୍ଜନ ଅପାରେଶନ କରିବାକୁ ରାଜି ହୋଇଛନ୍ତି ତଥାପି ଏବେ ବି ମୋର ମତ ଏ ଯେଉଁ ପରିବେଶରେ ଏହି ନର୍ସିଂହୋମ୍ ରହିଛି ଏବଂ ଯେଉଁ ତଥାକଥିତ କେବିନ୍‌ରେ ତୁମକୁ ରଖା ହୋଇଛି ସେଥିରେ ତୁମେ ଯାହା ଭାବ ମୋର ସମ୍ମତି ନାହିଁ ।" ମୋ ଡାକ୍ତର ପୁଅ ସାଫ୍ ସାଫ୍ କହିଗଲା ପନ୍ଦୁଁ ଚଲ୍ଲ ମାସେ ।

କାଲି ସକାଳ ଆଠଟାରେ ଅପାରେଶନ, ପାଖ କୋଠରୀକୁ ଓ ଟି ଅର୍ଥାତ୍ ଅପାରେଶନ ଥିଏଟରରେ ପରିଣତ କରାଯାଇ ସାରିଲାଣି । ଧୂଆଧୋଇ ଝାଡ଼ୁଖାଡ଼ୁ ଶବ୍ଦ ମୁଁ କବାଟ ଫାଙ୍କ ଦେଇ ଶୁଣିପାରୁଛି । ଭିଟାମିନ୍ କେବା ଔଷଧ ଯାହା ଚବିଶ ଘଣ୍ଟା ପୂର୍ବରୁ ଦେବା କଥା ତା' ମଧ୍ୟ ଆରମ୍ଭ ହୋଇଗଲାଣି । ଯାହା କିଛି ସାହସ ବାନ୍ଧିଥିଲି ତାହା ବି କ୍ରମେ ଢିଲା ହୋଇଗଲାଣି । ମନରେ ଯାହା କିଛି ବଳ ରହିଛି ତାହା କେବଳ ଜ୍ଞାତିକୁଟୁମ୍ବ, ପୁଅବୋହୂ, ନାତିନାତୁଣୀ ସମୁଧି ସମୁଧିଆଣୀଙ୍କ ସନ୍ନିଧି ଓ ସ୍ନେହବାଣୀ ପାଇଁ । "କିଛି ହବନି, ସବୁ ଠିକ୍ ଅଛି ।"

କିନ୍ତୁ ମୁଁ ବେଶ୍ ଜାଣିଛି ଆମର ଏ ପ୍ରାଇଭେଟ୍ ନର୍ସିଂହୋମ୍‌କୁ ପସନ୍ଦ କରିବା ଠିକ୍ ହୋଇନି । କ'ଣ ବା କରାଯାନ୍ତା—ବଡ଼ ଡାକ୍ତରଖାନାରେ ବେଡ଼୍ ନାହିଁ,

ଇମାର୍ଜେନ୍‌ସି କେସ୍‌ଟରୁ ଭୁଇଁରେ ଗଡ଼ୁଛନ୍ତି, ନର୍ଦ୍ଦମାରେ ଶୋଉଛନ୍ତି । ଏଇଟା ନାମକୁ ନର୍ସିଂହୋମ୍ । ପାଖରେ ଗୋଟାଏ ଦୁର୍ଗନ୍ଧମୟ ପଚାଗାଡ଼ିଆ, ଗୁଣପୋକ ଘାସ ଆବର୍ଜନା ଅଳିଆମଳିଆ । ସେଥିରେ ଭେଲା ଭେଲା ବୁଲା କୁକୁର । ତାଙ୍କ ଉତ୍ପାତ ଓ ମଶାମାଛିଙ୍କ ଦୌରାତ୍ମ୍ୟରେ ମୁର୍ଦ୍ଦାର ଛଡ଼ା ଆଉ କେହି ଏଠି ରହି ଶୋଇ ପାରିବେ ନାହିଁ । ସାନପୁଅ ଯେ କ ମତେ କହିଛି ତା'ର ଦୁଃଖ ମୋର ଶୋଚନୀୟ ଅବସ୍ଥାକୁ ବଳିଯାଇଛି । ପାଇଖାନା ମୋର ଗୋଡ଼ତଳେ । ଜଣେ ପାଇଖାନା ଗଲେ ଆଉ ଜଣକୁ ବାହାରକୁ ଯିବାକୁ ପଡ଼େ । ଯେଉଁ ଖଟଟି ମତେ ମିଳିଛି, ତା'ଦିନ ତଳେ ନଅ ବର୍ଷର ଝିଅଟିଏ ଅପରେସନ ପରେ ଧନୁଷ୍ଟଙ୍କାରରେ ମରିଛି । ତା' ଛଡ଼ା ମୋ ପିଠିର ଘାଅ ଅଦ୍ୟାପି ଶୁଖିନି—ପୂଜ ଅଛି । ଏତେବେଳେ ଅପରେସନ କଲେ ସେପ୍‌ଟିକ୍ ହୋଇଯିବ । ଏ ପୁରୁଣା ଘରଟି କୁଆଡ଼େ ଜଣେ ଡାକ୍ତରଙ୍କ ପୈତୃକ ସମ୍ପତ୍ତି । ତ ତିନି ବର୍ଷ ପାଇଁ ଆଉ ଜଣେ ଡାକ୍ତରଙ୍କୁ ଭଡ଼ା ଦେଇ ସେ ବିଲାତ ଯାଇଛନ୍ତି । ଯିଏ ବଡ଼ ଡାକ୍ତର ମତେ କାଟିବେ ବୋଲି ରାଜି ହୋଇଛନ୍ତି ସେ ଫିସ୍ ପାଇଁ ସେତେ ଅଗ୍ରହୀ ବା ଉତ୍ସୁକ ନୁହନ୍ତି ଅନ୍ତତଃ ମୋ କେସ୍‌ରେ କୌଣସି କାରଣରୁ । କିନ୍ତୁ ତାଙ୍କ ଏସିଷ୍ଟେଣ୍ଟ୍ ପାଣ୍ଡୁଚିଆ ଡାକ୍ତରଟିର ହାତ ଖଳବଳ କରୁଛି, କାଟିବା ପାଇଁ ନୁହେଁ ଫିସ୍ ନେବା ପାଇଁ । 'କାଟ' କହିଲେ ସେ କୁରାଢ଼ି କୋଦାଳରେ ହେଉ କାଟି ପକେଇବ । ମୁଁ ତ ଖାଲି ନର୍ଭସ୍ ପେସେଣ୍ଟ୍ । ପୁଅ ଯିମିତି ଖୋଲିଖୋଲି ତା ମନକଥା କହିଦେଇଛି ମୋର ଚିନ୍ତାଧାରା ଅନ୍ୟ ଆଡ଼କୁ ଗତି କଲା । ହୋଇପାରେ ପୁଅ ଅନଭିଜ୍ଞ ଯୁବକ ଡାକ୍ତର; କିନ୍ତୁ ବାପର ଜୀବନ ପାଇଁ ସେ ଯେତେ ବ୍ୟସ୍ତ ବା ସତର୍କ ହେବ ଅନ୍ୟ କେହି ସେମିତି ହେବେ ନାହିଁ । ମୁଁ ତ ତାକୁ ଟେଲିଗ୍ରାମ କରି ଅଣାଇଛି । ତା' ସହିତ ପରାମର୍ଶ କରି ଉପଦେଶ ମାଗିବା ପାଇଁ । ଆସି ପହଞ୍ଚି ସେ ଜଣ ଜଣ କରି ପ୍ରତ୍ୟେକଙ୍କୁ ବୁଝେଇଛି କିମିତି ଆମେ ଅବିବେକୀ ଅବିମୃଶ୍ୟକାରୀର କାମ କରିବାକୁ ଯାଉଛୁ । ଇମାର୍ଜେନ୍‌ସି ଅବସ୍ଥା ତ ଚାଲିଯାଇଛି; ଧୀରେ ସୁସ୍ଥେ ବୁଝି, ବିଚାରି କାମ କରାଯାଉ । ସମସ୍ତେ ମିଳୁଛୁ; ତେଣୁ ମୋତେ ତା' ସହିତ ତା'ର ଡାକ୍ତରଖାନାକୁ ଚାଲିଯିବା ପାଇଁ କହିଲା । ସ' ସହରଯାକ ସମସ୍ତେ ଏକାଠି ବସି ହେଇ ନିଷ୍ପତ୍ତି କଲେ । ମୋର ମନର ବଳ ପରୀକ୍ଷା କରିବା ପାଇଁ ସମସ୍ତଙ୍କ ତରଫରୁ ବଡ଼ପୁଅ କହିଲା 'ବାପା, ଆମେ ସମସ୍ତେ ଠିକ୍ କଲୁଁ ତୁମର ଏଇଠି

ଅପାରେଶନ ହେବ ।' ଡାକ୍ତର ପୁଅ ମଧ୍ୟ ଗମ୍ଭୀର ହୋଇ ଠିଆ ହୋଇଥାଏ ଦେଖେଁବେଳେ ।

ମୁଁ ରାଗିଗଲି । "ତୁମର ଏ କଷ୍ଟଦ୍ୟି ମୁଁ ମାନିବି ନାହିଁ, ଏଠି ମୋର ପେଟ କଟା ହେବନି । ତୁମେ ସବୁ କ'ଣ ଜୋର୍ ଜବରଦସ୍ତ ନେଇ ଟେବୁଲ ଉପରେ ପକାଉଛ କି ?" ପୁଅ ସାମାନ୍ୟ ମୁରୁକି ହସି କହିଲା, 'ବାପା, ମୁଁ ମାତ୍ର ଦୁଇ ଦିନ ଛୁଟିନେଇ ଆସିଛି । ତା' ଛଡ଼ା ମୋର ଏଠି ରହିବା ନ ରହିବା ସମାନ । କାରଣ ଯେଉଁମାନେ ଅପାରେଶନ କରିବେ ସେମାନେ ମୋର ଗୁରୁସ୍ଥାନୀୟ ସେମାନଙ୍କୁ ମୁଁ କିଛି କହିପାରିବି ନାହିଁ । ତୁମର ଆଖି ବନ୍ଦହୋଇ ଆସୁଥିବ, ନାଡ଼ି ଗୁଡ଼ି ଅସୁଥିବ, ମୁଁ ଗୁହିଁରହିଥିବି, ମାତ୍ର ମୁହଁକୁ ଭାଷା ଫୁଟିବନି । ତା' ଛଡ଼ା ଆଉ ଗୋଟାଏ କଥା ଭାବ । ହୋଇପାରେ ପୃଥ୍ୱୀ-ପ୍ରସିଦ୍ଧ ସର୍ଜନ ତୁମର ଅପାରେଶନ କଲେ, ସେ ପେଟ କାଟି ଗଲ୍‌ବ୍ଲାଡ଼ର ବାହାର କରିଦେବେ । ମାତ୍ର ନର୍ସିଂ, ଆଫ୍‌ଟରକେୟାର ବଡ଼ କଥା । ଏଠି ତୁମେ ଯଥୋଚିତ ଯତ୍ନ ଚିକିତ୍ସା ପାଇବ ନାହିଁ । ମନର ଅବସ୍ଥା ଅନୁସାରେ ରୋଗ ଶୀଘ୍ର ଅବା ଡେରିରେ ଭଲ ହୁଏ । ତୁମେ ମୋ ସାଙ୍ଗରେ ଆସ । ଅଯଥା କେହି ତୁମ ପାଇଁ ଅଙ୍କେଠିତ ହେବେନି ମୋ ପାଖରେ ଆଦର ଯତ୍ନ ଚିକିତ୍ସା ସବୁ ପାଇବ, ନାମମାତ୍ର ଖର୍ଚ୍ଚରେ ।

ଏତେ ନାମଜାଦା ସର୍ଜନଙ୍କୁ ଆମର ଶେଷ ନିଷ୍ପତ୍ତି ଜଣାଇବାକୁ କେହି ରାଜି ହେଲେନି । ମୁଁ ସାହସ ବାନ୍ଧି କହିଲି; ଡାକ୍ତର ବାବୁ, ମୋର ଭାଗ୍ୟରେ ନାହିଁ ଆପଣଙ୍କ ପରି ବଡ଼ ସର୍ଜନଦ୍ୱାରା ଅପରେଟେଡ଼୍ ହେବାକୁ, ମୋର ସାହସ କୁଲାଉନି । କାଲି ମୁଁ ଅପାରେଶନ ହେବିନି । ଘରକୁ ଯିବି ପୁଣି ସାହସ ବାନ୍ଧି ଆସିବି । ମହାନୁଭବ ଡାକ୍ତର କହିଲେ 'ମୁଁ, କିଛି ଭାବିବି ନାହିଁ । ଆପଣ କେଉଁଠି କଟେଇବେ କଟାନ୍ତୁ । ଶତକଡ଼ା ଦୁଇ ଭାଗ ଲୋକ ଅପାରେଶନ ଟେବୁଲରୁ ନିରାପଦ ହୋଇ ଘରକୁ ଫେରିଯାଆନ୍ତି ଆପଣ ଜଣେ ।'

ଆମେ ତାଙ୍କଠୁ ପ୍ରାଇଭେଟ୍ ନର୍ସିଂହୋମ୍ ଛାଡ଼ିଲୁ । ତେତିଶ ଘଣ୍ଟା ରହିବା ପରେ ଶହେ ଆଠଟଙ୍କା ଦେବାକୁ ପଡ଼ିଲା । ପ୍ରତ୍ୟେକଟି ଇଞ୍ଜେକ୍‌ସନ ଦେବା ପାଇଁ

ନର୍ସ ନେଲ ପାଞ୍ଚଟଙ୍କା, ପ୍ରତିଥର ବଥ ସେକିବା ତୁଳା, ବେଣ୍ଡେଜ, ଗରମ ପାଣି, ପାଇଖାନା ପ୍ରତିଟିର ଅଲଗା ଅଲଗା ଚାର୍ଜ । ବିନା ଅପାରେଶନରେ ବୁଦ୍ଧୁପଣ ଧରି ଘରକୁ ଫେରିବାରୁ କେତେ କେତେ ମୁହଁରେ ଲୁଗା ଦେଇ ହସିଲେ । ମାତ୍ର ମୁଁ ମନକୁ ଧନ୍ୟବାଦ ଦେଲି ଯେ ଥରେ ପାଇଁ ଜୀବନ ବଞ୍ଚାଇ ଫେରି ପାରିଲି । ସେହି ରାତିରେ ପୁଅ ପାଖରେ ଚାଲିଗଲି । ଘରପାଖ ଷ୍ଟେସନ ଦେଇ ଗଲାବେଳେ ଗ୍ରେଟ ପୋଷା କୁକୁରଟିକୁ ଦେଖିବାକୁ ପ୍ରବଳ ଇଚ୍ଛା ହେଲା । କିନ୍ତୁ ରାତି ଅଢେଇଟାରେ ମୋର ଏ ବାସନା ପୂରଣ କରିବ କିଏ ? କାଲି ସକାଳ ଆଠଟାରେ ଫାଶିପାଉଥିବା ଲୋକକୁ ଯଦି ଆଜି ସନ୍ଧ୍ୟାବେଳେ କେହି କହେ ଫାଶୀ ଦିନ ଅନିର୍ଦ୍ଦିଷ୍ଟକାଳ ପାଇଁ ଘୁଞ୍ଚିଗଲା ତେବେ ତା' ମନ ଯିମିତି ହେବ ମୋତେ ସିମିତି ଲାଗିଲା । ତରବରିଆ ବିନା ପରୀକ୍ଷା ନିରୀକ୍ଷାରେ ଅପାରେଶନ ଟେବୁଲକୁ ଯିବା ପ୍ରଶ୍ନ ଆଉ ନାହିଁ । ଡାକ୍ତର ପୁଅର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତା'ର ଘରେ ରହିଲି ଆରାମରେ । ଯଦି ନିତାନ୍ତ ଦରକାର ପଡ଼ିବ ତେବେ ସିଧା ଡାକ୍ତରଖାନାକୁ ଚାଲିଯିବା । ପ୍ରଥମେ ପୂଜଥିବା ଘାଅକୁ ଶୁଖେଇବା କଥା ।

ମୁଁ ଡାକ୍ତର ନୁହେଁ, ରୋଗୀ । କଥାରେ ଅଛି, ଏ ବର୍ଷର ମଲୁ ଅର ବର୍ଷକୁ ବଇଦ । ରୋଗଟା କଥା ମୁଁ ପ୍ରଥମେ କହିଦିଏଁ । ରୋଗଟାକୁ ଚିହ୍ନିବାକୁ ବହୁତ ଦିନ ଲାଗିଲା । ଗତ ବର୍ଷରେ ଦୁ'ଥର ଜଣ୍ଡିସ୍ ହେଲା । ଦୁ'ଥର ଯାକ ଡାକ୍ତରୀ ଚିକିତ୍ସାରେ ଭଲ ହେଲି; କିନ୍ତୁ ରୋଗ ସମ୍ପୂର୍ଣ୍ଣ ଆରୋଗ୍ୟ ହେଲାନି । ଯେଉଁ ଡାକ୍ତର ପାଖରେ ଅପାରେଶନ ନ ହୋଇ ଫେରି ଆସିଲି ସେ କାହା ପାଖରୁ ମୋ ରୋଗକଥା ଶୁଣି ପୁଅକୁ ଜଣାଇ ଥିଲେ ଟେଷ୍ଟ ଏକ୍ସରେ କରିବାକୁ । ଦୁ'ଥର ଏକ୍ସରେ କରିବା ପରେ ଯେଉଁ ରିପୋର୍ଟ ମିଳିଲା ସେଥିରେ ଲେଖାଥିଲା innumerable transluscient objects ଅର୍ଥାତ୍ ଅସଂଖ୍ୟ ଚକଚକିଆ ପଦାର୍ଥ ପିତ୍ତକୋଷରେ ରହିଛି । ଏଇ ପିତ୍ତକୋଷ ବା ଗଲ୍ ବ୍ଲାଡରରୁ ରସ ବାହାରି ଖାଦ୍ୟ ହଜମକୁ ସାହାଯ୍ୟ କରେ । କଲିଜା ପାଖକୁ ଲାଗି ସବୁଜ ପାଣିଜାତୀୟ ପଦାର୍ଥ ଏଇ କୋଷରେ ଥାଏ । ରୋଗୀମାନଙ୍କର ଏଇ ପିତ୍ତ ଫାଟିଗଲେ ମାନ୍ତ ପିତା ଲାଗେ । ରୋଗୀମାନଙ୍କର ଏଇ ପିତ୍ତକୁ ନେଇ କବିରାଜ ପ୍ରସ୍ତୁତ ଚିକିତ୍ସା କରେ । ଏଇ ପିତ୍ତକୋଷ ଭିତରକୁ

ସାହାଯ୍ୟ କରେ ଅଧିକା ପିତ୍ତ ଯୋଗାଇ । ପିତ୍ତ ଥଳା ଗ୍ରନ୍ଥିରେ ପଥର ଅଟକିଗଲେ ଦେହଯାକ ପିତ୍ତ ଖେଳିଯାଏ ଏବଂ ଜଣ୍ଡିସ୍ ହୁଏ । ଗୋଡ଼ିପଥର ଖାଇଲେ ପିତ୍ତକୋଷରେ ପଥର ଜମେ ନାହିଁ । ଦେହ ଅନୁସାରେ ଆପେ ଆପେ ଜନ୍ମେ ।

ରୋଗଟିର ଗୋଟିଏ କାବ୍ୟିକ ନାଆଁ । Land of the midnight sun ପରି ଏ ରୋଗର ନାଆଁ disease of the midnight pain ଖାଇବା ପିଇବା ଶୋଇବାରେ କିଛି ବିଭ୍ରାଟ ବା ଅନିୟମ ହୋଇ ନଥିବ, ଦସ୍ତପାଖ ହୋଇ ଆସିଲେ ହଠାତ୍ ଉପର ପେଟରେ ଏମିତ୍ତି ହେଲାପରି ଲାଗିବ । ଯନ୍ତ୍ରଣା ଆରମ୍ଭ ହୋଇଯିବ । ପେଟ ଭିତର ନିସ୍ତବ୍ଧ, ତୋଫାନ ପୂର୍ବ ବାୟୁମଣ୍ଡଳ ପରି । ତା'ପରେ ରୋଗ ବଢ଼ିବ । ନିରବଚ୍ଛିନ୍ନ ଉଃ ଆଃ ଉଃ । ମରିଗଲି ମରିଗଲି । ଶୋଇଲେ, ବସିଲେ ଉଠିଲେ କାହିଁରେ ରକ୍ଷା ନାହିଁ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ କାହିଁ ଠାବ ନାହିଁ । ରାତି ବାରଟା । ସମସ୍ତେ କାଠମୁଣ୍ଡା ପରି ଶୋଇଥିବେ । ଅତି ବେଶୀ ଚିତ୍କାର ଶୁଣିଲେ କୁନି କୁକୁରଟା ଖଟ ଉପରତଳ ହେଉଥିବ ଅନନ୍ୟୋପାୟ ହୋଇ । ସାଇକେଲ ଧରେ, କବାଟ ଫିଟାଏ ଏବଂ ନିର୍ଜନ ରାସ୍ତାରେ ଚକ୍କର ମାରେ । ରିଟାୟାର୍ଡ ସିଭିଲସର୍ଜନ ଜଣେ ଡେମ୍ପର ଖୋଲ ବସିଥାନ୍ତି (ରୋଗୀପରି ଡାକ୍ତରଙ୍କୁ ନିଦ ହୁଏନି !) କିଲୁସିଲ, ଡାଇଭଲ ଡାଇଜିନ ବଟିକା ଗୋଟାଏ ଦୁଇଟା ଦିଅନ୍ତି । ଘରକୁ ଫେରିଆସେ । ପାଣି ଗ୍ଲାସେ ଦୁଇଗ୍ଲାସ ପିଇ ଶୋଇବାର ଚେଷ୍ଟା କରେ । ଭୋର ବେଳକୁ କିମିତି କେଜାଣି ନିଦ କଡ଼େ ହୁଏ । ଉଠିଲାବେଳକୁ ଏକାବେଳେ ଫ୍ଲାଟ ପରି ଜଣାପଡ଼େ । କି କଷ୍ଟ ! ମନେପକାଏ ନାହିଁ ରାତିର ଯନ୍ତ୍ରଣା । ସବୁଦିନ ଏମିତି ହୁଏନି, କେବେ କିମିତି ହୁଏ । ଖାଦ୍ୟପାନୀୟରେ ସତର୍କତା, ସବୁ ସିଝା ଉପରେ, ମସଲା ନାହିଁ ଚର୍ବି ନାହିଁ, ଘର ବ୍ୟତୀତ ଦୁଧ, ଘୋଲ ଦହି, ହଳଦୀ ଲୁଣରେ ସିଝା ପଟପସ୍ୱା, ପୋଟଳ, ମାଛ, କଦଳୀ ଆଦି କେତେ କୃଚ୍ଛ୍ର ସାଧନ । ମୁଖମିଠା ଜେଲୁ—୫୨, ପେଭେଟ୍ ପେଭେଟ୍ ଇସଫ୍-ଗୋଲ, ପେପ୍ସିନ୍ ଥିବା ଟନିକ୍ । ହରଲିକ୍ସ, ଭଇଗ୍ନ । କାହିଁରେ ରକ୍ଷା ନାହିଁ । Death will come when it will come ରୋଗ ଆସିବା ମନକଲେ ଆସିବଇ ଆସିବ । କେଉଁ ଔଷଧରେ ସାକ୍ଷାତ୍ ତୁରନ୍ତ ଫଳ ମିଳିବ ନାହିଁ; ହୁଏତ ଗିଲାସେ ପାଣି ପିଇଦେଲେ ରୋଗ ହଠାତ୍ ଭଲ ହୋଇଯିବ ।' ଏ ରୋଗ ସାଙ୍ଗକୁ ଆଉ ଏକ ରୋଗ, ଯାହାକୁ ସ୍ନାୟୁ ରୋଗ ବିଶେଷଜ୍ଞ ପଜେସ୍ନାଲ ଭର୍ଟାଇଗୋ କହନ୍ତି ।

କଡ଼ ଲେଉଟାଇଲେ, ହଠାତ୍ ମୁଣ୍ଡ ଏପାଖ ସେପାଖ କଲେ କ'ଣ ନା କ'ଣ ହୋଇ-ଯିବ । ଗୋଡ଼ ଉପରକୁ ମୁଣ୍ଡ ତଳକୁ, ଦୁନିଆଁ ଘୂରୁଛି ପରି ଲାଗିବ, ଖଟ ମେଦିନୀ ତଳକୁ ଦବିଯାଉଛି ପରି ଜଣାଯିବ । ବର୍ଣ୍ଣିବାକୁ ଅଗହନ୍ତ କାହାର ହେବ ଏ ଅବସ୍ଥାରେ । ଛାତ୍ରଛାତ୍ରୀ ପିଲାପିଲିଙ୍କ ସହିତ କଥାବାର୍ତ୍ତା କରି, କ୍ଲାସରେ ପାଠ ପଢ଼ାଇ, ଲେଖାଲେଖି କରି, ବିଶେଷରେ Sense of humourକୁ ଉଜ୍ଜୀବିତ କରି ବଞ୍ଚିବା କଥା । ଅନ୍ୟଥା ଜୀବନ ମୂଲ୍ୟହୀନ, ଯନ୍ତ୍ରଣାଦାୟକ । ଅନୁଭବୀ କେହି ନାହିଁ ଯେ ଆଶ୍ୱାସନା ଦେବ ।

କଣ୍ଡିସ୍ ଅବସ୍ଥା ଆସିଲେ ଲକ୍ଷ୍ମଣ ମିଶ୍ରଙ୍କ ମନ୍ତ୍ରପୂତ ଆଠ ଚେର ଓ ଗୁଡ଼ଳଧୂଆ ପାଣି, ଅନ୍ୟଥା ଉପେନ୍ଦ୍ର, ବାୟୁରୋଗର, ଅଜୀର୍ଣ୍ଣର ଚିକିତ୍ସା । ଅସଂଖ୍ୟ Translucent object X'Rayରେ ଧରାପଡ଼ନ୍ତେ ଏସବୁର ଚିକିତ୍ସା ହେଲା । କେବଳ ପେଟରୁ ବା ଗଲ୍ ବ୍ଲାଡ଼ରରୁ ପଥର ଦୂର କରିବା କଥା । ତା'ର ଏକମାତ୍ର ଅମୋଘ ଉପାୟ ଅପାରେଶନ । ପଅଁଷଠୀ ବର୍ଷ ବୟସରେ ବୁଢ଼ା ବୟସରେ ଅପାରେଶନ ! ପୁଣି ଅମର ଏଠାରୁ ଡାକ୍ତରଖାନାରେ, ନର୍ସିଂହୋମରେ, ଯେଉଁଠି ହାଇଡ୍ରୋସିଲ ବା ଭାସାକ୍ଟୋମି ଅପାରେଶନ୍‌ରେ ମଧ୍ୟ ମୃତ୍ୟୁ ହୁଏ । ତଥାପି ଅପାରେଶନକୁ ଡରନ୍ତି ନାହିଁ; ମୃତ୍ୟୁଯନ୍ତ୍ରଣା ଅପେକ୍ଷା ମୃତ୍ୟୁ ଭଲ । ଏତେ ଲୋକଙ୍କ ରାତି ଅଧରେ ଅକାଳେସକାଳେ ହାଇରାଣ ହରକତ ନ କରି ଦୁନିଆଁରୁ ଗୁଳିଯିବା ଭଲ ।

ତେବେ ଅପାରେଶନ ମନା । ବୁଢ଼ା ଦେହ ସମ୍ଭାଳ ପାରିବ ନାହିଁ, ମେଜର ଅପାରେଶନ । ତେଣୁ ଆୟୁର୍ବେଦ ଚେଷ୍ଟା କରି ଦେଖାଯାଉ । ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ କବିରାଜଙ୍କୁ ଭେଟିଲି । ଟେବୁଲରେ ହାତ ବାଡ଼େଇ ପ୍ରତିଜ୍ଞା କଲେ ଏକୋଇଶ ଦିନରେ ପଥରସବୁକୁ ପରିସ୍ରାରେ ବାହାର କରିଦେବେ । କଳା ରଙ୍ଗର ବଟିକାକୁ କୋଳଥ ପାଣି ଅନୁପାନରେ ଖାଇବାକୁ ଦେଇ କହିଲେ— କୋଳଥ ପାଣି ପ୍ରତିଦିନ କେତେଟୋପା କରି ମାଙ୍କଡ଼ାପଥରରେ ଏକୋଇଶ ଦିନ ପକାନ୍ତୁ; ପଥର ଫାଟିଯିବ, ତରଳିଯିବ । ଏକୋଇଶ ଦିନ ଭିତରେ କିଛି ଯନ୍ତ୍ରଣା ନ ହେବାରୁ କବିରାଜଙ୍କୁ ପୁରସ୍କାର ତଥା ବଧାଇ ଦେବାକୁ ଗଲି । ସେ କହିଲେ, "ଆଉ ପଥରର ଦଣ୍ଡ ନାହିଁ, ସବୁ ନର୍ଗତ ହୋଇଯାଇଛି ।"

ତହିଁ ପରଦିନ ପ୍ରଚଣ୍ଡ ଢଙ୍ଗରେ ରୋଗ ବାହାରିଲା । ଏଥର ହୋମିଓପାଥି । ଦୈବାତ୍ ସେ ସମୟରେ ଜଣେ ପ୍ରଖ୍ୟାତନାମା କଲିକତା ହୋମିଓପାଥି ଡାକ୍ତର ସହରରେ ଅବସ୍ଥାନ କରୁଥାନ୍ତି । ସେ କୁଆଡ଼େ ଏରୋପ୍ଲେନରେ କାଉନ୍‌ସିଲ ମିଟିଂକୁ ଦିଲ୍ଲୀ ଯାଆନ୍ତି । ପ୍ରତ୍ୟକ୍ଷ ଦେବତା ପରି ତାଙ୍କ ଗୁଣଗ୍ରାମ । କାହା ଗୋଡ଼ ହାତ ଭାଙ୍ଗିଛି, ଠିକ୍ ତିନିମାସରେ ହାଡ଼ ଯୋଡ଼ିଯିବ । ଠିକ୍ ତିନିମାସରେ ରୋଗୀ ଚାଲିଲା । ଦି'ଟା ଚକ୍ଷୁ ଜନ୍ମରୁ ଫୁଟିଯାଇଛି, କୋଟିଏ ପାଓ୍ୱାରର ବଟିକା ଫାଳେ ଖାଇଛି; ଠିକ୍ ବର୍ଷକ ପରେ ଚକ୍ଷୁ ଫେରିପାଇଲା ରୋଗୀ । ଗଣ୍ଡି ଫୁଲିଥିଲା, ସାତଦିନ ପରେ ରୋଗୀ ଉଠିବସିଲାବେଳକୁ ଠୋ କରି ଶବ୍ଦ ହେଲା, ପାଣି ବାହାରିଗଲା । ରୋଗୀ ଚାଲିଲା, ଦୌଡ଼ିପାରିଲା । ତେଲ ଟାଉଟରମାନେ ଏମିତି କେତେ କ'ଣ ଅଦ୍ଭୁତ ହାନିମେନଙ୍କ ମହିମା ପ୍ରଚାର କରିଥାନ୍ତି । ଏତେ ମହିମାନ୍ୱିତ ବ୍ୟକ୍ତି ଠିକ୍ ଘଣ୍ଟାକରେ ସାକ୍ଷାତ୍ କରନ୍ତେ ସେ କହିଲେ, "ଅମର ସିମ୍‌ଟମ୍ ଉପରେ କେସ୍‌ଟା, ପେଟରେ ପଥର ଥାଉ କାଚ ଥାଉ । ସିମ୍‌ଟମ୍ କହିଲି । ସେ କହିଲେ, 'ଛଅ ହଜାର ପଡ଼ିବ ।' ଛଅ ହଜାର ଖର୍ଚ୍ଚ କରି ମରିବା ଭାହିଁକି ହେଉନି ଟଙ୍କାରେ ପୁଅମାନେ ସୁନ୍ଦର ପିତୃଶ୍ରାଦ୍ଧ ଜାକଜମକରେ କରିପାରିବେ ଏବଂ ବାପାଙ୍କ ମୃତ୍ୟୁ ପୁଣ୍ୟଙ୍କ ଉତ୍ସବର ଉପଲକ୍ଷ୍ୟ ହେବ । ପରେ ଶୁଣିଲି ସେ ଡାକ୍ତର କଲିକତାରୁ ଅମ ସହରକୁ ବାରମ୍ବାର ଆସନ୍ତି ମାଛ, ଭଲ ଚାଉଳ, ଦହି ଓ ମିଠା ଆଶାରେ ।

ମୋର ପିପିଲିକା ଅଣୁବତ୍ ଔଷଧରେ ବିଶ୍ୱାସ ନାହିଁ । ତଥାପି ଲୋକମୁଖରୁ ଅଲୌକିକ ଶକ୍ତିସମ୍ପନ୍ନ ଜନୈକ ସ୍ଥାନୀୟ ହୋମିଓପାଥଙ୍କ ନାଆଁ ଶୁଣି ସେନେ ଗଲି । ପ୍ରାୟ ପାଞ୍ଚ ଘଣ୍ଟା ଗବେଷଣା ପ୍ରଶ୍ନୋତ୍ତର ପରେ ସେ ପାଞ୍ଚଶହି ମୁଦ୍ରା ନେଇ ମୋତେ ହାତକୁ ନେଲେ । ପ୍ରଥମ ଔଷଧ ପରେ ଖାଇବା ମୁମୂର୍ଷୁର ଚିତ୍କାର ଓ ଯନ୍ତ୍ରଣାରେ ମୋ ଘର ଉଠିଲା ପଡ଼ିଲା । ଡାକ୍ତରଙ୍କୁ ପଚାରନ୍ତେ ସେ କହିଲେ, "ଔଷଧ ରୋଗକୁ ବଢାଏ, ତା'ପରେ ଆରୋଗ୍ୟ କରେ ।" ତାଙ୍କୁ ଛାଡ଼ିଲି ସେଇ ଦିନ । ଏବେ କେତେ-ଦିନ ତଳେ ତାଙ୍କ ସହିତ ଦେଖା ହେବାରୁ ସବୁକଥା କହିଲି ଏବଂ ସେ ଆଗ୍ରହ ପ୍ରକାଶ କଲେ ବୋତଲରେ ସଂରକ୍ଷିତ ପଥରସବୁ ଦେଖିବାକୁ, ସେଇ innumerable translucent objectଗୁଡ଼ିକୁ ।

ରୋଗ ଯଥାପୂର୍ବ ତଥା ପରମ୍ । ପୁଣି ଦିନେ ସନ୍ଧ୍ୟା ପାଞ୍ଚଟାରେ ଆରମ୍ଭ ହେଲା । ଦୈବକୁ ତିନି ନମ୍ବର ପୁଅ ( ତୁ ଦୀର୍ଘଜୀବୀ ହୁଅ, ବାପା ! ) ସେ ଦିନ ଆସିଥିଲା । ସେ ସେବାଶୁଶ୍ରୂଷାକୁ ବିରକ୍ତ ହୁଏ । କ'ଣ ଭାବିଲା, ଡାକ୍ତରଖାନା ନ ଯାଇ ଚାଲିଲା ଟେଲିଫୋନ ଏକ୍ସଚେଞ୍ଜକୁ ଏବଂ କାହା ସହିତ କ'ଣ ଠିକ୍‌ଠାକ୍ କଲା । ସେଇ ରାତ୍ରିରେ ଏକ୍ସପ୍ରେସରେ ଯାଇ ନର୍ସିଂହୋମ୍ ପର୍ଯ୍ୟନ୍ତ ଗଲା । ଡାକ୍ତର ସାହେବ କହିଲେ, 'ଲିଭର ପାଚିଗଲାଣି ବା ସିଦ୍ଧ, ଅପରେସନ କରିଦେବା' । ସେଇ ବ୍ୟବସ୍ଥା ହେଲା । ପଅଁଷଠୀ ବର୍ଷରେ କ'ଣ ଅଶୀ ବର୍ଷ ବୟସରେ ମଧ୍ୟ ଅପରେସନ ହେଉଛି । ଟେଲିଗ୍ରାମ୍ ସମସ୍ତଙ୍କ ପାଖକୁ ଗଲା । ଚବିଶ ଘଣ୍ଟାରେ ସମସ୍ତେ ଆସିଲେ । ପୂର୍ବ କଥାମତେ ଆଲୋଚନା ସରୁଥା ପରେ ମୁଁ ପୁଅଝିଅଙ୍କ ସଙ୍ଗରେ ଅନ୍ୟ ଏକ ବେସରକାରୀ ଡାକ୍ତରଖାନାକୁ ଏକ ଫେରନ୍ତା ଟ୍ରେନରେ ମୁହାଁଇଲି, ପିଗ୍ରରେ ଦୁଷ୍ଟ ବ୍ରଣର ଏକ ସୁଗନ୍ଧିର ପୂଜାମସ୍ତ ଗଣ୍ଡି ନେଇ ବାଟରେ ପ୍ରିୟ କୁକୁରଟିକୁ ଦେଖା କରି ନ ପାରି । ଡାକ୍ତରବାବୁଙ୍କ ବାପା ହିସାବରେ ମୋର ସାଙ୍ଗେ ସାଙ୍ଗେ ଏଡ୍‌ମିଶନ ହେଲା । କିନ୍ତୁ ମୁଁ ପୁଅ କ୍ୱାର୍ଟରରେ ରହିଲି । ପୁଣି ପରୀକ୍ଷା ନିରୀକ୍ଷା ଚାଲିଲା ନୂଆ ଡାକ୍ତରଖାନାରେ । ପୁଅ ଆଗରୁ ସବୁ ବ୍ୟବସ୍ଥା କରିଥିଲା ବୋଧହୁଏ । ସବୁ ଠିକ୍ ଅଛି, କେବଳ ରକ୍ତର ପୂଜ ଶୁଖିବା ଦରକାର; ଆଉ ଇଓସିନୋଫିଲିଆ ୨୪ ପରସେଣ୍ଟରୁ ଯଥେଷ୍ଟ ତଳକୁ ଆଣିବାକୁ ପଡ଼ିବ । ଡକ୍ଟର ଦାସ ହେଲେ ସର୍ଜନ, ଡକ୍ଟର ରାୟ ହେଲେ ତାଙ୍କ ଏସିଷ୍ଟେଣ୍ଟ । କେବଳ ସେଇ ଦୁହିଁଙ୍କି ମୁଁ ମୋର ରକ୍ଷାକର୍ତ୍ତା ବିଧାତା ରୂପରେ ଦେଖିବାକୁ ଲାଗିଲି । ସେମାନେ ଯେ ଖୁବ୍ ଖ୍ୟାତି ଅର୍ଜନ କରିଛନ୍ତି ଅପରେସନ କ୍ଷେତ୍ରରେ ତା' ନୁହେଁ, ବରଂ ଡକ୍ଟର ଦାସଙ୍କ ବଦ୍‌ନାମ ଅଛି । ଶୁଣିଲି, ଡକ୍ଟର ଦାସ ଲାଇବ୍ରେରୀରୁ ବହିପତ୍ର ନେଇ କେବଳ ଗଲ୍‌ବ୍ଲାଡ଼ର ଅପରେସନ ସଂକ୍ରାନ୍ତ ଯାବତୀୟ ଜ୍ଞାନ ସଂଗ୍ରହ କରିବାରେ ସେଇଦିନ-ଠାରୁ ବ୍ୟାପୃତ ହେଲେ । ରୋଗୀ ଆକାରରେ ମୋତେ ସେ ଭି.ଆଇ.ପି ରୂପେ ରଖିଲେ ଏବଂ ସବୁ ପ୍ରକାର ଅଭୟ ଆଶ୍ୱାସନା ମୋତେ ଦେଇ ମୋର ନୈତିକ ବଳ ଅତୁଟ ରଖି ।ନ୍ତି ।

ପୂର୍ବ ଅଭିଜ୍ଞତା କହିଲେ ଚାଳିଶ ବର୍ଷ ପୂର୍ବେ ଏଇ ଦୁର୍ଗା ପୂଜା ସମୟରେ କଟକ ମେଡ଼ିକାଲ ସ୍କୁଲରେ ମୁଁ ଡକ୍ଟର କାଶୀନାଥ ମିଶ୍ରଙ୍କ ଦ୍ୱାରା ହାଇଡ୍ରୋସିଲ

କଟାଇଥିଲି ପେନ୍‌ସିଲିନ୍‌ର ପୂର୍ବ-ଯୁଗରେ ମାଇକ୍ରୋବ୍‌ ଯୁଗରେ । ଅପାରେଶନ ହେତୁ ସଫଳ ହୋଇ ନ ଥିଲା, ବହୁତ କଷ୍ଟ ଭୋଗିଥିଲି । ମୁଁ Mentally ପ୍ରସ୍ତୁତ ହେଉଛୁ । ପୂଜା ପାଖ ହେଲା । ଡକ୍ଟର ଦାସ ବଙ୍ଗାଳୀ । କେଉଁ ବଙ୍ଗାଳୀ 'ମାଏର ପୂଜୋ'ରେ ବଙ୍ଗଳା ବାହାରେ ରହିବେ ନାହିଁ । ସେ କଲିକତା ଚାଲିଗଲେ । ଅତଏବ ଦୁର୍ଗାପୂଜା ଦଶହରା ପରେ ଅପାରେଶନ ହେବାର ସ୍ଥିର ହେଲା । ମୋତେ ଘରକୁ ଫେରିବାର ସୁବିଧା ମିଳିଲା । ଇଣ୍ଟରମିଡିଏଟ ରିଜଲ୍ଟ ଦେଖିବାକୁ ବାକି ଅଛି କହି ଡାକ୍ତର ପୁଅଠାରୁ ଅନୁମତି ନେଲି ଘରକୁ ଆସିବାକୁ । ସେ ହଁ କଲେ । ଅନ୍ୟମାନେ କହିଲେ "ଥରେ ଘରକୁ ଗଲେ ବାପା ଆଉ ଆସିବେ ନାହିଁ । ଥରେ ଖଟରୁ ଉଠି ପଳାଇ ଆସିଛନ୍ତି । ଆଉ ମୋଟେ ଆସିବେ ନାହିଁ ।' ବହୁ ସ୍ୱପ୍ନ ମନ୍ତ୍ରୀମ ପକାଇ ଛୁଟି ଆଣିଲି ।

ବହୁଦିନ ପରେ କୁକୁରଟି ମୋତେ ଦେଖି ଏତେ ଖୁସି ହେଲା ଯେ ମୁହଁ ସମ୍ଭାଳି ପାରିଲା ନାହିଁ । ମୋ ପାଖରେ ସେ ରାତିରେ ଖଟରେ ଶୁଏ ନାଉର୍ଣ୍ଣିଚ୍ଛୁଅ ପରି । ଘରର ସବୁ ଗୃହଜନ ରହିବା ସର୍ତ୍ତ କରି ଆସିଥିଲି । ଦିନ ଜାଗାରେ ଡେର ଦିନ ହେଲା । ଫେରିବାକୁ ମୋଟେ ଇଚ୍ଛା ନାହିଁ । ସେମାନେ ଭାଲେ କହିବେ "ଆମେ ଠିକ୍ କହୁଥିଲୁ, ବାପା ଥରେ ଘରକୁ ଫେରିଲେ ଆଉ ଆସିବେ ନାହିଁ ।" ତାକୁ ବେପ୍ରମାଣ କରିବା ପାଇଁ ଫେରିଲି ଅବଶେଷରେ; କୁକୁରଠୁ ଘରଠୁ ଗଡ଼ପଡ଼ଠୁ । ପହଞ୍ଚି ପ୍ରଥମେ ଶୁଣିଲି, "ଡକ୍ଟର ଦାସ ଫେରି ନାହାନ୍ତି । ଖୁସିହେଲି ଯେ ସେ ଆଉ କେତେଦିନ ଛୁଟି extend କରିବେ । ଏ ଭିତରେ ଘାଆ ପୁରା ଶୁଖିଯାଇଛି, ଇଉରେନୋମେଟର ଅଠ କ ଦଶ ପରସେଣ୍ଟକୁ କମିଯାଇଛି । ବାକି ଟିକ୍ ଜମାଟ ବାନ୍ଧିବା ଡେରହେଉଛି । ସୁଗର ପାଞ୍ଚ ଦିନରେ ତାହା ବ ଠିକ୍ ହୋଇଗଲା ।

ଦୁର୍ଗାପୂଜା ଗଲା, ଦଶହରା ଗଲା । ତଥାପି ଡକ୍ଟର ଦାସ ଛୁଟିରୁ ଫେରିଲେ ନାହିଁ । ଯେତେଦିନ ସେ ଡେରି କରୁଥାନ୍ତି ମୋତେ ସେତେଦିନ ଅଧିକା ଜୀବନ ମିଳୁଛି ବୋଲି ଲାଗୁଥାଏ । କାରଣ ଅପାରେଶନ ଅର୍ଥ ନିଶ୍ଚିତ ମୃତ୍ୟୁ ବୋଲି ମୁଁ ଧରି ନେଇଥାଏଁ । ଦିନେ ଶୋଇ ଶୋଇ ଶୁଣିଲି ପୁଅ ବୋହୂକୁ କହୁଛି ଡାକ୍ତର

ଫେରନ୍ତେଣି ବୋଲି । ସେଇଦିନ ସନ୍ଧ୍ୟାରେ ରୋଗ ବାହାରିପଡ଼ିଲା । ଅନ୍ୟଥା ଯନ୍ତ୍ରଣା ଦଶ ଦିନର ମିଳିତ୍ ଧରି ଭୋଗୁଥାଏଁ । ପୁଅ ତା' ଡ୍ୟୁଟିରୁ ରାତି ଏଗାରଟାରେ ଫେରିଲା । ସିମିତି ବୋହୂ ମୁହଁରୁ ମୋର ଅବସ୍ଥା କଥା ଶୁଣିଲା, ଚିତ୍କାର କରି କହିଲା, "ଡାକ୍ତରଖାନାରେ ଗୋଟାଏ ବୁଢ଼ା ଏମିତି ଓଃ ଓଃ ହୋଇ ଘଣ୍ଟାଏ ଅଟକାଇ ଦେଲା । ଏଠି ଆସି ଦେଖିଲାବେଳକୁ ଆଉ ଏକ ବୁଢ଼ା ଓଃ ଆଃ ହେଉଛି ।" ବେଡ଼ରେଲଗନ୍‌ଟାଏ ଦେଲା । ଔଷଧର ପ୍ରତିକ୍ରିୟା ହେଉ ବା ତା'ର ଦୁଃଖମିଶା ବିରକ୍ତି ହେଉ ରୋଗ ତତ୍‌କ୍ଷଣେ ଉପଶମ ହେଲା । ଖାଇସାରି ପାଖକୁ ଆସି କହିଲା, "ଯଦି ଡକ୍ଟର ଦାସ ପଚାରନ୍ତି କେବେ କହିବ ନାହିଁ ରୋଗ ବାହାରିଥିଲା ବୋଲି ।" ସେ ପର୍ଯ୍ୟନ୍ତ ଘରେ ରହି ଚିକିତ୍ସା ହେଉଥାଏ ।

ତହିଁ ପରଦିନ ଦୁଇଟାରେ ଗୋଟାଏ ରିକ୍ସା କରି ବୋହୂ ମୋତେ ଡାକ୍ତରଖାନା ନେଇଗଲେ ଏବଂ ପାଞ୍ଚନମ୍ବର କେବିନରେ ରଖାଇଦେଲେ । ସେଦିନ ବୋଧହୁଏ ଦିନକାଳ ଶୁଭ ଥିଲା, ପାଞ୍ଜି ଦେଖି ଦୁହେଁ ମୁହୂର୍ତ୍ତ ବାହାର କରିଥିଲେ । ଶୁକ୍ରବାର ( ଯେଉଁଦିନ ପ୍ରଭୁ ଯୀଶୁ ଫାଶିକାଠରେ ଝୁଲିଥିଲେ ) ମୋର ଅପାରେଶନ ହେବ ବୋଲି ଘଣ୍ଟାଏ ପରେ ପୁଅ ଆସି ମତେ ଜଣାଇଦେଲା । ନିଜକୁ ଅଶୁଦ୍ଧ ଭାବି ବା ତିନିଜଣ କୁଆଡ଼େ ଶୁଭ କାମରେ ଯିବା ଉଚିତ ନୁହେଁ ବିଚାରି ମତେ ତା' କାର୍‌ରେ ଆଣିଲା ନାହିଁ । ସେ ଦିନର ଅବଶିଷ୍ଟ ସମୟ ଓ ରାତିଟା ପର୍ଯ୍ୟବେକ୍ଷଣରେ କଟିଲା । ଡାକ୍ତରଖାନାରେ ଅଛି ବୋଲି ମୋଟେ ଲାଗୁ ନ ଥାଏ । ବାରମ୍ବାର ନାର୍ସ ପରେ ନାର୍ସ ଆସି ମୋ କଥା ବୁଝୁଥାନ୍ତି । ଏୟାରକଣ୍ଡିସନ୍‌ଡ଼ କେବିନ ।

ଘରୁ ବାହାରିବା ପୂର୍ବରୁ ପୁଅକୁ ବିକଳ କଣ୍ଠରେ ପଚାରିଲି, "ବାପା, ମରିବି ନାହିଁ ତ ?" ପୁଅ କହିଲା "ଏଇଟା ମାଇନର ଅପାରେଶନ । ଅଧଇଞ୍ଚେ incision ଦେଇଦେଲେ ଗଲବ୍ଲାଡ଼ର ଟିକକ ବାହାରି ଆସିବ; ପାଞ୍ଚମିନିଟ୍‌ରେ ଅପାରେଶନ ଶେଷ ।" ମିଛ କେତେବେଳେ କହିବାକୁ ହୁଏ ପୁଅକୁ ଜଣା । ଡକ୍ଟର ଦାସ ଆସିଲେ । ଜଣାଗଲା ସିମିତି ଉପସ୍ଥିତ କ୍ଷେତ୍ରରେ ସେଇ ମୋର ଭଗବାନ । ମାରିବା ତାରିବା ତାଙ୍କରି ହାତରେ । ପୁଅବୋହୂ ଝିଅଜୋଇଁ ନାତିନାତୁଣୀ ଯେଉଁମାନେ ବାରମ୍ବାର ପାଳିକରି ଆସୁଛନ୍ତି ସେମାନେ କେହି ନୁହନ୍ତି । ଡକ୍ଟର ଦାସ ସାକ୍ଷାତ୍

ନାରାୟଣ । "କେମନ୍ ଆଚେନ୍ ? କେମନ୍ ଲାଗଛେ ?" ଆଦି ମାମୁଲି ପ୍ରଶ୍ନ ପଚାରିବା ପରେ ଗେଞ୍ଜି ଉଠାଇ ତାହାଙ୍କ ଗ୍ରୀବାତଳୁ ନାଭିତଳ ପର୍ଯ୍ୟନ୍ତ ହାତରେ ଅଣ୍ଡିସି କହିଲେ, "ଏଇ ପୋରସନଟା ଭାଲ କରେ ସାବାନ ଦେବେନ୍ ।" ପଚାରିଲି 'ବଞ୍ଚିବି ତ, ଡାକ୍ତର ? କହିଲେ, "ପାଗଲ, ନା କି ? କିଛୁ ହବେ ନା ।" ମୁଁ ଅନୁରୋଧ କଲି, "ଡକ୍ଟର ସାହେବ, ଯାହାହେଉ ନା କାହିଁକି ମତେ Intensive Care Unitକୁ ନେବେନ ।" ମୁଁ ଖଟରେ ବସି କାଚକାନ୍ଥ ଦେଇ ଅପର ପାର୍ଶ୍ୱର ICU ଦେଖୁଥାଏଁ । ଧାରଣା, ସେଠାକୁ ଗଲେ ଆଉ ଜୀବଦ୍ଦଶାରେ କେହି ଫେରନ୍ତି ନାହିଁ । କେବଳ ବଡ଼ିଟାକୁ ମୁର୍ଦ୍ଦାରକୁ ଅସ୍ଥୀୟସ୍ୱଜନଙ୍କୁ ସମର୍ପଣ କରାଯାଏ ।

ଆଉ ଛତିଶ ଘଣ୍ଟା ବାଉଣ୍ଡ ତାନ୍ଦନ ଆରମ୍ଭ କରିଦେଲି । ଶୁକ୍ରବାର ଆଠୁଟା । ଲିଞ୍ଚିଙ୍ଗ୍ ସମୟ । ଚନ୍ଦ୍ର ଲୋକକୁ । ଜୟ ଜଗନ୍ନାଥ !

ମତେ ହସ ମାଡ଼ିଲା । ଯେଉଁ ଲୋକ ପ୍ରତି ମୁହୂର୍ତ୍ତରେ ଯନ୍ତ୍ରଣାବେଳରେ ମରିବାକୁ ଭଗବାନଙ୍କୁ ଡାକୁଥିଲା ମରଣ ବେଳ ନିକଟ ହେଲା ବେଳକୁ ଏମିତି ଗ୍ଲାନିଆ ହେଉଛି କାହିଁକି ? ଜୀବନର କି ମୋହ !

ବୁଧବାର ରାତି ଭଲ ନିଦ ହେଲାନି । ଏକେ ତ ଏକୁଟିଆ, ଦୁଜେ ନୂତନ ପରିବେଶ ସେତେ ଭଲ ହେଲେ ବି । ପୁଅ Maneaters of Sovo ବୋଲି ଶିକାର ଗପ ବହିଟାଏ ଦେଇଥାଏ । Maneaters of Kumaonରେ ବାଘ ଶିକାର କଥା ଥିଲା । ଏ ବହିରେ ଆଫ୍ରିକାର ସିଂହ ଶିକାରର ଲୋମହର୍ଷକୋଜ୍ଜ୍ୱଳ ଚମତ୍କାର ଗଳ୍ପ । କେତେବେଳେ କାମିତି ଶୁକ୍ରବାର କଥା ମନେପଡ଼ିଲେ ବହି ପଢ଼ିବାକୁ ଇଚ୍ଛା ହୁଏନି । କ'ଣ ବା ଲାଭ ଜ୍ଞାନ ଅର୍ଜନ କରି ଯଦି କେତେଘଣ୍ଟା ପରେ ଜୀବନ ଶେଷ ହେବ !

ସେ ଦିନ ଓପରେବେଳା ଡାକ୍ତରଙ୍କ ମେଳା ମୋ କେବିନରେ । ଆଖି, ନାକ କାନ, ଜିଭ, ଦାନ୍ତ, ହାର୍ଟ, ଲଙ୍ଗସ୍, ସ୍ନାୟୁ ପ୍ରଭୃତି ଅଙ୍ଗପ୍ରତ୍ୟଙ୍ଗର ବିଶେଷଜ୍ଞମାନେ ଦଳଦଳ ହୋଇ ଆସୁଥାନ୍ତି ଏବଂ ଚପାଚପି ହଲାହଲି, ଟଣାଟଣି କରି ଦେଖୁଥାନ୍ତି, ହାତରେ ନେଇହିଡ଼ା ବେପାରୀମାନେ ପଶୁକୁ ଯେପରି ବିଭିନ୍ନ ଦୃଷ୍ଟିକୋଣରୁ ମାପଯୋଖ, ପରୀକ୍ଷା କରନ୍ତି । ଏପରିକି କୁଷ୍ଠରୋଗ ବିଶେଷଜ୍ଞ ବି ଆସିଲେ ଏବଂ ତାହାଙ୍କ ହାତ

ବହୁତ ଅଙ୍ଗୁଳି ପରୀକ୍ଷା କଲେ ଏପରିକି ପିନ୍ କଣ୍ଟା ବଥ୍ୱର ଅଙ୍ଗୁଳିରେ ଫୋଡ଼ିଲେ । ଶୁଣିଲି ପ୍ରତ୍ୟେକ ଡିପାର୍ଟମେଣ୍ଟ ଅପାରେଶନ ପାଇଁ କ୍ଲିଅରେନ୍ସ ଦେବେ । ଶେଷରେ ଆସିଲେ, ନିଶ୍ଚେତକ ଯେ ମୋର ଚେତାହରଣ କରିବେ । ସେ ମୋ ପିଠି ଥାପୁଡ଼ାଇ କହିଲେ, 'ଅପରେଶନ ନ କରିବାର କୌଣସି କାରଣ ନାହିଁ ।' ସମସ୍ତେ ଓକେ କଲେ । ଅସିଲେ ଡକ୍ଟର ଦାସ ଓ ଡକ୍ଟର ରାୟ ଯାହାଙ୍କ ହାତରେ ମୋ ଜୀବନ । ସେମାନଙ୍କର ଜନୈକ ସହକର୍ମୀ ଡାକ୍ତର ବନ୍ଧୁଙ୍କ ପିତାଙ୍କୁ ଅପାରେଶନ କରିବାର ଦାୟିତ୍ୱ ବହନ କରି ଦୁହେଁ କିଛିଏ ବିମର୍ଷ ଥିଲେ ବୋଲି ମୋତେ ଜଣାଗଲା । ଡକ୍ଟର ଦାସ ମୋ ରେଷ୍ଟି ଚେକ କରି ପୁଣି କହିଲେ, "ଏଇ ପୋର୍ଶନଟା ଭଲ କରି ସାବାନ ଦେବେନ୍ ।" ତା'ପରେ କେହି ଜଣେ ମତେ କହିଲା, ପୁଅ ଦସ୍ତଖତ କରିଦେଇଛି କାଗଜରେ ବାପାଙ୍କ ମୃତ୍ୟୁ ହେଲେ କାହାକୁ ସେ ଦାୟୀ କରିବେ ନାହିଁ । ଡକ୍ଟର ଦାସ ମଧ୍ୟ ଲେଖି ଦେଇଛନ୍ତି, "ମୁଁ ରୋଗୀର ଅପାରେଶନ କରିବାକୁ ରାଜି ।"

ପ୍ରାୟ ପାଞ୍ଚଟା ବେଳକୁ ବାରିକଟିଏ ଆସିଲା ଏବଂ ମତେ ଅଜା ସମ୍ବୋଧନ କରି ଅଣ୍ଟାତାମସା କରୁଁ କରୁଁ ସ୍ଥାନ ଅସ୍ଥାନର ଅନାବଶ୍ୟକ ଚୁଳଗୁଡ଼ିକୁ ସଫା କରିଦେଲା । ଛାତି ଓ ପେଟ ଅଁଉସି ଅଁଉସି ଦେଟିଲି ପରି ଚକ୍‌ଚକ୍ ଦିଶୁଛି, ଲାଗୁଛି ମଧ ।

ତା'ପରେ ପେନ୍‌ସିଲିନ୍‌ର ପ୍ରତିକ୍ରିୟା ପରୀକ୍ଷା, ଭିଟାମିନ୍ କେ ଇନ୍‌ଜେକ୍‌ସନ ଆହୁ କେତେ କ'ଣ ଅପାରେଶନ ପୂର୍ବପ୍ରସ୍ତୁତି । ମୁଁ ଆଉ ଡରୁ ନ ଥାଏ । ଯାହା ହେଲେ ବି ଲୋକଲଜ୍ଜା ଓ ଅପାରେଶନ ଭୟରେ ଡାକ୍ତରଖାନାରୁ ପଳାଇବି ନାହିଁ କାପୁରୁଷ ପରି । ସନ୍ଧ୍ୟା ହେଲା । ଯେଉଁ ଅଳ୍ପ କେତେ ଆତ୍ମୀୟସ୍ୱଜନ ଥିଲେ ସେମାନେ ଆସି ଏଣୁତେଣୁ ଗପି ହସଖୁସିରେ ମତେ ମଜାଇବାର ଚେଷ୍ଟା କଲେ । Maneaters of Sovo ଆଉ ଭଲ ଲାଗିଲା ନାହିଁ । ରାତିର ତରଳ ଲଘୁପାକ ଖାଦ୍ୟ ଖାଇ ବିଶ୍ରାମ ନେବାର ଚେଷ୍ଟା କଲି । ସମସ୍ତେ ଚାଲିଗଲେ । କେବିନ୍ ଶୂନ୍‌ଶାନ୍ ହେଲା । ଏତିକବେଳେ ମୋତେ ଆଶ୍ୱାସନା ଅଭୟ ଦେବା ପାଇଁ ଯେଉଁ ନାର୍ସଟିର ଉପସ୍ଥିତି ଗୁହୁଁ ଥିଲି ସେ ସତର ଅଠର ବର୍ଷ ହେଲା ମତେ ଗୁଡ଼ି ଗୁଲିଯାଇଥିଲା । ପାଖରେ ବସି ସେ ଯେପରି କହୁଥାନ୍ତା "ତୁମେ ଡରୁଛ, କିଛି ହବନି; ମୁହଁ ତା ଆଡ଼କୁ ହେଇ ରକ୍ଷା କରିବ ।" ତା ଚେହେରା ଦିଶିଗଲା ସେଇ ନିର୍ଜନ

କଷ୍ଟରେ । ତା' ପରେ ଗୁହାଁରିଲି ଫିଟଫ୍ରେମରେ ବନ୍ଧା ଦେବ ଠାକୁରଙ୍କୁ । ତତ୍ପରେ ନାର୍ସ ଆସିଲା, ଇଞ୍ଜେକ୍ସନ ଦେଲା, ମଶାରୀ ଟାଣିଦେଲା । କହିଲା, 'କାଲି ସକାଳ ସାଢ଼େଟା ବେଳକୁ ଆପଣ ଗାଧୁଆପାଧୁଆ ସାରି ରେଡ଼ି ହୋଇଥିବେ ।' ଅଧଘଣ୍ଟା ପୂର୍ବରୁ ବଡ଼ ନାଉ ଆସି କହିଥିଲା ଅଜା କାଲି ସକାଳ ଅପରେଶନରେ; ତୁମ ନାଆଁ ନୋଟିସ ବୋର୍ଡ଼ରେ ପ୍ରଥମରେ ଅଛି । ତୁମେ ଫାଷ୍ଟ ।' ରାତିରେ ଛଟପଟ ମନ୍ଦିରେ ମନ୍ଦିରେ ହେଉଥାଏ । ନିଦ ବଟିକା ଖାଇବା ଉଚିତ ଥିଲା ଭାବିଲି ।

ପାଞ୍ଚଟା ପୂର୍ବରୁ ଉଠିପଡ଼ିଲି । ହୋଟାଲରେ ଅପାରେଶନ ଥିଏଟର ନମ୍ବର ଓ୍ବାନ, ଯେଉଁଠି ମୋର ଅପାରେଶନ ହେବ । ଆଲୁଅ ଜଳୁଛି ସେ ଘରେ । ଗୋଡ଼ ତଳେ ଝରକା ଦେଇ ଦିଶୁଥିବା ICUରେ ନର୍ସଟାଏ ଏପଟ ସେପଟ ହେଉଛି । ବାନ୍ଦପତ୍ର ଘଣ୍ଟି ଝିଅର ହେବା କାମ ମଧ୍ୟ ସାରିଦେଲି । ହସ ମାଡ଼ୁଥାଏ, କାହିଁକି କାହା ପାଇଁ ଝିଅର ହେଉଛି, କେଉଁଠି ଇଣ୍ଟରଭ୍ୟୁ ଅଛି ନା କେଉଁ କ୍ଲାସରେ ପଢ଼ାଇ-ବାକୁ ଯିବି ! ବାନ୍ତ ସଫିସାରି ଗୁ ନ ପିଇବା ଦିନ ଭିତରୁ ଏ ଗୋଟିଏ । ସୁତରାଂ, ମେହେନ୍ତର ଆସିଗଲା ପେଟ ସଫା କରିବା ପାଇଁ । ଖୁବ୍ ଭଲକରି ସଫିଯାଇ ହୋଇ ଗାଧୋଇଲି, ଖୁବ୍ ଗାଧୋଇଲି ଯିମିତି ଏଇଟା ଶେଷ ଗାଧୁଆ । ପେଟରେ ଦାନା ନଥିଲେ ବି ଖୁବ୍ ଫ୍ରେଶ୍, ତାଜା ଲାଗୁଥାଏ । କାଳୀପୂଜା ଦଶ ଏଗାର ଦିନ ଅଛି । ହେମନ୍ତ ସକାଳ, ଖୁବ୍ ରମଣୀୟ ଦିଶୁଥାଏ । ମୁଣ୍ଡ କୁଣ୍ଡାଇଲି, ଶୁଖିଲା ତଉଲିଆରେ ପାଣି ପୋଛିଲି । କାଠିରେ ତୁଳାଟିକେ ଦେଇ କାନ ସଳ ସଳ କରି ପାଣି କାଢ଼ିଲି । କାମଟି କଲେ, ଭାବେ କାହିଁକି କାହିଁ ପାଇଁ ଏ ପ୍ରସ୍ତୁତି ।

ନର୍ସ ଆସିଗଲା । କହିଲା, ଶୀଘ୍ର କାମସାରି ଆସନ୍ତୁ, ଶୁଅନ୍ତୁ । ମୁଁ ସେଲଫ୍‌ରେ ଥିବା ଫିଟଫ୍ରେମ୍ ବନ୍ଧା ଜଗନ୍ନାଥଙ୍କ ପାଖରେ ଯାଇ ଛିଡ଼ାହେଲି । କହିଲି, "ଜଗାରେ, ମୁଁ ଯାଉଛି, ମୁଁ ତୋର ବଡ଼ ଭକ୍ତ ନୁହେଁ । ଗାଧୋଇ ସାରି ମିନିଟିଏ ତୋତେ ଗୁହାରୁଁ, କେବେ ଫୁଲଟିଏ ମିଳିଗଲେ ଦିଏଁ । ନ ହେଲେ ନାହିଁ । ମୁଁ ତ ତତେ କିଛି ମାଗିନାହିଁ, ଶରଧାବାଲିରୁ ବି ହାତେ ନାହିଁ । ମୁଁ ଚାଲିଗଲେ ତୋର କ'ଣ ଅଭାବ ହେବକି ? ପ୍ରତିଦିନ ମାଇଲି ମାଇଲି ଲମ୍ବା ଲକ୍ଷ କୋଟି ପ୍ରାର୍ଥନା ଧୂପ ଧୂଆଁ ପରି ତୋ ଅଡ଼କୁ ମର୍ତ୍ତ୍ୟରୁ ଯାଉଛି । ମତେ ଦୁଃଖ ଲାଗିବ ତତେ ଅଉ

ଦେଖିବ ନାହିଁ, ତୁ କ'ଣ ଖବରୁ ବୁଢ଼ାଟାଏ ଟିଫ୍ରେମରେ ବାନ୍ଧ ପ୍ରଚନ୍ଦନ ମୋତେ ଦେଶ୍ରୁ ଚୁହିଁ ଥାନ୍ତି; କୁଆଡ଼େ ଗଲେ ସେ ? ଜୟ ଜଗା !" ପାଖରେ ଅଇନାଟା ଥିଲା। ମୁହଁଟା ଦେଖିନେଲି, ବୁଢ଼ା ମୁହଁ କି ସରସ ସୁନ୍ଦର ନ ଦିଶୁଛି ! ଦାଢ଼ି ବାଜିଲା। ଏଯାଏଁ ଅସ୍ପୃଶ୍ୟସ୍ୱଜନ କେହି ଅସିନାହାନ୍ତି। ଭଲ ହୋଇଛି। ଆଖିରେ ଲୁହ ନେଇ କୁଆଡ଼େ ଯିବା ଭଲ ନୁହେଁ। ଖଟରେ ଶୋଇଲି ବାଧ୍ୟ ପିଲାଟି ପରି ନାର୍ସର ଅଙ୍କରେ। ଯୋଡ଼ାଏ ଖଣ୍ଡ ଇଞ୍ଜେକ୍ସନ ଫୋଡ଼ିଲା। ଡାକ୍ତରଖାନା ଅର୍ଥ ଖାଲି ଛୁଞ୍ଚି ଫୋଡ଼ା। ଫେରିଲା ବେଳକୁ (ଯଦି ଫେରେ) କେଉଁ ସ୍ଥାନ ଫାଙ୍କ ନ ଥିବ।

ରୋଗୀବାହା ଗାଡ଼ି ଆସିଲା, ଷ୍ଟ୍ରେଚରର ସହିତ। ଚକ ଲାଗିଛି, ଘଡ଼ଘଡ଼ କରି କେଡ଼େ ସୁନ୍ଦର କେତେ ଆଡ଼େ ଯାଇ ନ ପାରେ ! ଦି ଚାରି ଜଣ ଯମଦୂତ ପରି ଶବବାହକମାନେ।

ଅନ୍ତ ଗୋଟାଏ, "ଏଇଟା ଶେଷ।" କହି ନାର୍ସ ଆଉ ଗୋଟାଏ ଥର ଫୋଡ଼ିବାକୁ ଆଗେଇଲା। ମୁଁ ତାକୁ ସହି ପାରେନା। ଚେହେରା ଭଲ ନୁହେଁ, ରଙ୍ଗ କଳା; କିନ୍ତୁ ଭାରି ସୁଇଟ୍ କଥା, ତତୋଽଧିକ ଭଲ ତା'ର ଆଚରଣ। ମତେ ବାପା ପରି ଗଣେ। ଏ ଇଞ୍ଜେକ୍ସନଟା ଭିନ୍ନ ଧରଣର। ଅନ୍ୟଗୁଡ଼ାକରେ କିଛି ପ୍ରତିକ୍ରିୟା ନ ଥାଏ। କିନ୍ତୁ ଏହାର ଗୁଣ ସାଙ୍ଗେ ସାଙ୍ଗେ ଜଣା ପଡ଼ିଗଲା।

ଷ୍ଟ୍ରେଚରଟାକୁ ଯମଦୂତମାନେ ମୋ ଖଟ ଲେଭେଲକୁ ଆଣିଲେ। ନାର୍ସ କହିଲା, 'ଉଠନ୍ତୁ'। ମୁଁ ଉଠିବାର ଚେଷ୍ଟା କଲି କହୁଣୀରେ ଭର ଦେଇ। ଆରେ! ମୋ ଦେହହାତର ଶକ୍ତି ସାମର୍ଥ୍ୟ ଗଲା କୁଆଡ଼େ। ସେମାନେ ମତେ ଧରି ଗାଡ଼ି ଉପରକୁ ନେଲେ। ଶୋଇଲି ଚିତ୍ ହୋଇ। ଶଗଡ଼ ଚାଲିବାକୁ ଆରମ୍ଭ କରିବ, ଚାହିଁଦେଲି ଥରେ ଚାରିପଟେ। Maneaters of Sovo, ଆରସି ପାନିଆ ପାଉଡ଼ର ଡବା, ଘଡ଼ି କଲମ ଆଦି। ଜଗାର ଫ'ଟା ଆଖିକି ଚାହିଁଲି। ସ୍ତ୍ରୀଙ୍କ ମୁହଁଟା ମନେ ପକାଇଲି। ରଥଚକ ଗଡ଼ିଲା। ଜୟ ଜଗନ୍ନାଥ ! ସେଇ ମୁହୂର୍ତ୍ତରୁ ମୁଁ ଆଖି ଫିଟାଇବି ନାହିଁ ସ୍ଥିର କଲି। See no evil. ତଥାପି ମୁଁ ଜାଣିପାରୁଥାଏ ଏପାଖ ସେପାଖ ଲୋକେ ଛିଡ଼ାହୋଇ ବଡ଼ଦାଣ୍ଡରେ ମୋ ରଥ ଚାଲିବାର ଦେଖୁଥାନ୍ତି। ନିଶ୍ଚୟ ଭାବୁଥିବେ ବୁଢ଼ାର ଏ ଶେଷଯାତ୍ରା।

ଲିଫ୍ଟ ତଳକୁ ଆସିବାକୁ ସାମାନ୍ୟ ଡେରି ହେଲା । ଏଥର ଷ୍ଟ୍ରେଚରରେ ସନ୍ତର୍ପଣ କରି ସେମାନେ ମତେ ଲିଫ୍ଟରେ ଥୋଇଲେ ଏବଂ ମୁଁ ସ୍ୱର୍ଗମୁହାଁ ଉଠିଲି । ପ୍ରଥମ ଦ୍ୱାର ଖୋଲିଲା । ସେମାନେ ମତେ ଆଉ ଏକ ଘରକୁ ନେଲେ । ସେଇଠି ମତେ ଜୀବାଣୁ ପରିହାର କରି ନବବସ୍ତ୍ର ଗ୍ରହଣ କରିବାକୁ ପଡ଼ିଲା । ମତେ ଅଦ୍ଭୁତ ଖରାପ ଲାଗୁନଥାଏ । ବେଶ୍ ତାଜା ଫୁର୍ତ୍ତିଫୁର୍ତ୍ତି ଲାଗୁଥାଏ । ପୃଥିବୀ କଥା ମନେକରୁନଥାଏ । ଗୋଡ଼ହାତ ବା ଅନ୍ୟ ଅବୟବ ମୋର ଅଛି ବୋଲି ମୁଁ ଜାଣୁ ନ ଥାଏ । ଏଥର ଅନ୍ୟ ଏକ ସଂଲଗ୍ନ କୋଠରୀକୁ ନେଲେ । ଅନ୍ୟ ଦଳେ ମୋତେ ଗ୍ରହଣ କଲେ ପ୍ରଥମ-ଦଳଙ୍କ ପାଖରୁ । ବିଶ୍ରେ ପରେ ଆଉ ଏକ ଦରଜା ଖୋଲିଲା ଏବଂ ମୁଁ ଜାଣିପାରିଲି ଏଥର ଅପାରେଶନ ଥିଏଟର ନମ୍ବର ଓ୍ୱାନରେ ଅଛି ।

ଅପାରେଶନ ଟେବୁଲରେ ଶୋଇ ଥରେ ଆଖି ଫିଟାଇ ଦେଖିଲି ବଡ଼ ଅଲ୍ଟ୍ରା ରିଫ୍ଲେକ୍ଟରଟାକୁ; ଜଳୁ ନ ଥାଏ ବତୀ । ନାର୍ସ ଜଣେ ଅଧେ ଯୁରୁଫେରୁ କରି ଯନ୍ତ୍ରପାତି ସଜାସଜି କରୁଥାନ୍ତି ବୋଲି ମୋତେ ଲାଗିଲା । ନୀରବ ନିଃସ୍ତବ୍ଧ ।

ଡକ୍ଟର ଦାସ, ଡକ୍ଟର ସ୍ୱାଇଁ କ'ଣ ଆସି ନାହାନ୍ତି ? ଯାହା କରିବାର ଶୀଘ୍ର କରନ୍ତୁ । ଭାବିପାରୁଛି, ଚିନ୍ତା କରିପାରୁଛି । ସେଥିପାଇଁ କଷ୍ଟ, ଶାରୀରିକ ପୀଡ଼ା ନାହିଁ ଏଯାକେ । ଆଲୁଅଟା ଏଥର ଜଳିଲା । ଏଯାକେ ମୋ ନାତୁଣୀପୁଅ ଆସିନି । ତାକୁ ଶେଷ କଥାଗୁଡ଼ାକ କ'ଣ କହିବି ଭାବି ସ୍ଥିର କରି ପାରିଲିନି । କମିବାଡ଼ି ଟଙ୍କାପଇସା ଫିକ୍ସଡ଼ ଡିପୋଜିଟ୍ ଏ ବିଷୟରେ କ'ଣ କହିବ ?

ବହୁମୂଲ୍ୟ କ୍ରମେ ପାରିପାର୍ଶ୍ୱିକ ନୀରବତା ନିଃସ୍ତବ୍ଧତା ବହୁତ ନିଜକୁ ମିଶାଇ ନେଇଥାନ୍ତି । ମୁଁ Zero ମୁହୂର୍ତ୍ତକୁ ଅପେକ୍ଷା କରିଛି । ଏକ, ଦୁଇ ବିଶ୍ରେ ସ୍ତବ୍ଧ ହୋଇଗଲା । ମୁଁ ଗୋଟାଏ ବଢ଼ିଆ ସ୍ୱପ୍ନ ( ଯାହା ମୋତେ ପୁରା ରିଏଲ ଜଣାଗଲା ) ଦେଖିଲି । ସ୍ୱପ୍ନ ଭାଙ୍ଗିଗଲା 'ବାପା' ଡାକରେ ।

ଅପାରେଶନ ଥିଏଟର ଭିତରେ 'ବାପା' ଡାକ । ମରୁ ପ୍ରଦେଶରେ ଜଳ ଆସିବ କୁଆଡ଼ୁ ? ଏଥର ଆଖି ଫିଟେଇ ଗୁହାଳି ଦେଇଅଡ଼କୁ ଯେଉଁ ଅଡ଼ୁ 'ବାପା' ଡାକ ଆସିଥିଲା । ଦେଖିଲି ଏପ୍ରନ, ମୁଖା ପିନ୍ଧି ମୋର ଡାକ୍ତର ପୁଅ ଠିଆ ହୋଇଛି ।

ପଚାରିଲି, 'ବାପା', କେମିତି ଲାଗୁଛି' ? ଇଂରାଜୀ ଅଧ୍ୟାପକର ଟାଣ ରସି କହିଦେଲି Fine calm quiet composed' ଯେ ମତେ ଗୁହିଁ ରହିଥାଏ, ମତେ ଜଣା ପଡ଼ୁଥାଏ ଯିମିତି ହିରଣ୍ୟକଶିପୁକୁ ନରସିଂହ ବଦାରଣ କରୁଛନ୍ତି (Maneaters of . ovoର ସିଂହ ନୁହେଁ ତ !) ପ୍ରହ୍ଲାଦ ପାଖରେ ହାତଯୋଡ଼ି ଛିଡ଼ା ହୋଇ ରହିଛି । ଯାଙ୍କେ ଯାଙ୍କେ କହିଲି, ବାପାରେ ! ମନେପଡ଼ୁ ବ କି ନାହିଁ ପରେ କହିଦଉଛି କଥାଟା ମନେ ରଖିବାକୁ । ଏଇକ୍ଷଣି କିଏ ଜଣେ ଗୁଡ଼ାଏ ବଡ଼ ବଡ଼ ନାନା ରଙ୍ଗର ଗୋଲାପ ଫୁଲର ତୋଡ଼ାଟାଏ ଦେଇ ଚାଲିଗଲା । ପୁଅ ବଜ୍ଞାନସମ୍ମତ ଦୃଷ୍ଟିକୋଣରୁ ସଂଦେଶିକ ବାପାଙ୍କ ଘଞ୍ଜା ଦମେ ଲୋପ ପାଉଥିବାରୁ ଅଜେବାକେ ଖବୁଛନ୍ତି, ଦେଖୁଛନ୍ତି । ମୁଁ ପଚାରିବା ପାଇଁ ଯାଉଥିଲି 'ଡାକ୍ତର ଦାସ ଆସିଲେ କି ?' ପଚାରି ପାରିଲି ନାହିଁ । ଗଁ, ଗଁ ଶବ୍ଦଟା ତଣ୍ଟିରେ ରହିଗଲା । ବାସ୍ ସେତିକି ।

ଏଇ ଜାଗାରେ ସମୟ ଅଟକି ଗଲା; ଘଡ଼ି ଘଣ୍ଟା ମୋ ପାଇଁ ଅନ୍ତତଃ ବନ୍ଦ । କେତେ ସମୟ ପରେ କେଉଁଠି ଚେତା ଆସିଲା ଜାଣେ ନାହିଁ । ତେବେ ସୁପ୍ତ ହେଉଥିବାବେଳେ ସନ୍ଧ ସ୍ଥଳରେ ଥାଇ ମୋର ପ୍ରଶ୍ନ ହେଲା ମୋହ ପୂର୍ବର ଡାକ୍ତର ଦାସ ଅସିଲେ ?' ବଡ଼ଝିଅ ଆନନ୍ଦ ଗଦ୍‌ଗଦ ହୋଇ ଉତ୍ତର ଦେଲା "ହଁ ହଁ" । ପୁଣି କେତେ ସମୟ ପରର ପ୍ରଶ୍ନ "ଅପରେଶନ ହେଲା ନାହିଁ ?" ବଡ଼ପାଟିରେ ଉତ୍ତର ଆସିଲା 'ହେଲା, ହେଲା' ପୁଣି କେତେ ସମୟ ପରେ ମୋର ପରବର୍ତ୍ତୀ ପ୍ରଶ୍ନ 'କ'ଣ କିଛି ବାହାରିଲା ?' ହଁ ହଁ, ଅନେକ ଷ୍ଟୋନ୍ । ପେଟଆଡ଼କୁ ଗୁହିଁବାକୁ ସାହସ ହେଲାନି । Very Successful Operation କିଏ କହିଲା । "ଲାହୋରରେ ପାକିସ୍ତାନ କେତେ ସ୍କୋର କଲା ?" କ୍ରମେ କ୍ରମେ ମର୍ତ୍ତ୍ୟକୁ ପୁଣି ଫେରିଲି । ତା' ପରେ ପଚାରିଲି, "କେତେଟା ବାଜିଲା ?" ଉତ୍ତର ଆସିଲା 'ଅଢ଼େଇଟା' । "ଏତେ ସମୟ ବାଡ଼ ଲଦାର ଶୋଇଥିଲି ପରି ଲାଗିଲା । କଷ୍ଟ ଯନ୍ତ୍ରଣା କିଛି ନାହିଁ । ଚେତା ଆସୁଥାଏ, ଯାଉଥାଏ । କୋଠରୀ ଚାରିଆଡ଼େ ଆଖି ବୁଲାଇଲି । ଏଇଟା ଆଉ ଗୋଟାଏ କୋଠରୀ, କେବିନ୍ । ନାକରେ ନଳ, ଅକ୍‌ସିଜେନ ସିଲିଣ୍ଡର୍ ହାତରେ ନଳ ଛୁଞ୍ଚି; ରକ୍ତଦେବା ଯନ୍ତ୍ର, ସଅଁଦେଉଛି, ସାମାନ୍ୟ ରକ୍ତ ରହିଯାଇଛି ସହିଁରୁ ଜାଣିଲି ରକ୍ତ ବି ଦିଆଯାଇଛି । କିଏ ଜଣେ କହିଲା—"ଜଣେ ମୁସଲମାନର ରକ୍ତ" । ଭଲ ହେଲା,

ନରମା ମୋର ଲେଖିକ ଏଥର ଟାଣୁଆ ହେବ । କେତେ କେତେ ଲୋକ ମୋତେ ଦେଖଆସ୍ତି । ମୁଁ ଜଣେ ଭି.ଆଇ.ପି. ପାଲଟିଲି । ଧୀରେ ଧୀରେ ପୃଥିବୀକୁ ଫେରୁଥାଏ । "ଗ୍ରହଣ ଯାତନା ମଥର ।" ମୋର ପେନ୍‌ସନ୍ ଗ୍ରହଣ ଯାତନାଙ୍କ । ମାଷ୍ଟରଙ୍କ ଗ୍ରହଣ କଲେ ଗୋଟିଏ ଟଙ୍କା ପେନ୍‌ସନ୍ ପାଇବାକୁ ହେଲେ ଗଲ୍ ବ୍ଲାଡ଼ରରେ ଗୋଟିଏ **transluscent object** ରହିବାକୁ ପଡ଼ିବ ।

ପାକଳ୍ପ ପଡରଟା ଖସି ପଡ଼ୁଥିଲା, ଜୀବନ ପ୍ରତି ମମତା ଗ୍ରୁଲଯାଉଥିଲା, କିଏ ଯାଦୁକର ତେଆଁଟାରେ ଅଧିକା ରସ ଢାଳିବାର କରିଦେଲା । ଜାବୁଡ଼ି ଧରିଲି ଜୀବନକୁ । ଶୁଣିଥିଲି ଅଠଚାଳିଶ ଘଣ୍ଟା ପାର ହୋଇଗଲେ ମରିବ ନାହିଁ । ବଞ୍ଚିଗଲି । ଚତୁର୍ଥ ଦିନ ବଡ଼ ଦ୍ୱେଷୀମାନଙ୍କର ଗ୍ରହଖଣ୍ଡ, ଭଜା ରାତିକୁ ପୁଣି ପୁରା ଗୋଟାଏ ଚକେନ୍‌ର **Stew** ଖାଇଲି । ଏଗାର ଦିନରେ ସିଲେଇ ଫିଟା ହେଲା । ଯିଏ ଫିଟାଇଲା ସେ ଅପେ ଅପେ କହିଲା **'a clean wound'** । ଖାଲି ଟୋଲଟା ମାତ୍ର ଥାଏ । ଅଠ ଇଞ୍ଚ ଦାଗ । ପେଟଟା ଦ'ଫାଳ କରି ହୋଇଥିଲା । ଡକ୍ଟର ଗୁଣ ମିଛ କହିଲା । କଥା ମିଛ ।

ପଞ୍ଚମ ଦିନ ମୋର ଜଣେ ସମ୍ମୁଖ ଆସିଲେ । ଦୂରରୁ ସେ ଚିତ୍କାର କଲେ । "କହୋ ସମ୍ମୁଖ ! ଅପାରେଶନ ହୋଇଛୁ ନା ନାହିଁ, ବେଶ୍ ଭଲ ଦିଶୁଛ ତ ।" ଏଇ ନିଅ" କହି ସେ ମୋ ହାତକୁ ବଢ଼ାଇଦେଲେ ଏକ ବଗିଚ ଗୋଲାପ ଫୁଲର ତୋଡ଼ା, ଠିକ୍ ଯିମିତି ନାନା ରଙ୍ଗର ଫୁଲତୋଡାଟା ଅପାରେଶନ ଟେବୁଲରେ ପଡ଼ିଥିଲାବେଳେ ଏକ ଅଦେଖା ହାତ ଦେଇଥିଲା । ମୁଁ କାବୁକା ! ହତଭମ୍ବ ।

ଦୀପାବଳି ସନ୍ଧ୍ୟା । ଗ୍ରହଆଡ଼େ ବାଣ ଫୁଟିବାକୁ ଆରମ୍ଭ ହେଲାଣି, ଡାକ୍ତର-ଖାନା ଛାତ ଉପରେ ଅନେକ ମତେ ଦିଶୁଛି । ମମତା ଜମି ଯାଇଥିଲା କେବଳ ପ୍ରତି, ନାର୍ସମାନଙ୍କ ପ୍ରତି । ବନ୍ଧୁ ଦୁଷ୍ଟ ଅଲେକ୍‌ଜାଣ୍ଡାର ଘର ମୁଁ ପୁଅ ଗାଡ଼ିରେ ବନ୍ଧୁ ଶୋଭାଯାତ୍ରାରେ ଝୁରୁଝୁର ବଡାଜାଲି ବାହେ୍ଟାଇ ଡାକ୍ତରଖାନା ଛାଡ଼ିଲି, ମୃତ୍ୟୁକୁ ପରାସ୍ତ କରି । ଚାଲିଲି ସିଧା ସହରର ନଇଁଗୁଡିଆ ଜାଗାର ଜଗନ୍ନାଥ ମନ୍ଦିରକୁ ଯେଉଁଠି ଠିକ୍ ସେତିକିବେଳେ ଅଗରୁ ଧୂପ ଦୀପ ସଙ୍କୀର୍ତ୍ତନ ଚାଲିଥିଲା ।



# ବେଲା

"ଠାକୁରାନ୍ (ଣୀ) ଗୋ, ଏ ଗିରହାନ୍ ( ଣୀ, ଗୃହିଣୀ), ଦୁଆରଟା ଟିକେ ଫିଟାଅ ନା !"

ସ୍ତ୍ରୀ ଲୋକଟାର ଏ ଚିତ୍କାର, ଅନ୍ତର୍ନାଦ ଶୁଣୁ ଶୁଣୁ ସାଇକେଲରୁ ଓହ୍ଲାଇ ବଗିଚା ରାସ୍ତା ଦେଇ ଘର ଦରଜା ଆଡ଼କୁ ଯାଉଛି, ଭିତରୁ ଉତ୍ତର ଆସିଲା, "ରହରେ ଟିକେ, ଦୁଧ ଉତୁରି ଯିବ, ଯାଉଛି, ଯାଉଛି; ତୁ ଡାକୁଛୁ ତ ଡାକୁଛୁ, ଦଣ୍ଡେ ତର ରହୁନା।"

ସାଇକେଲଟାକୁ ଛିଡ଼ା କରାଇ ବାରଣ୍ଡାକୁ ଉଠିବା ପୂର୍ବରୁ ସେ ସ୍ତ୍ରୀ ଲୋକଟା ମୋତେ ଦେଖି ସନ୍ତର୍ପଣରେ ତରବରରେ ତଳକୁ ଓହ୍ଲାଇ ଆସି ସିମେଣ୍ଟ ପାହାଚ ତଳେ ଆଡ଼ ହୋଇ ଛିଡ଼ା ହେଲା । ମୁହଁ ତଳକୁ ପୋତି ଆଖିପତା ଉପରକୁ ଉଠାଇ ଯିମିତି ମୋତେ ଦେଖି ଦେଇଛି, ତା' ମନଟା କମିତି ଖଟାଳିଆ ହୋଇଗଲା । ସହର ବଜାରର ବଡ଼ ବଡ଼ ଘରର ଝିଅ ବୋହୁ ସକାଳୁ ଉଠି ଟେଲିଫୋନ ତାରରେ ଗୋଟିଏ ବଣି ଦେଖି ଦେଲେ ଯିମିତି ମନେ ମନେ one for sorrow କହି କାନ୍ଦକାନ୍ଦ ହୁଅନ୍ତି, ଏ ସିମିତି ହେଲା । ମୋତେ ଏକ ଅନିଷ୍ଟ ଅଶୁଭର ଚିହ୍ନ ଭାବିଲା ନିଶ୍ଚୟ । ମୋ' ପ୍ରତି ତା'ର ଭୟର ଲକ୍ଷଣ ବି କିଛି ଥିଲା ତା'ର ଗୁହାଁଣୀରେ । ଫେରିଯିବ ବୋଲି ବୋଧହୁଏ ମୁହୂର୍ତ୍ତେ ଭାବୁଥିଲା ଗଲା ନାହିଁ ।

ଦୁଇ ଗୁଟି ମୁହୂର୍ତ୍ତ ଛିଡ଼ା ହୋଇ ମୁଁ ତା'ର ଚକାର ବକାର ଦେଖି ଭାବିଲି ସେ ଏକ ଭିଖାରୁଣୀ, ହୁଏତ କ'ଣ ମାଗିବାକୁ ଆସିଛି । କେବେ କମିତି ଦେଖିଛି ପାଖ ଡୋମ, କୁରଙ୍ଗା ( ଏବେ ହରିଜନ ) ସାହିର ଜଣେ ଅଧେ ଲୋକ ପଖାଳ

ତୋବଣି ବେଳରେ ତାଲେ ଦ'ଡାଲ ସକନା ଶାଗର ଅଣାୟି ହୋଇ ମୋ' ସ୍ୱାମୀଙ୍କ ପାଖରେ ପ୍ରାର୍ଥୀ ହୁଅନ୍ତି । ପିଲାପିଲିଙ୍କ ପିଠୁବା, ଡଡ଼କା ବାତ ଆଦ ରୋଗର ଜଡ଼ିବୁଟି ଗୁଟକା ଫୁଙ୍କାଫୁଙ୍କି ଚିକିତ୍ସା ସେ କିପରି କରିପାରେ ବା କରୁଥିବାର ମୁଁ ଜାଣେ । ରୋଗ ଭଲ ହୁଏ କି ନାହିଁ ଜାଣେ ନା । କିନ୍ତୁ ବିଶ୍ୱାସରେ ଲୋକେ ସାଠ ଅଧରେ ବି ଆସିଥା'ନ୍ତି ।

ବର୍ଷାରେ ଭିଜି ଯାଉଥିବାରୁ ତା' ଦେହର ଅଇଁଷିଆ ଗନ୍ଧ ଟିକିଏ ଫୁଟି ଦୂରରୁ ବାରିପାରୁଛି । କୁଞ୍ଚିକୁଞ୍ଚିକା ଟାଉଁଶିଆ ଚୁଲଗୁଡ଼ାକରେ ପୋଷେ ହେବ ବର୍ଷାବିନ୍ଦୁ ଅଟକି ଯାଇଛି । କାଦୁଅ ରଙ୍ଗର ଯେଉଁ ଶାଢ଼ୀ ଧୋତିର ଅପଭ୍ରଂଶ ମାତ୍ର ) ପିନ୍ଧିଛି, ତାହା ଏତେ ପୁରୁଣା ଓ ପତଳା ଯେ ଅନ୍ତର୍ବାସ ବିହୀନ ତା' ଦେହର ରେଖା ଓ ଗୋଲେଇ ଜଳ ଜଳ ଦିଶିଯାଉଛି । ବକ୍ଷ ପ୍ରଦେଶରେ ସ୍ୱଭାବତଃ ମୋର ପ୍ରଥମ ନଜର ପଡ଼ିଲା । 'ଲୁଚିଛି, ଗୋଡ଼ ଦୁଇଟା ଦିଶୁଛି' ମୂଳମନ୍ତ୍ରରେ ଦଶୁ କଲା ପ୍ରତିଷ୍ଠିତ ହେଲା ପରି ନାରୀ ,ଦେହଟା ମୋତେ ଆପେ ଆପେ କ୍ଷଣକେ ଦିଶିଗଲା । ଆଶ୍ଚର୍ଯ୍ୟ ହେଲି, ସ୍ତ୍ରୀ ଲୋକଟାର ଭିନ୍ନ ଟିକିଏ ସ୍ତନ । ବର୍ତ୍ତୁଳ, ଦୁଧ ଉତୁରାଇବା ଅଟିକା ପରି । ବହୁ କଷ୍ଟରେ ସେ ଯୋଡ଼ାଏ ହାତରେ ସ୍ତନଟା ଚିକି ଢଙ୍କାଇବାର ଚେଷ୍ଟା କରୁଛି । ଗୋଟାଏ ଶିଶୁମୁଣ୍ଡ ବୋଲି ଠଉରାଇ ନେଲି ଦେହଜେ, ବହଳ କଳା ଚୁଲ ଯୋଗୁଁ । ପଣତର କତିକୁ କାଖତଳରେ ମୋ' ଦୃଷ୍ଟିର ଆଢ଼ୁଆଳରେ ଜାକି ହୋଇଥିବା ଛୋଟ ଚିଜଟାକୁ ଗୋଟାଏ ବଡ଼ ବେଙ୍ଗ ବୋଲି ଭାବିଲି, ଯାହା ତା'ର ଦେହର ଅଂଶବିଶେଷ ନୁହେଁ । ସ୍ତନ୍ୟେଟି ଚିଜକୁ ଢାଙ୍କିବା ପାଇଁ ଲୁଗାକାନି ପର୍ଯ୍ୟାପ୍ତ ନ ଥିବାରୁ ସେ ଅଶ୍ୱସ୍ତି ଅନୁଭବ କରୁଛି, ଅସ୍ତବ୍ୟସ୍ତ ହେଉଛି । ପ୍ରତି ଢାଙ୍କିବାକୁ ଗଲେ ପିଠି ଦିଶିଯାଉଛି । ଲକ୍ଷ ଲକ୍ଷ ମଶାକାମୁଡ଼ା ଚିହ୍ନ ମିଳିମିଳା ପରି ଦିଶୁଛି ।

କେବେ ଏ ସ୍ତ୍ରୀଲୋକଟାକୁ କେଉଁଠି ଦେଖିଛି ! ହଁ ତ, ଆମ ଏଇ ଘରର ନାଅଁ ଖୋଳିଲା ବେଳେ ଯେଉଁ ଜୁଆଣ ଝିଅଟା ଧୂମ୍ରଁଷ କରୁଥିଲା, ଏ ହେଇ ନୁହେଁ ତ । ତା' ନାଆଁ ଚମ୍ପା । କାଲିର ଝିଅ ଆଜିର ମାଆ । ମାଆଟି ଭିତରୁ ସୁନ୍ଦରୀ ଝିଅଟିକୁ ଖୋଜି ପାଇବା ମୁସ୍କିଲ ହୁଏ । ବୈମ୍ଲବିକ ପରିବର୍ତ୍ତନ ।

ଘର ଭିତରକୁ ପଶୁଛୁ ଦୁଧ ଡକି ହାତରେ ଧରି ଭିଡ଼ି ଅସୁଛନ୍ତି ସ୍ତ୍ରୀ ମୋ' ଅଡ଼କୁ ।

ପଚାରିଲି, "ଏ ସ୍ତ୍ରୀ ଲୋକଟା କୁରଙ୍ଗା ସାଇର ଚମ୍ପା ନା ? ତା' ଦେହ ଯିମିତି ଥିଲା ସେମିତି ଅଛି, ଛୁଆପିଲାର ମାଆ ହେଲେ ବି ଦେହ ଭାଙ୍ଗି ନି । ଇଏ କାହିଁକି ବର୍ଷାରେ ଭିଜିଭିଜି ସନ୍ଧ୍ୟାବେଳଟାରେ ଠାକୁରଙ୍କ ଗିରହାନ୍ ଚିତ୍କାର କରୁଥିଲା ?"

"କାହା ନାଁ, ମନ୍ତ୍ରୀ, କାହା ନାଆଁ ମୋ ତୁମ ଟିପାଖାତାରେ ଥିବ । କାହାର ନାଆଁ କ'ଣ, ମନେ ରଖିବା କାମ ମୋର ନୁହେଁ । କାହା ଦେହ କିମିତି ଥିଲା, କିମିତି ଅଛି, ତା'ର ହିସାବ ତୁମେ ରଖ । ଦୁଇଟା ଟଙ୍କା ନେବ ବୋଲି ସକାଳୁ ଆସିଥିଲା । ଭଙ୍ଗାଣି ଟଙ୍କା ଭିଖା ଦୋକାନରେ ନ ଥିଲା । ଏ ବେଳାକୁ ଆସିବାକୁ କହିଥିଲି । ବେଲଟା ବନ୍ଧା ଦେଇ ଟଙ୍କା ନେବ ।"

"ବନ୍ଧା ଦେଇ ଟଙ୍କା ନେବ ! ଦୁଇଟା ଟଙ୍କା ନେବ ବୋଲି ଏତେ ବଡ଼ ବେଲଟାଏ ବନ୍ଧା ନେବ ନା ? ପଖାଳ ତୋରାଣି ଦରପ୍ରାଣୀ ଖାଇବେ କିପରି ? ଏମିତି ଦେଇ ଦେଉନ ଦି'ଟା ଟଙ୍କା, ବିଶ୍ୱାସରେ । ବେଲ ବନ୍ଧା ଦେଇ ଟଙ୍କା ନେବ !"

"ତା' ଦିଅନ୍ତା ନି ! ଲୋକେ ଗହଣାଗାଣ୍ଠି ବେଲବାସନ କରିଥାନ୍ତି ବିପଦେ ଅପଦେ ବନ୍ଧାଛନ୍ଦା ପକାଇ ବର୍ତ୍ତିଯିବେ ବୋଲି । ଆଜି ଆମର ଦରକାର ପଡ଼ିଲେ ମୋ ଗହଣାଗାଣ୍ଠି ଦେହରୁ କାଢ଼ି ରାମ ଶର୍ମା ପାଖକୁ ନହେଲେ ବେଙ୍କକୁ, ଧାଇଁବ ତ ? ମଫସଲରେ ଅଳ୍ପଟଙ୍କା ପାଇଁ କେଉଁଠି କିଏ ବିନା ବନ୍ଧାଛନ୍ଦାରେ ଟଙ୍କାର ବ୍ୟବସ୍ଥା କରି ପାରିଛୁ ?"

"ସୁଧ ତୁମେ କେତେ ନଉଛ ଶୁଣେ ?"

"ଦୁନିଆଁରେ ଯାହା ଚାଲିଛି । ମତେ କିଏ ଅଧିକା ଦେବ ? ଟଙ୍କାରେ ଚାରିଣା ।"

"ଯଦି ସେ ନେଇ ନ ପାରିଲା ?"

"ଫେଗ୍ରାଇ ନେଇ ନ ପାରିବ ତ ବନ୍ଧା ଦେଉଥିଲ କାହିଁକି ? ମୁଁ ତ ଲୋକ ପଠାଇ ତାକୁ ଡାକନ୍ତି ।"

"କ'ଣ ଲାଭ ହବ ଆମର ଏ ଟଙ୍କାଏ ମଣାଏ ବେପାରରେ ? ମୁଁ କହୁଛୁ ଆଜଠୁଁ ତୁମେ ଏ ବନ୍ଧାଛନ୍ଦା ରଖିବା କାମ ଛାଡ଼ିଦିଅ । ବଡ଼ ଜଘନ୍ୟ ବେଉସା । ଗରିବଙ୍କ ତର୍ଣ୍ଣିଟପା ପଇସାରେ ଯେଉଁ ଘର କରିବ, ତାହା ଦିନେ ଭୁଷୁଡ଼ି ପଡ଼ିବ । ଭଦ୍ରଲୋକ ଘରର ଝିଅବହୁ ଏ ବେଉସା କରନ୍ତି ନ ?"

"ମୋ ବାପା କ'ଣ ତୁମ ଆଖିରେ ଭଦ୍ର ନୁହନ୍ତି ? ମୋ କକା ତ ଜଣେ ପୋଲିସ ଇନ୍‌ସପେକ୍ଟର । ତାଙ୍କ ଡାକୁଆ ଘର ଗ୍ଭତକୁ ଚଢ଼ିଯାଇ ଗଣିବ ତ କେତେ ଘଣ୍ଟା ଗଡ଼ୁ, ହଣ୍ଡା, ଗଡ଼ୁଛୁ, କୁଢ଼କୁଢ଼ ହୋଇ କେତେ କେତେ ବେଲବାସନ ଥାକ ଥାକ ହୋଇ ଥୁଆ ହୋଇଛୁ ।"

"ସେ ସବୁ କ'ଣ କେହି ସୁଧମୂଳ ଦେଇ ଓ୍ୱାପସ ନଅନ୍ତି ନ ? କ'ଣ କେବେ ହବ ସେସବୁ ତକରେ ?"

"କ'ଣ ହବ ? ବିକ ଦେବେ । କଂସାରି ଦୋକାନକୁ ଯିବ ବେଲବାସନ ହଣ୍ଡା ଗରିଆ; ସୁନାରି ଦୋକାନକୁ ଯିବ ଗହଣାଗାଣ୍ଠି । ସେ ସବୁ କ'ଣ ସଢ଼ିଯିବ ସେ ତାଙ୍କ ପଇସା ବୁଡ଼ିଯିବ ।"

"ତୁମେ ଏ ଧନ୍ଦା କେବେଠୁଁ ଧରିଲଣି ? ମତେ କେବେ କହନ ?"

"ଓହୋ ! କେତେ କେତେ ଟଙ୍କା ଗହଣାଗାଣ୍ଠି ଆଣି ମତେ ଧରାଇ ଦେଇଛ, ବାହାରେ ଝୁଲାଇ ଦେଇଛ ଯେ ମହାଜନୀ ସେରେସ୍ତା ଖୋଲି ଏଇଠି ବସିଥିବି ? ଦଶ କୋଡ଼ିଏ ଟଙ୍କା ମାସକୁ ବଲାଇ ପାରିଲେ ଢେର ।"

"ଯା ହେଉ, ତୁମେ ଏ ବେଉସା ବନ୍ଦ କର । ମୋତେ କାନ୍ଦ ମାଡ଼ୁଛୁ । ବସ୍ତୁଙ୍କୁ ଯୋଡ଼ାଏ ଟଙ୍କା ଦେଇଦିଅ । ନେଇ, ବିଦା ହୋଇଯାଉ । ମୁଁ ତା' ମୁହଁକୁ ଗ୍ଭହିଁ ପାରିବି ନାହିଁ ।"

"ଏଥର ସାଇପନ୍ଥଶାଙ୍କୁ ଡାକିବ । 'ଅସ' କଳିଯୁଗର ଦାତାକର୍ଣ୍ଣ କିଏ ଦେଖିବ । ସତରେ ତୁମେ କହୁଛ କ'ଣ ? ଏମିତି ଏମିତି ତାଙ୍କୁ ଦାନ ଦେଇଦେବ ଦୁଇଟଙ୍କା । ଦୁଇଟଙ୍କାରେ ଅତି କମ୍‌ରେ ୫° ସେର ଗୁଡ଼ିଆ ମିଳିବ । ଆମର ମାହକର ଗୁଡ଼ିଆ । ତୁମେ ଯେମିତି ଦାନପଣିଆଁ ଦେଖାଇବାକୁ ଆରମ୍ଭ କଲିଣି ହୁଏତ କରତ ଦୁଇପଟେ ଦୁହେଁ ଧରି ପୁଅମୁଣ୍ଡ କାଟିବା ନହେଲେ, ମତେ ଛାଡ଼ ତୁମେ ବାହାର ଦାସ ହୋଇ ମଶାଣିରେ ଗୁଲୁଥିବ । ଗୁଲି, ଜଳଖିଆ ଖାଇବ ।

ଲମ୍ବା ବକ୍ତୃତାରେ ମୁଁ ଚୁପ୍ ହୋଇଗଲି । ମନେ ମନେ କହିଲି, "ଯାହା କରୁଛ କର । ଭବିଷ୍ୟତକୁ ଅନୁତାପ କରିବ ।"

"ଲୁଗାପଟା ବଦଳାଅ, ଲୁଙ୍ଗିଟା ମଣାଣ ବାଡ଼ରେ ଅଛି । ଗୁ'ପାଣି ବଢ଼ାଇ ଦେଇଛି ଚୂଲିରେ । ମୁଁ ଅ.ଗ ତାଙ୍କୁ ବିଦା କରିଦିଏ । ସକାଳ ପହରୁ କିଛି ବଗୁଷର ପେଟକୁ ଯାଇନି । ଷୀର ଶୁଖିଯିବ । କୋହଲ ପାଗରେ ଭିଜାଡନ୍ତ ଥରୁଛି । ଦୁଧଖିଆ ଝିଅଟାକୁ ଶରଦ ଧରିଯିବ ।"

ଗୁ'କୁ ଅପେକ୍ଷା କରି ଖବରକାଗଜଟା ଓଲଟାଉ ଥାଏ । ପଣ୍ଡିତ କାନରୁ ଗୁବପେନ୍ସା ( ଯୋଡ଼ାଏ ଚନଟା କାଠି କାମିକା, ଅନ୍ୟହକୁ ଅଲଙ୍କାର ଝମ୍‌ଝମ୍ ଶବ୍ଦ ବାହାର କରିବା ପାଇଁ ) ବାହାର କରି ବାପସରୁ ଆଣିଥିବା ଟିଣବାକ୍ସ ଫିଟାଇ ଗୋଟାଏ ଗ୍ରେଟ ଜ୍ୱିଟାରୁ ଗୁଡ଼ାଏ ତମ୍ବା ପଇସା ବାହାର କରି ଗୁଣ୍ଠିଅଣିଆ ଥାକ କରି ପୁଣି ଗଣିଲେ ଏବଂ ଗୁଡ଼ାଏ ପଇସା ଧରି ବାହାରକୁ ଗୁଲିଗଲେ ।

ଖଣ୍ଡେ ଦୂରରୁ ଗ୍ରେଟ କାନଟାରେ ପଇସାଗୁଡ଼ାକ ଝମ୍‌ଝାମ୍ କରି ପକାଇ ଦେଇ କହିଲେ "ଏଇ ନେ । ତର ବିପଦବେଳେ ଏ ଟଙ୍କା ଦଉଛି । ତୁ ମତେ ଯେତେ ଶୀଘ୍ର ପାରିବୁ ସୁଧମୂଳ ଦେଇ ତର୍ ଜିନିଷ ନେଇଯିବୁ । ଦୁଇଟଙ୍କାକୁ ମାସକୁ ଆଠଣା ସୁଧ । ପନ୍ଦର ଦିନରେ ଶୁଝିଦେଲେ ବି ମାହରେ ସୁଧ ପଡ଼ିବ, ଜାଣିଥା ।"

"ଏ ଠାକୁରାନ୍ ! ମରଦ୍‌ଟା ଅଜ ସକାଳେନ ଖଡ଼ଗପୁର ଯାଇଛି, ସାଇର ଆଉମାନଙ୍କ ସାଙ୍ଗ୍‌ରେ । କଡ଼କଡ଼ିଆ ଘରେ ପାଛିଆ, ଟୁବୁଲି, ବଞ୍ଚଣା, କୁଲି ଝୁମ୍‌କା ନେଇଛି । ବେକାଏଁ ଦୁରିଆ ଯେ, ଗିରିହାନ୍, ସକାଳେ ଗେଲେ ସଞ୍ଜରେ

ପଡୁଥିବ । ବକବ, ଖଙ୍କିବ, ହାଟବାଟ କରବ । ଧନ୍ ଧନକୁ ଫେରବ ଘର୍ । ମଣଷଟା ଫେରଲେକ ମୁଁ ତୁମର ସୁଦମୂଳ କର ଶୁଝିଦେବ । ଘରେ ଆଉ କଛୁ ଦାନ ଯାନ ଚଜ ନାହିଁଥିଲ । ଏତେବଡ଼ ବେଲଟା—ଦୁଇ ସେର ଆଉ ଅଧେ ଥିଲ ପିମଲା ଶିବଟ୍ଟିର ହାଟରେ ବାପା କଣି ଦେଇଥିଲ—ବନ୍ଧା ପକାଇଥାନ୍ତି । ଆମର ଅଉ ସେଇ ଗୋଟାଏ ନ ବାସନ୍ ଗୋ ଟିଣହାନ୍, ବାପା କହୁଛ ସେଟାକୁ କେବେ ହାତଛାଡ଼ କରବ ନାହିଁ ବୋଲ ମରଦ୍ଧ । ସେଇଟାରେ ନ ହେଲେ ଅଉ କାହିଁରେ ପଖାଳ ତୁଣ୍ଡି ନାହିଁ ଖାଏ ।"

ତୁଳସୀ ପତର ପାଣି ପକାଇ ବେଲଟାକୁ ଝିଅ ସ୍ତ୍ରୀ ମୋ ପାଖ ଦେଇ ଦୁମଦାମ୍ ଗୁଲଯାଇଥାନ୍ତି । ପଗୁରଲି, 'ଏମିତ କେତେ କେତେ ବେଲ୍ବାସନ ରଖିବଣି; କେମିତ ଭଲ ଚହ୍ନିବ କେଉଁଟା କାହାର ବୋଲି ?

"ମତେ ଏତେ ବୁକା ମୂର୍ଖ ପାଇଲ ! ଖୁଡ଼ୀ ତ ଅ ଆ ମୃହ ସୁଦ୍ଧିନ, ସିଏ ତ ଏମିତ ବନ୍ଧାଛନ୍ଦା ରଖି ପାକା ପିଟିଦେଲ । କାହାର ତ କେବେ ଗୋଲମାଲ କରନ ସେ । ବେଲ୍ବାସନରେ ମାଲିକର ନାଆଁ ଖୋଦେଇ ହୋଇଥାଏ ଜାଣ ନା ? ଯଦ ନାଆଁ ଗାଆଁ ଲେଖା ନାହିଁ, ତେବେ ଖଣ୍ଡେ କାଗଜରେ ଲେଖି ରଖିଦେଲେ ହେଲ ।"

ମୁଁ ମନେ ମନେ ଭାବିଲି, ଗୋଳମାଲ ହବ କମିତ ? ସିଏ ଏତେ କମ୍ ଟଙ୍କାରେ ଏତେ ଦାମିକା ଚଜ ବନ୍ଧା ପକାଇଛୁ, ସେ ସହଜରେ ତାକୁ ଫେରାଇବାକୁ ଭୁଲିବ ?

ସ୍ତ୍ରୀ ସେତକବେଳେ ବେଲଟାକୁ ମୋ ମୁହଁ ସାମନାରେ ଟେକିଧର କହଲେ, ପଢ଼ କାହା ନାଆଁ । ପଢ଼ିଲି ଖୋଦେଇ ଅକ୍ଷର ଗୋଟି ଗୋଟି କର ନାଲ ମଦନ ଗୁହେଇତ ।

ସେ କାଳରେ ଦ୍ୱିତୀୟ ମହାଯୁଦ୍ଧ ପ୍ରାରମ୍ଭରେ, ସିଏ ଯେତେ ବେଶୀ ଜମିଦାରଆ ବାସନକୁସନ ଗହଣାଗାଣ୍ଠି ବନ୍ଧା ରଖିପାରଲ ସେ ସେତକ ଖାନ୍ଦାନ୍ ବଡ଼ଲୋକ ବୋଲି ଭାବୁଥିଲେ ଏବଂ ସମାଜରେ ତାଙ୍କର ସମ୍ମାନ ଓ ପ୍ରତିପତ୍ତି ଅଧ

ମାଝାରେ ଥିଲି । ଜଣେ କେହି ଲୁଗ୍ନବପାରେ ଜିନିଷପତ୍ର ବନ୍ଧା ରଖିଲେ ମାତ୍ରେ ତାହା ହାଇଟାଗ୍ ଷଣକେ ପ୍ରଘଟ ହୋଇଯାଉଥିଲା ଏବଂ ପୋଖରୀ ଘାଟରେ ଫୁସୁରୁଫାସରୁ କଥା ଶୁଭୁଥିଲା, "ବାବା ! ସେମାନେ କେତେ ବଡ଼ଲୋକ, ବନ୍ଧାଛନ୍ଦା ରଖିଲେଣି । ତାଙ୍କର ସମସ୍ତଙ୍କ ତାହାଣିଆଁ ପଇସା ଅଛି ।"

ଦିନ ଗଡ଼ିଚାଲିଲା । ଦିନ ପରେ ଦିନ ହପ୍ତା ପରେ ହପ୍ତା, ମାସ ପରେ ମାସ, ଏପରିକି ବର୍ଷ ପରେ ବର୍ଷ । ମୋର ଯାହା ଆଶଙ୍କା ଭୟ ଥିଲା, ତାହାହିଁ ଘଟିଲା । ଚମ୍ପା କି ତା'ର ଗେରସ୍ତ କେହି ବେଲଟା ମୁକୁଳେଇବା ପାଇଁ ଆସିଲେ ନାହିଁ । ଏଣେ ସ୍ତ୍ରୀ ହିସାବ କରି ଦେଖିଲେ ଯେ ଦର୍ତ୍ତି ମୋଟା ହୋଇଯାଇଛି ଏବଂ ପଞ୍ଚମ ଶ୍ରେଣୀରେ ପାଠପଢ଼ିଲାବେଳେ ଜାଣିଲେ ଯେ ଦୁଇ ଟଙ୍କାର ସୁଧମୂଳ ଯାହା ହେବ ସେଥିରେ ତିନିଚାରିଟା ନୂଆ ବେଲ କିଣିହେବ ।

ଏ ଭିତରେ ବଡ଼ ଝିଅର ବୟସ ଆଠ କି ଦଶ ହେଲାଣି । ତା' ମାଆ କେତେ ବନ୍ଧାଛନ୍ଦା ଏ ଭିତରେ ରଖିଲେଣି, ତାହା ତାକୁଆ ଘରର ଅନ୍ଧାରୁଆ ଅଟୁଳି ଜାଣିଥିବ । ମୁଁ ସେ ବିଷୟ ଗବେଷଣା କରି ନାହିଁ । ଅନେକ କଥାକୁ ଆଖି ବୁଜିଦେଲେ ଅଯଥା ଦୁଃଖର ଦହ୍ୱଜ ବିନାଶ ଘଟେ ।

ମୁଁ ଜୀବନସାରା ଟିକିଏ ରୋଗା ପେଟବେମାରିଆ ଲୋକ । ପଖାଳ ବା ଭାତ ପେଟରେ କ୍ଲାସରେ ବକର ବକର ହେଲେ ଡିସ୍‌ପେପ୍‌ସିଆ ବା ଅଗ୍ନିମାନ୍ଦ୍ୟ ଧରେ । ଖିଆପିଆରେ ମୋର ଆଗ୍ରହ ନାହିଁ । ଭୋକ ତ ଲାଗେନି; ଅନ୍ୟ କେହି ଗରିଷ୍ଠ ଭୋଜନ କରିବାର ମୁଁ ଦେଖି ସହି ପାରେନି ।

ମୋ ସ୍ତ୍ରୀ ସେ କଥାରେ ମୋର ବିପରୀତ । ବହୁତ ଖାଆନ୍ତି । ଏତେ ବଡ଼ ଦେହଟାକୁ ସମ୍ଭାଳିବେ କିମିତି । ତା' ଛଡ଼ା ତାଙ୍କର ଅପର୍ଯ୍ୟାପ୍ତ କାମ । ବାସନକୁସନ ମାଜନ୍ତି, ଗାଈ ପାଳନ୍ତି । ବାଡ଼ିର ଘାସ ମଧ୍ୟ କାଟନ୍ତି ।

ସେ ଖରି ମୁଢ଼ି ପ୍ରିୟା । ମୟୂରଭଞ୍ଜର ଲୋକ । ବାରିପଦାର ଗରମ ମୁଢ଼ି ଚିରବାଦ ପ୍ରସିଦ୍ଧ । ସେ ନିଜେ ଧାନ ଉଷାନ୍ତି, ଶୁଖାନ୍ତି, ଢିଙ୍କିରେ କୁଟନ୍ତି । ଠିକ୍ ବଡ଼ର

ଦେଖି ଖୁଜନ୍ତି । ନାକରୁ ଗମ୍ ଗମ୍ ହୋଇ ବାହାରୁଥିବା ବହୁବହୁ ଝାଳ ପଣତରେ ପୋଛୁଥିବେ, ମୁଢ଼ି ଖୁଜୁଥିବେ । ବରୁଣ ପୋକ ପରି ବଡ଼ ବଡ଼ ମୁଢ଼ି ଚଡ଼୍ ମଡ଼୍ ହୋଇ ଝୁଲାରୁ ଅପେ ଅପେ ବାହାରି ଆସୁଥିବ । ପୁଣି ମୁଠାଏ ଗୁଡ଼ୁଲ ପକାଉଥିବେ । ବାଜୁର ଦଣ୍ଡୀ ହଲୁଥିବ । ମୁଠାଏ ଗୁଡ଼ୁଲରୁ ଆଠମୁଠା ମୁଢ଼ି ବାହାରୁଥିବ । ଛୁଡ଼ାହୋଇ ଦେଖିବାର କଥା । କଷ୍ଟ ବଡ଼ାକ ଚମ୍ପା ବରାବର ଯୋଗାଇ ଅଣ୍ଟିଏ ମୁଢ଼ି ବା ଯଜନା ଶାଗ ନିଏ । ପଇସା ନିଏ ନାହିଁ ।

ସ୍ୱାଠୁ ଶସ୍ତ୍ରକର୍ଷକ ତାଙ୍କ ଭୋଜନ ଧର୍ମ । ଧର୍ମକର୍ମର ଅନୁଷ୍ଠାନ କ୍ରିୟାକର୍ମ ପରି । ଖାତ ଦେଲେ ସେ ସଦା ବିମୁଖ । ଭୂତର ମୁହଁ ସେ ଗୃହାନ୍ତି ନାହିଁ । ମୁଢ଼ି ତାଙ୍କର ଜୀବନ । ଯେଉଁଠି ମୁଢ଼ି ନ ମିଳିବ, ସେଠାକୁ ସେ ଯିବେ ନାହିଁ କି ସେଠାରେ ରହିବେ ନାହିଁ । ଅମୃତ ମିଳିଲେ ବି ସେ ଉପାସେ ରହିଯିବେ । କଟକ ବା ପୁରୀ ଦୈବାତ୍ ଯିବାର ହେଲେ ମୁଢ଼ି ଟିଣ ହାତରେ ଧରିଥାନ୍ତି ।

ଖାଇବାବେଳେ ତାଙ୍କର କୌଣସି ବାଧାବିଘ୍ନ ହେବନି । ସବୁ ପାଇଟି ସାରି ଗାଧୋଇ-ପାଧୋଇ ପୂଜାଅର୍ଘ୍ୟ ସାରି ଚୁଲି ପାଖରେ ଚକାମାରି ପିଢ଼ା ଉପରେ ବସିଯିବେ । ବାଁ ଜାନୁ ଜଳପୂର୍ଣ୍ଣ ନୋଟା ଉପରେ ଥିବ । ମୁଢ଼ି ଟିଣ ହାତ ପହୁଞ୍ଚାରେ, ବାଁ ପାଖରେ । ଚୁଲିର ଜଳନ୍ତା ଅଙ୍ଗାରରେ ତଙ୍କାଟିଏ ବସିବ, ଦୁଇପଲା ଜେଲଖାନାର ଖାଣ୍ଟି ସୋରିଷ ତେଲରେ ମୁଠାଏ ଲଙ୍କା ଦରପୋଡ଼ା ହୋଇଯାଏ ଭଜାଯିବ । ଦହମୁହାଁ ହୋଇ ସଦ୍ୟ ଲହୁଣୀମିଶ୍ର ଘିଅ ମୁଢ଼ିରେ ପଡ଼ିବ । ସାନ ପିଆଜ ଦୁଇମୁଠା ହାତ ପାଖରେ ଥୁଆ ହେବ । କେହି ପିଲାଝିଲା ପାଖରେ ନ ଥିବେ । ଏକନିଷ୍ଠ ହୋଇ ଯଜ୍ଞ ଆରମ୍ଭ ହେବ । ସମିଧ ପଡ଼ିଗଲେ ଟିଣରୁ ଉଦାକୁ ଉଦା ଆସୁଥିବ, ଜଠରାଗ୍ନି ବାରମ୍ବାର ପ୍ରଜ୍ୱଳିତ ଓ ଶାନ୍ତ ହେଉଥିବେ । ଯାହାକୁ କହନ୍ତି ଝାଳନାଳ ବ୍ୟାପାର ।

ବାପଘରୁ ସେ ଯେଉଁ ଦେଲଟା ଆଣିଥିଲେ, ସେଇଟା ଏବେ ସାନ ପଡ଼ିଯାଉଛି । ଦୁ'ଥରରେ ପାଗ କରିବାକୁ ପଡ଼ୁଛି । ପ୍ରଥମ ପାଗ ପରି ଦ୍ୱିତୀୟ ପାଗ ଉତୁରେ ନାହିଁ । ବଡ଼ ଦେଲଟାଏ କିଣିବା ପାଇଁ ଇଚ୍ଛା କଲେଣି, ଯିମିତ ଏକା ଥରକେ କାମ ସରିଯିବ ।

ଅଜି ରବିବାର । ତାଙ୍କର ବରାଦ୍ ମୁତାବକ ଦେରେ ମାଂସ ଟଙ୍କାଏ ଦେଇ ଆଣିଛୁ । ଉନୁଲା କପ୍ତିପଦା ଆଉ଼ର ହେଲା । ମନ୍ଦୁଲଆ ଖାସି । ଶୁଖିଲ ମାଂସ, ପାଣିଦଅ ନୁହେଁ, କପାଫୁଲ ପରି ଚର୍ବି । ମୁଢ଼ି, କଷା ମାଂସ—ଆଜିର ପ୍ରୋଗ୍ରାମ । ଏବେ ଝିଅ ତାଙ୍କ ସାଙ୍ଗରେ ଯୋଗ ଦେଇଛୁ । ଛୁଟିଦିନ, ସ୍କୁଲ ଯିବ ନାହିଁ । ବେଳଟା ଯାହା ଶ୍ରେଷ୍ଠ ଥିଲା, ଅଜି ତା'ଠୁ ଶ୍ରେଷ୍ଠ ପଡ଼ିବ ।

ମନଥିଲେ ଉପାୟ ବଳେ ଆସେ । ଧାଇଁଯାଇ କେଉଁଠୁ ଅ୦ ନଅବର୍ଷ ତଳେ ବନ୍ଧା ପଡ଼ିଥିବା ବେଳଟା ଉଦ୍ଧାର କରି ମାଆ ଦେଇ ଆସିଲେ । ନଡ଼ିଆଢତା ପାଉଁଶ ଦେଇ କଳା ଚଲା ଦାଗ ଦଫା କରିଦେଲେ । ଶୁଦ୍ଧ ରୂପାର ବେଲା ପରି ଚକ୍ ନକ୍ ଦିଶିଲା ଚମ୍ପା ଦେଇଥିବା ବେଲଟି, ନାଲିମହନ ଗୁଣ୍ଡାଇତର ନାଆଁ ଥିବା ବେଲଟି ।

ଝାମ୍ପି ପଡ଼ିଲେ ମାଆ-ଝିଅ ମଢ଼ ଉପରେ ବାଘୁଣୀ ଅଉ ତା' ଛୁଆ ପରି । ଘରଣୀଙ୍କ (ଠାକୁରାନ୍, ଗିରହାନ୍) ପାଟି ଓ୦ ଅଧର ମାଂସ ଚର୍ବିରେ ନୂଆ ରୂପ ନେଇଥାଏ । ଦରହସ ମୁହଁରେ କହିଲି, "ଏବେ ! ତୁମେ ନାଲିମହନ ଗୁଣ୍ଡାଇତର ବେଲରେ ଖାଉଛ । ଜାତିଗଲା, ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ – ତୁମକୁ, ତୁମ ସାଙ୍ଗରେ ମତେ ବି । ଝିଅ ବାହାଘରେ ସୁବର୍ଣ୍ଣ ଦାନ କରିବାକୁ ପଡ଼ିବ, ତୁମର ଏଇ କଂସା ବେଲଟା ପାଇଁ ।" ଶାସ୍ତ୍ରଙ୍କ ପରି ସେ ଉତ୍ତର ଦେଲେ, "ପାଉଁଶରେ ମାଜିଦେଲେ ସବୁ ବାସନ ଶୁଦ୍ଧ ।" ମଜଗୁଲ ଅବସ୍ଥାରେ ଥାଇ ସ୍ତ୍ରୀ ରଙ୍ଗରସରେ ମୁଖ୍ୟ ମୁଢ଼ି ଧରି କହିଲେ, "ନଅ, କଲେ ନାଅ, ଲୋଭ ହେଉଛୁ ?" ଝିଅ କହିଲା, "ବାପାକୁ ଅଇଁଠା ଖୁଆଉଛୁ ?"

ମାଆ ତତକ୍ଷଣେ କହିଲେ, "ରାମାୟଣ ପଢ଼ିଲେ ଜାଣିବୁ, କମିତ ରାମଚନ୍ଦ୍ର ମହାପ୍ରଭୁ ଶବରୀର ଅଇଁଠା ଫଳ ଖାଇଥିଲେ ।"

ଅତ ଶରଧାର ମୁହୂର୍ତ୍ତରେ ମୁଁ ଆଁ କଲି । କଲେ ମାଉଁସକଷା ଓ ମୁଢ଼ି ଶବରୀ/ଅର୍ଦ୍ଧ-ମାନବୀ ଇଭ୍ ହାତରୁ ଖାଇଲି । ସେଇ ରବିବାର ଦିନ ବେଳ

ଉଦ୍‌ଘାଟନ ଉତ୍ସବ ସମାହିତ । ପରଦିନଠାରୁ ପ୍ରତିଦିନ ସ୍ତ୍ରୀ ହେଇ ତେଲରେ ମୂର୍ତ୍ତି ମଜ୍ଜନର ଅନୁଷ୍ଠାନ କଲେ ।

ଘରଣୀ ସରଳ ବା ଚତୁରଙ୍କ ସୁଧ ନିଅନ୍ତ ମତେ ଜଣା ନାହିଁ । ତେବେ ଶୋଇ ଶୋଇ ସେନେ ଖିଆଲରେ ହିସାବକଲି. ଦେଖିଲି ଯେ ଦୈନିକ ପାହୁଲାଏ ଭଡ଼ା ହେଲେ ଘରଣୀ ଯେତେଦିନ ସେଇ ତେଲ ବ୍ୟବହାର କଲେଣି ସେଥିରେ ତେଲର ବନ୍ଧକୀ ମୂଲ୍ୟ ଉଠିଗଲାଣି । ସ୍ୱା'ପରେ ଘରଣୀଙ୍କଠାରୁ ଟମା ଦୈନିକ ପାହୁଲାଏ ଛଦାମେ ଯାହାହେଉ ପାଇବାର କଥା ।

ପୁଣି ଦିନକାଳ ଗଡ଼ିଲା । ସରକାର ପରେ ସରକାର ଆସିଲେ । କେତେ କେତେ ନୂଆ ନୂଆ ନିୟମକାନୁନ ହେଲା । ଆଦିମକାଳରୁ ଚଳିଆସୁଥିବା ଯୌତୁକ ପ୍ରଥା ଉଠିଗଲା । କେହି କାହା ବାହାଘର ବେଳେ ମାଗିପାରିବ ନାହିଁ । କେହି କାହା ଦେଇପାରିବେ ନାହିଁ ଝିଅ ଜୋଇଁଙ୍କି । ବାହାଘର ଆଗରୁ ବା ପରେ ଦେଣନେଣରେ ଆପତ୍ତି ନାହିଁ ବା ଚଢ଼ିବା ପାଇଁ ଝିଅକୁ ଗାଡ଼ି, ଶୋଇବା ପାଇଁ ଘର, ଚଳିବାପାଇଁ ଚେକ୍ ଦେବାରେ କିଛି ଆପତ୍ତି ନାହିଁ ।

ନୂଆ ନୂଆ ନିୟମର ମାଡ଼ଟା ପଡ଼ିଲା ଘରଣୀଙ୍କ ଉପରେ । ପ୍ରସଙ୍ଗକ୍ରମେ ଭଲ ବେଳକାଳ ଦେଖି ସ୍ତ୍ରୀଙ୍କି କହିଲି, ନୂଆ ସରକାର ଆଇନ କରିଦେଇଛନ୍ତି, କେହି ବିନା ଲାଇସେନ୍‌ସରେ ବନ୍ଧାଜିନିଷ ରଖିପାରିବେ ନାହିଁ । ତନାଘନା ତଦନ୍ତ ଚାଲିଲାଣି; ଯାହାଘରେ ବନ୍ଧାଜିନିଷ ବାହାରିବ ତାକୁ ଜେଲ୍ ଭୋଗିବାକୁ ପଡ଼ିବ । ମୋର ଚାକିରି ଯିବ । ଗାଁ ସାଇଲୋକେ ତ ଆମକୁ ସେଥିଁ ଭଲପାଆନ୍ତି ! ଧରାଇଦେବେ ସିନେ ।

ସେଇଦିନ ସନ୍ଧ୍ୟାରେ ଘରେଥିବା ବନ୍ଧକୀ ତେଲ ଶିଶିରେ ବୋହେଇ ନେଇ କେଉଁ କଂସାରି ଦୋକାନକୁ ଚାଲିଗଲି; ସତ୍ତାସାମାନ୍ୟ ଗଣ୍ଡାଗଣ୍ଡି ବ ବେପାର-କାରବାର ବଣିଆଁ ହାଟକୁ ଚାଲିଗଲି ।

ହେଲେ ଇଭ୍‌ର ପ୍ରରୋଚନାରେ ଆଦାମ୍ ଯେଉଁ ଫଳ ଖାଇଥିଲା, ତା'ର କୁଫଳରେ ଦୁନିଆଁକୁ ଜରାମୃତ୍ୟୁ ଆସିଲା ପରି ମୋର ଆସିଲା ଜରା, ମୋ ସ୍ତ୍ରୀଙ୍କର ହେଲା ମୃତ୍ୟୁ ।

ବିଶୃଙ୍ଖଳାରୁ ଶୃଙ୍ଖଳା ଆଣିବା ପାଇଁ ଚେଷ୍ଟା କରୁଁ କରୁଁ ଦିନେ ପାଇଲି ନାଲମହନ ଗୁଚ୍ଛାଇତର ନାଆଁ ଖୋଦେଇଥିବା ବେଲଟି । ଘରେ କନ୍ଥ ବରୁଡ଼ିପୋକ ପାଇକର ମୂର୍ତ୍ତି ନାହିଁ କି ମୂର୍ତ୍ତିଯଜ୍ଞର ଅନୁଷ୍ଠାନକାରିଣୀ ନାହାନ୍ତି । ସିଧା ବେଲଟି ନେଇ କୁରଙ୍ଗାପାହାଡ଼କୁ ଗଲି । ଚମ୍ପା ବା ତା'ର ସ୍ୱାମୀ ବା ନାଲମହନ ଗୁଚ୍ଛାଇତର ଖୋଜଖବର ନେଲି । ସେମାନଙ୍କ ନାଆଁ ସମସ୍ତେ ଜାଣନ୍ତି, ଦେଖି ନାହାନ୍ତି । ଡିହ ଉପରେ ଭଙ୍ଗା କାନ୍ଥଟିଏ ମାତ୍ର ଦେଖିଲି । ଫେରିଲି ନାଲମହନ ଗୁଚ୍ଛାଇତର ବେଲ ଝୋଲିରେ ଧରି ।

ସମସ୍ୟା ହେଲା ବେଲଟା କେଉଁଠି ଥୋଇବ । ଯେଉଁଠି ରଖିଲେ ମୋ ଆଖିକୁ ଦିଶିଲା ଏବଂ ଦିଶିଲା ଚମ୍ପା, ତା'ର ମରଦ, ତା'ର ବାପ ନାଲମହନ ଗୁଚ୍ଛାଇତ, ମୋ ଘରଣୀ ଓ ଝିଅ—ସମସ୍ତଙ୍କ ମୁହଁ । ସମସ୍ତେ ସିମିଳି ଏକାଠି ମୁହଁଗୁଡ଼ି ସେଇ ବେଲଟାରୁ ମୁଣ୍ଡି ପଖାଳ ତୋରାଣିପାଣି ଆଶାରେ ଚାହିଁଛନ୍ତି ତୃଷାର୍ତ୍ତ ଆଗ୍ରହରେ । ବିଶେଷତଃ ସ୍ତ୍ରୀଙ୍କ କଷା ମାଂସ ଓ ମୁଢ଼ି ଖାଇଥିବା ବେଳର ତେଲିଆ ଝାଳୁଆ ମୁହଁଟା । ମତେ ଡର ମାଡ଼ିଲା; ଯେତେବେଳେ ଘରେ ଏକୁଟିଆ ରହିଲି ଏବଂ ଆକସ୍ମାତ୍ ବେଲଟା ଉପରେ ଆଖି ପଡ଼ିଗଲା । ନାଲମହନ ଗୁଚ୍ଛାଇତର ଝିଅ ଚମ୍ପା ବେଲ ମୋ ସ୍ତ୍ରୀଙ୍କଠି ବନ୍ଧାଦେଇ ଦୁଇଟଙ୍କା ନେଲା । ମତେ ଚକ୍ରବୃଦ୍ଧିରେ ସୁଧ ଦେବାକୁ ପଡ଼ୁଛି ।

ଦିନେ ରାତିରେ ଏକୁଟିଆ ଶୋଇଥାଏଁ, ଥାକ ଉପର ବେଲକୁ ଚାହିଁ । ପୁଣି ସେଇ ମୁହଁରେ ଆସିଗଲେ । ବେଲଟାକୁ ଶିଳରେ ଚଗୁଡ଼ି ଭାଙ୍ଗି ଟୁକୁରା ଟୁକୁରା କରିବା ଭାବିଲି । ପର ମୁହୂର୍ତ୍ତରେ ଅନ୍ୟ ନିଷ୍ପତ୍ତି ନେଲି ।

ସ୍ତ୍ରୀଙ୍କ ଗଙ୍ଗାସ୍ଥି କରିବା କଥା ସମ୍ଭବ ହୋଇ ନଥିଲା ନାନା କାରଣରୁ । ଭାବପ୍ରବଣତାର ବଶବର୍ତ୍ତୀ ହୋଇ କେତେଖଣ୍ଡ ଅସ୍ଥି ଓ କିଛି ଭସ୍ମ ଶ୍ମଶାନରୁ ଆଣି

ବାକ୍ସ ଭିତରେ ରଖିଥିଲି, କେବେ ସେନେ ସୁବିଧାସୁଯୋଗ ପାଇଲେ ତ୍ରିବେଣୀରେ ବିସର୍ଜନ ଦେବି ବୋଲି । କ'ଣ ମନକୁ ଆସିଲା ହଠାତ୍ ବାକ୍ସ ଗୃବ ଖୋଲି ଭସ୍ମ ପୁଟୁଳାଟା ନାଲିମହଳ ଗୁଚ୍ଛଭିତର ବେଲ୍ଟରେ ଥୋଇ କଳାକନା ଖଣ୍ଡିକରେ ଢଙ୍କାଇ ଧଡ଼୍‌କିନା ବାକ୍ସ ବନ୍ଦ କରିଦେଲି । ମୁହଁଗୁଡ଼ାକ ଅଉ ଦେଖିଲି ନାହିଁ । କି ଚମ୍ପାର ଠାକୁରାନ୍ ଠାକୁରାନ୍ ଡାକ ଶୁଭିଲା ନାହିଁ ।



# ଝୁଲି ଗାଁର ଶ୍ରୀମତୀ ସରୋଜିନୀ ମାହାନ୍ତି

## କେଆର୍ ଅଫ୍ ସୁଦାମ ମାହାନ୍ତି

ଲେଖାର ଲମ୍ବାଚୌଡ଼ା ଗୁରୁଗମ୍ଭୀର ଶୀର୍ଷକ ଦେଖି ସବୁ ପାଠକଙ୍କର ନାୟିକାକୁ ଦେଖିବାର ଆଗ୍ରହ ଓ ଔତ୍ସୁକ୍ୟ ଅସମ୍ଭାଳ ହେଉଛି, ତେବେ ମୁଁ ପ୍ରଥମରୁ କହିଦେଉଛି ସେ ତରୁଣୀ ନୁହେଁ, କିଶୋରୀ ନୁହେଁ, ସାମାନ୍ୟ ଗାଉଁଲି ଝିଅ ବକଟେ। ଯାହା ଦେହରୁ ଲଇନ୍, କର୍ଭ, ବାଲ୍ଜ କିଛି ମୁଁ ଖୋଜି ପାଇନି ଫେସନ ରସିକଙ୍କୁ ଅର୍ପଣ କରିବା ପାଇଁ। ପିଲାଦିନେ ଜ୍ୟାମିତିକ ସଂଜ୍ଞା ପ୍ରକରଣ ବୋଲି ଦୁଇଅଣିଆ ବହିରୁ ମନେରଖିଛି "ବିନ୍ଦୁର ଅବସ୍ଥିତି ଅଛି; କିନ୍ତୁ ଦୈର୍ଘ୍ୟ, ପ୍ରସ୍ଥ ବା ବେଧ ନାହିଁ।" ଏ ଝିଅଟିର ସେମିତି ସବୁର ଅବସ୍ଥିତି ଅଛି; ମାତ୍ର ସବୁ ଟିକି କାଳ୍ପନିକ, ଆନୁମାନିକ ବା ଜ୍ୟାମିତିକ।

ସେ ମୋର ସମ୍ପୂର୍ଣ୍ଣ ଅଜ୍ଞାତ, ଅଜଣା ଅଶୁଣା। କେଉଁଠି କେଉଁ ପରିସ୍ଥିତିରେ ତା ସହିତ ମୋର ଅକସ୍ମାତ୍ ଦେଖାହେଲା ତାହା କହିବା ଦରକାର ପଡ଼ୁଛି।

ବିଶ୍ୱବିଖ୍ୟାତ ପୁରୀଧାମରୁ ଅଣନଶୋଳଯାକେ ଜଗନ୍ନାଥଙ୍କ ଛଣ୍ଡାଡ଼ୋର ବା ଝଣ୍ଡାମାଳ ପରି ଯେଉଁ ସାର୍ଥବାହୀ ଟ୍ରେନ୍‌ଟିଏ ଶତାବ୍ଦୀ ଧରି ଯାତାୟତ କରି ଯୁଗପତ୍ ଚୈତନ୍ୟ ଓ ଜଗନ୍ନାଥଙ୍କ ନାମ ସଂକୀର୍ତ୍ତନ କରିଚାଲିଛି ବିଚିତ୍ର ତା'ର ଗତିପ୍ରକୃତି, ଅଦ୍ଭୁତ ତା'ର ମହିମା। କେଉଁଦିନ ଚିତ୍ତରଞ୍ଜନ, କେଉଁଦିନ ଅବା କେନେଡ଼ିଆନ ଇଞ୍ଜିନ୍‌ଚାଳିତ ହୋଇ ଯାତ୍ରା କରେ। ରାତି ଦଶଟାରେ ପୁରୀଧାମ ଛାଡ଼ୁଥିବାରୁ

ଯାଯାବର, କୃଷ୍ଣରୋଗୀ, ବିକଳାଙ୍ଗ ନରନାରୀ ଏପରିକି ଚୋର ଖଣ୍ଡ ଡକାଏତ, ଯେଉଁମାନେ ଦିନଯାକରେ ଆରାମରେ ଡବାଗୁଡ଼ିକ ଭିତରେ ଅଚେତ ଅବସ୍ଥାରେ ଶୋଇଥାନ୍ତି, ସେମାନେ ଟାଣି ହୋଇ ଆସନ୍ତି, ସହରରୁ ସହରକୁ, ଗ୍ରାମରୁ ଗ୍ରାମାନ୍ତରକୁ, ଟିକେଟ୍ ଲାଗେନା ଯାତ୍ରା ପାଇଁ । ଚେକର୍‌ମାନେ ଗରିବଙ୍କ ବନ୍ଧୁ । ଟଙ୍କାଏ ମଧାଏ ନେଇ ସମସ୍ତଙ୍କୁ ଗ୍ରହଣ କରନ୍ତି । ଜଣେ ଆଦିବାସୀ ଝିଅକୁ ନିଶୁଆ ଟିକେଟ ଚେକର୍ କହିବାର ଶୁଣିଛି, "ତୁ ଦାନ୍ତକାଠି ବିକୁଛୁ ଦଶଟା ପଇସା ତୋ' ପାଖରେ ନାହିଁ ମତେ ଦେବାକୁ ? ଲୁଗା କାନି ଅଣ୍ଡାଳିଲେ କେତେ କ'ଣ ମିଳିଯିବ ।" ଟ୍ରେନଟିର ଯିବାଆସିବା ରହଣିସ୍ଥାନର ଠିକଣା ନ ଥିବାରୁ ଏବଂ ଯାତ୍ରୀମାନଙ୍କର ସମୟର ମୂଲ୍ୟ ଜ୍ଞାନ ନ ଥିବାରୁ ସମସ୍ତଙ୍କ ପକ୍ଷରେ ହିତକାରୀ । ଦେଶର ଗୋଟର ଯିମିତି ତାଙ୍କ ସରକାର ସିମିତି । ଦିନକର ଅଇଲା'ରେ ଦଶଟା କମ୍ପାର୍ଟମେଣ୍ଟ ଖାଲି ପୂରିଯିବ; ପ୍ରତିଦିନ ଗ୍ରାମପୋକମାନେ ଯେତେ ରକ୍ତ ସେବନ୍ତି ଦେଖିଲେ ଗୋଟାଏ ବ୍ଲଡ୍-ବେଙ୍କ୍ ଭର୍ତ୍ତି ହୋଇଯିବ । ଏବେ କନେକଗୁଡ଼ାକ ଷ୍ଟେସନକୁ ଷ୍ଟେସନ ହେଲାରୁ ଗୁଡ଼ାଏ ପୁଅଝିଅ ଠେଲପେଲ ପଶନ୍ତି ଏବଂ ଧୂଳିମଳି ଭିଡ଼ରେ ଛଡ଼ାହୋଇ ଏକାଠି ଜାକଜକି ହୋଇଯାଆନ୍ତି । ମାଲଡବା ଓ ଯାତ୍ରୀଡବାର ଏକତ୍ର ସମାବେଶ ଫଳରେ ଇଞ୍ଜିନ ଟାଣି ପାରେନା, ଧକେଇ ଧକେଇ ତାଳଦେଇ ଗଡ଼ି ଚଳେ; କେତେବେଳେ ପିଷ୍ଟନ୍ ଭାଙ୍ଗି ଦିଖଣ୍ଡ ହୋଇ ଭୂଇଁରେ ପଡ଼ିଯାଏ । ଷ୍ଟେସନମାଷ୍ଟରକୁ ଯଦି ପଚାରିବେ କେତେ ଡେରି ? ଉତ୍ତର ଆସିବ 'ଅଧ ଘଣ୍ଟେ'; ଯେତେ ଥର ପଚାରିବେ ସେତେ ଅଧଘଣ୍ଟା ବଢ଼ୁଥିବ ଏବଂ ଶେଷରେ ଗୋଟିଏ ଶବ୍ଦରେ ଉତ୍ତର ପାଇବେ କେନସେଲଡ଼ । ବେଳେବେଳେ ଭଲକରି ନଜର କଲେ ଜାଣିବେ ଗାଡ଼ି ପଛରେ ଛିଣ୍ଡା ଅଖାରେ ବନ୍ଧାହୋଇ ଦି'ଟା ଗୋଡ଼ ଦିଶୁଥିବା ଗୋଟାଏ ମୁର୍ଦ୍ଦାର । ମେଲ୍ ଏକ୍ସପ୍ରେସ୍ ଗାଡ଼ିରେ କଟିଯାଇଥିବା ଲାଶଟା ଆଣିବା ଦାୟିତ୍ୱ ଏହି ମୁକ୍ତିଧାମରୁ ଆସୁଥିବା ଗାଡ଼ି ଉପରେ । ଜନ୍ଦାବାଦ୍ ।

ସେନେ ସେନେ ଅକସ୍ମାତ୍ ଏ ଗାଡ଼ି ଜଗନ୍ନାଥଙ୍କ ଦୟାରୁ ଅଧଘଣ୍ଟାଏ ଆଗରୁ ପହଞ୍ଚିଯାଇପାରେ ଯିମିତି ସେ ଦିନ ହେଲା । ଭିତରିଆ ପେଟରେ ଧାଇଁ ଧାଇଁ ଚାଲିବାକୁ ଆରମ୍ଭ କରିଥିବା ଡବାରେ ଡେଇଁ ଚଢ଼ିଗଲି । ଅବ୍ୟବହିତ ପୂର୍ବରୁ ଗୋଟାଏ ଦ୍ରୁତଗାମୀ ଗାଡ଼ି ଯାଇଥିବାରୁ ଏ ଗାଡ଼ି ଫାଙ୍କା । ସିଟ୍‌ରେ ବସିବା ପୂର୍ବରୁ ଧୂଳିସବୁ ଝାଡ଼ିବ ବୋଲି ରୁମାଲ ବାହାର କରୁଛି ଠିକ୍ କରି ଆଠଣିଟାଏ ତଳେ

ପଡ଼ିଗଲ, ତାକୁ ଉଠାଇବାକୁ ଯାଉଛି ମୋ କହୁଣୀ ବାହା ବହରେ ବାଜ ପୁଣି ତଳେ ପଡ଼ିଲା । ତାକୁ ଉଠାଇ ପକେଟରୁ ଆଉ ଯାହା ରେଜା ଥିଲ ବାହାର କରି ପାପୁଲିରେ ରଖି ଗଣୁଛି, ଦେଖିଲି ଛଅଟି ଫ୍ରକ୍ ପିନ୍ଧିଥିବା ଝିଅଟିଏ ମୁଦ୍ରାଗୁଡ଼ିକ ଉପରେ ନଜର ରଖି କହିଗଲିଛି ପଚିଶ, ପଚାଶ, କୋଡ଼ିଏ, ଦଶ, ପାଞ୍ଚ, ଆଉଥରେ ଦଶ, ଆଉଥରେ କୋଡ଼ିଏ, ଏମିତି ।

ପ୍ରଥମେ ଭାବିଲି ଏ ଝିଅଟା ବୋଧହୁଏ ଯେଉଁ ଏକ ଅନ୍ଧୁଣୀକି ବାଟ କଢ଼ାଇ ଯାତ୍ରୀ ପରେ ଯାତ୍ରୀ ପାଖକୁ ନେଉଥିବ । କାରଣ କେତେଥର ଏଠାରୁ ସେମିତି ଝିଅଟିଏ ଅତୀବ ସ୍ୱାସ୍ଥ୍ୟବତୀ ଯୁବତୀ ଭିଖାରୁଣୀର ଚକ୍ଷୁମତୀ ସହକାରିଣୀ ରୂପେ ଖଟୁଥିଲା; ଯେଉଁ ଅନ୍ଧୁଣୀଟି ଅତି କମ୍‌ରେ ଆଠଦଶ ଏକର ଜମି କିଣି ପିଲାଝିଲାର ମାଆ ହୋଇ ବହୁତ ବାନ୍ଧିଗଲାଣି । ମୋର ଏ ଧାରଣା ଅଚିରେ ଦୂର ହେଲା । କାରଣ ଝିଅଟି ଏକେଲା, ସାଙ୍ଗରେ କେହି ନାହିଁ । ଗ୍ରୀଷ୍ମପୋଡର ଦୌରାତ୍ମ୍ୟରୁ ରକ୍ଷା ପାଇବା ପାଇଁ ଚମଡ଼ା ଫାଇଲ୍‌କେସ୍ ଥୋଇ ତାର ଉପରେ ବସିଗଲି, ସାଇଡ୍ ସିଟ୍‌ରେ । କେସ୍‌ରୁ ଯେଉଁ ଯୋଡ଼ାଏ ଦୈନିକ ଖବରକାଗଜ ବାହାର କରିଥିଲି ତାକୁଇ ପଢ଼ି ପଢ଼ି ବିରକ୍ତ ଓ ଅନେକାଳେ ଚିନ୍ତା ଦୂର କରିବା ଚେଷ୍ଟାକଲି । ଦେଖିଲି ଝିଅଟା ମୋ ଆଡ଼କୁ ଘୁଞ୍ଚ ଘୁଞ୍ଚ ଆସି ମୋ' ବହରେ ପ୍ରାୟ ଲାଗି ଛିଡ଼ାହେଲା ଏବଂ ମୁରୁ ମୁରୁ ହୋଇ ପଢ଼ିବାକୁ ଲାଗିଲା ଗୋଟି ଗୋଟି ଅକ୍ଷର—"ଜାନକୀ ପଟ୍ଟନାୟକ ଦିଲ୍ଲୀରୁ ଫେରିଲେ ।" ପଢ଼ିଲାବେଳେ ପାଖରେ କେହି ଛିଡ଼ାହେଲେ ମତେ ଅଡ଼ୁଆ ଲାଗେ । ମୁରୁ ମୁରୁ ହୋଇ ପଢ଼ିଲେ ଥାପ୍‌ପଡ଼ ବଜାଇବାକୁ ମନ ହୁଏ ।

ଗୁରୁ ଗମ୍ଭୀର ସ୍ୱରରେ ତା' ଆଡ଼କୁ ନ ଚାହିଁ କହିଲି, "ଆଗ ସିଟ୍‌ଟା ଖାଲି ଅଛି, ବସୁନୁ ।"

ସେ ବସିଲା ଏବଂ ଗୋଡ଼ ଦୁଇଟା ଝୁଲାଇବାକୁ ଲାଗିଲା । କେଡ଼େ ଚଳଚଞ୍ଚଳ, କେଡ଼େ ବେପରୱା ।

ମୁଁ ତା' ଆଡ଼କୁ ସିଧାସଳଖ ଚାହିଁଲି । ଶ୍ରେଣିଆ ତନୁପାତଳୀ ଝିଅଟା । ଫ୍ରକ୍ ପିନ୍ଧିଛି, ଛଅଟି ଫ୍ରକ୍ । ଆଠ ନଅବର୍ଷ ହୋଇଥିବ । ନୂଆ ଫ୍ରକ୍‌ଟା ଏକାବେଳକେ

ଚାରି ଛଅ ଦିନ ପିନ୍ଧିବାରୁ ମଳିଆ, କୁଞ୍ଚୁକୁଞ୍ଚିକା ହୋଇଯାଇଛି । ଆଖି ଦୁଇଟା ଟିକେ ନୁହେଁ, ଈଷତ୍ ନୀଳ, ଇରାନୀ କିଶୋରୀର ଆଖି ପରି, ନାକରେ ସୋରିଷଠୁଁ ସାମାନ୍ୟ ବଡ଼ ଗୁଣା, ନକଲି ପିତଳର । କାନରେ ଚାରିଅଣିଆ ଝୁରିଲଗା ଫୁଲ । ବବ୍‌କଟିଙ୍ଗ ଚୁଲ । ଥରକୁ ଥର କପାଳରେ ପଡ଼ୁଛି । ଅଙ୍ଗୁଳି ନ ଲଗାଇ ମୁଣ୍ଡ ହଲାଇ ଥରକୁ ଥର ଘୁଞ୍ଚି ନେଉଛି । ତାକୁରୁ ତଳପା ଦୁଇ ତିନି ଥର ଦେଖି ଏବଂ ତା'ର ନିଷ୍ପାପ ସରଳ ଛୁଆ ହରିଣୀର ଆଖିଯୋଡ଼ିକୁ ନଜର କରି ଧାରଣା କଲି, ଏ ଟିକିଝିଅ କଦାପି ଚୋରଣୀ ବା ଭିଖାରୁଣୀ ଛୁଆ ହୋଇ ନ ପାରେ । ମୋ ଧନ ସମ୍ପଦ ଯା ପାଖରେ ନିରାପଦ । ଭୟ ନାହିଁ । ଖବର କାଗଜ ପଢ଼ିବାକୁ ଆରମ୍ଭକଲି ପୁଣି ।

"ଆପଣ କେଉଁଠାକୁ ଯିବେ ?" ସତୃଷ୍ଣ ଆଗ୍ରହାନ୍ୱିତ ଚାହାଣୀରେ ତା'ର ପ୍ରଥମ ପ୍ରଶ୍ନ ।

"ଅମରଦା ରୋଡ୍ ।" ଜିହ୍ୱା କଣ୍ଟା ଲଗାଇ ପୂର୍ବ ବାକ୍ୟରେ ଉତ୍ତର ଦେଲି ନାହିଁ । ବଳେ ଷ୍ଟାଣ୍ଡାର୍ଡ ।

"ମୋଠୁ ଗୋଟାଏ ଷ୍ଟେସନ ଆଗ । ମୁଁ ବସ୍ତା ଯିବି ।" ତୋତେ କିଏ ପଚାରୁଛି ଯେ ତୁ ଆପେ ଆପେ ଚହ୍ଲେଇ ହେଉଛୁ ? ପ୍ରଶ୍ନଟି ମୋ ମନରେ ଉଦୟ ହେଲା; କିନ୍ତୁ ମୁଁ ନିର୍ବାକ୍, ଗମ୍ଭୀର ।

"ତୁ କେଉଁଠୁ ଆସିଲୁ ?" ପ୍ରଶ୍ନର ସେ ଅପେକ୍ଷା କରିଥିଲା । ମାତ୍ର ସେ ପ୍ରଶ୍ନ ନ ଆସିବାରୁ ସେ ଏକତରଫା ଉତ୍ତର ଦେଲା, "ମୁଁ ଖନ୍ତାପଡ଼ା ଷ୍ଟେସନରୁ ଆସିଲି ।"

ଖୁସିଲାଗିଲା ଯେ ଭଲ ସାଙ୍ଗଟିଏ ପାଇଲି । ହେଲେ ଅଗେଇବାକୁ ଇଚ୍ଛା କଲି ନାହିଁ । କାଗଜ ପୁଣି ଓଲଟାଇଲି ।

"କେତେ ବାଜିଲା ଆପଣଙ୍କ ଘଣ୍ଟାରେ ? ଟ୍ରେନ୍ କେତେବେଳେ ଛାଡ଼ିବ ?" ନୀରବତା ଭାଙ୍ଗି ସେ ପଚାରିଲା ।

"ଦଶଟା ବତିଶ, ଦଶଟା ବାଇଶରେ ଛାଡ଼ିବା କଥା ।"

"ବହୁତ ସମୟ ଛୁଡ଼ା ହେଲଣି ।"

"ବ୍ୟସ୍ତ ହେଉଛୁ କାହିଁକି ? ଘରେ ଛୁଆ ଛାଡ଼ିଆସିଛୁ ନା କ'ଣ ?" ଶେଷ କଥାଟି ପାଟିରୁ ବାହାରିପଡ଼ିଲାରୁ ଅଳ୍ପ ଲାଜୁଆ ହସ ହସିଲି, ନିଜର ସଂଯମ ଅଭାବରୁ ।

ସେ ସିଧାସିଧି କହିଲା, ମୋ କଥା ନ ଶୁଣିଲା ପରି ଭାବ ଦେଖାଇ, "ଭାରି ଭୋକ ଲାଗିଲାଣି ।" ମୁଁ ଶୁଣିବା ନ ଶୁଣିବା ଗଳାରେ ।

ମୁହୂର୍ତ୍ତେ ଆଗରୁ ତା' ବିଷୟରେ ଯେଉଁ ଭଲ ଧାରଣାର ଉଦୟ ହୋଇଥିଲା ତାହା ଶିଶିରବିନ୍ଦୁ ପରି ଖରାରେ କ୍ଷଣକେ ଉଭେଇଗଲା । ଭାବିଲି, 'ଏ ଟୋକାଟାର ମୋର ପଇସା ଉପରେ ଆଖି ରହିଛି, ଯେତେ ସରଳ ଜଣାଯାଉଥିଲା ତା' ନୁହେଁ । ମାଗିଯାଚି ଖାଇବା କୌଶଳ ତାକୁ ପୂରାମାତ୍ରାରେ ଜଣା ଅଛି । ଅଭ୍ୟାସ ଛାଡ଼ିବ କେମନ୍ତେ ?

ଆଉ ଥରେ ତା' ଆଖି ମୁହଁକୁ ଚାହିଁଲି, ଭାବୁଥାଏଁ ଟିକି ଟୋକାଟା ନିଶ୍ଚୟ ଗରିବ । ବଡ଼ିଭୋର ନିଶ୍ଚୟ ଘରୁ ବାହାରିଥିବ, ଖାଇନଥିବ, ଭୋକ କରୁଥିବ ।

'କିଛି ଖାଇବୁ ? ଏଠି କ'ଣ ଅଛି ଯେ, କେହି ବିକାଳି ଏଆଡ଼କୁ ଆସୁନାହାନ୍ତି । ଅଚ୍ଛା, ତୁ ଯାଇ ପ୍ଲାଟଫର୍ମରେ କେଉଁଠି କ'ଣ ଥିବ ଆଣିପାରିବୁ ?' ଚେଲେଞ୍ଜ୍ ଗ୍ରହଣସୂଚକ 'ହଁ' ଦେଢ଼ା ଜୋରେ ବାହାରିଲା ତା' ଟିକି ମୁହଁରୁ । 'ନେ ଆଠଣିଟା, ଶୀଘ୍ର ଓହ୍ଲାଇ ଯା, ଶୀଘ୍ର ଫେରିବୁ, ଗାଡ଼ି ଛାଡ଼ିଦେବ ।' ମଇଳା ପୁରୁଣା କନା ଅଳଟା କାନ୍ଧରେ ଝୁଲାଇ ବାହାରିଯିବାକୁ ଉଦ୍ୟତ ହୁଅନ୍ତେ କହିଲି—'ଅଳଟା କାନ୍ଧରେ ପଦାଦେଲେ ଲଟକାଇଛୁ କାହିଁକି ? ମୁଁ ଚୋରି କରିବି ନାହିଁ, ଏଇଠି ଥୁଲ ରଖି ଦେଇ ଯା ।'

ନିର୍ଭୟ ହୋଇ ଦମ୍ଭ ହଦ୍ଦତ ତଳକୁ ଓହ୍ଲାଇ ଯିବାର ଦେଖିଲି, ଦଣ୍ଡେ ପରେ ସେ ଫେରିଲା । ଆଶ୍ୱସ୍ତ ହେଲି ।

ଗାଡ଼ି ଛାଡ଼ିବାର ନାମଗନ୍ଧ ନାହିଁ, ସ୍ୱସ୍ଥାନରେ ପୁଣି ରଜାଝିଅ ପରି ନିଦକରେ ବସି କୋଳରୁ ଫ୍ରକ୍ ଭିତରୁ ଦିନୋଟି ବଡ଼ ବଡ଼ ପାଣିଫଳ (ସିଙ୍ଗଡ଼ା) ବାହାର କରି

ଚେୟାରରେ ଥୋଇଲି । ଗୋଟାକର ଗ୍ରେପା ଛଡ଼ାଇବାକୁ ଆରମ୍ଭ କଲି ମୋ ଆଡ଼କୁ ଦରସ ମୁହଁରେ ହସ ଖେଳାଇ ପଚାରିଲି 'ନବ ?' ଛଡ଼ା ସିଙ୍ଘଡ଼ାକୁ ମୋ ଆଡ଼କୁ ଦେଖାଇଲି, ମୋତେ ପ୍ରଲୁବ୍ଧ କରିବା ପାଇଁ ।

ମୋ ପେଟ ପୂରିଗଲା । ତା' କଥା ଦେଢ଼ରେ, ଶିଷ୍ଟାଗ୍ରର ଜ୍ଞାନରେ । ଗ୍ରେଟ ହୋଇଅଛି ଏତେ ଶୀଘ୍ର କେମିତି ପାକଲ ହୋଇଯାଇଛୁ, ଚାଲିଆରୁ ଗଜା ! ତୁ ଖାଅ, ମୁଁ ଏବେ ଘରୁ ଗୁ' ଖାଇ ଆସିଛୁ । ସେ ଗୋଟିକ ଗୋଟି ଚକୋଟିଯାକ ଛଡ଼ାଇ ବଳରାମ ସୁଭଦ୍ରା ଜଗନ୍ନାଥ କହ୍ନ କହ୍ନ ଧାଡ଼ରେ ରଖିଲା ଏବଂ ଖାଇବାକୁ ଆରମ୍ଭ କଲା କଚ୍ କଚ୍ କରି, ଦେଖିଲି ତା' ଡାହାଣହାତ ବୁଗିଆଙ୍ଗୁଳିରେ କାଳି ଲାଗିଛୁ । ତା'ର ଦୃଷ୍ଟି ଆକର୍ଷଣ କରି ପଚାରିଲି, 'ଏଠି କାଳି କମିତି ଲାଗିଲା ?' ସେ କହିଲା, "କାଳିଦୁଆତ ପଡ଼ି ଭାଙ୍ଗି ଗଲା, ବହିଖାତା ହବୁ ନଷ୍ଟ ହୋଇଗଲା ।"

ଭାବିଲି, 'ଭୋଜ ମାରିବା ପରେ କାଳିଦୁଅତ ବହି ଖାତାପତ୍ରର ଅଭାବ ମୋ ଦେଇ ଦୂର କରିବାର ଏ ଆଜି ଏକ ଫିକର । କିନ୍ତୁ 'ସେ ଯାହା ନବ ନଉ' ଅବସ୍ଥାକୁ ମୋର ମନ ଆସିଗଲାଣି । କାଳିଦୁଅତ ବା ଅନ୍ୟ କିଛୁ ତାକୁ ଦାନପ୍ରଦାନ ହୋଇ ଦେବା ପୂର୍ବରୁ ତା' ବିଷୟରେ ଅଉ କିଛୁ ଜାଣିବା ଉଚିତ ହେବ ବୋଲି ଭାବିଲି ।

'ତୋ ଘରଟା ଠିକ୍ କେଉଁ ଜାଗାରେ ? ରେଳଷ୍ଟେସନ ପାଖ ଗାଁରେ ? ଯେଉଁଠି ଅନୁ ପାଣିଗ୍ରାହୀଙ୍କ ଘର ?'

'ନା, ନା, ଷ୍ଟେସନରୁ ଦୂର ହବ ।'

"ଗାଁଟାର ନାଆଁ ?"

"କୁଳଗା"

"ତୋ ନାଆଁ କ'ଣ ?"

"ଶ୍ରୀମତୀ ଦରେଜନି ମାହାନ୍ତ ।"

"ବାପା ନାଆଁ ?"

"ଶ୍ରୀଯୁକ୍ତ ସୁଦାମ ମାହାନ୍ତ ।" ମୋର ପୁସ୍ତ ଠିକଣା ଦେଲା ଶ୍ରୀମତୀ ସରୋଜିନୀ ମାହାନ୍ତ କେଆର ଅଫ୍ ସୁଦାମ ମାହାନ୍ତ, ଗାଁ କୁଲଗାଁ, ପୋଷ୍ଟ ଅଫିସ ଝଣ୍ଟାପଡ଼ା, ଡିଷ୍ଟ୍ରିକ୍ଟ ବାଲେଶ୍ୱର ।" ଏକା ନିଃଶ୍ୱାସକେ ସଦର୍ପେ କହିଗଲା ।

"ବାପା କ'ଣ କରନ୍ତି ।"

"ଘରେ ନ ଥାନ୍ତି । କୁଆଡ଼େ ଚାଲିଯାଇଛନ୍ତି । ମାଆ କୁହେ ସେ କୁଆଡ଼େ ପାଗଳ ।"

"ଘରେ କଏ କଏ ଅଛନ୍ତି ?"

ବଡେଇ ବଡେଇ କହିଲା "ମୁଁ, ମୋ ମାଆ, ମୋ ସାନଭଉଣୀ, ତା' ନାଁ ବିନୋଦିନୀ ମାହାନ୍ତ, ବଡ଼ଭାଇ, ଆଉ ବୁଢ଼ୀ ଗୋଟାଏ ।"

"ତୁ କେଉଁ କ୍ଳାସରେ ପଢ଼ୁ ?"

"ପଞ୍ଚମରେ" । ଖୁବ୍ ଗର୍ବ, ଢେର ପଢ଼ିଲାଣି ବୋଲି । କହିଗଲା "ଭାଇ ହାଇସ୍କୁଲରେ, ଅଷ୍ଟମରେ ପଢ଼େ ।"

"ଜମିଜାଇଗା ଅଛି ?"

"ଅଧେ ଅଛି, ଅଧେ ବାପା ବିକିଦେଲା । ବଡ଼ନାନୀର ବାହାଘର ଜମାଣ୍ଡ ହଜାରେ, ସାନନାନି ବେଳକୁ ଦି' ହଜାର । ଦମାଣ ଗଲା, ଆଉ ମାଣେ ଦମାଣ ଥିବ ।"

"ହାତରେ ଚାଷ କର ?"

"ନା, ବଖରା ।"

କୁଉ...ଉ...ଉ...ଉ—ଲମ୍ବା ହୁଇସିଲ୍ ପରେ ଛୋଟିଆ 'କୁଉ' ।

"ହେଇ ଗାଡ଼ି ଗୁଡ଼ୁଲା । ଅଜା, କେତେ ବାଜିଛି ? ପହଞ୍ଚିଲା ବେଳକୁ ଘଣ୍ଟିଏବେଳ ପାର ହୋଇଯାଇଥିବ । ବଡ଼ ଭୋଖ ଲାଗିଣି, ଡଜନଟା ପାଣିଫଳ, ଖାଲି ପାଣି, ଭୋଖ ମରିବ ? ସ୍ୱା' ପରେ ବାଲିଖାପଡ଼ା ଷ୍ଟେସନ, ସେଇଠି ଯାହାହେଉ

ଶୃଙ୍ଗାର କରିବ ।" କହି ଯୋଡ଼ାଏ ଦଶମାରେ ଗୋଡ଼ାଏ ପାଞ୍ଚରେ ହାତ ପାପୁଲିରେ ଖେଳାଇଲେ । ପାଣିଫଳ କରିବା ପରେ ସେମାନେ ବଳିଥିଲେ ବୋଧହୁଏ ।

ସବୁବେଳେ ଗୋଡ଼ ହୋଇଲେ ହାତ ଖଳବଳ କରୁଥାଏ । କଥା କହୁଥାଏ । ଆଖିରେ ଲଜ୍ଜା ନାହିଁ, ମୁହଁରେ ଗରଳ ଦାଗ ନାହିଁ । ମୁଣ୍ଡ ବାହାର କରି ଖଣ୍ଡାପଡ଼ା ଷ୍ଟେସନ କେତେଦୂର ଅଛି ଦେଖୁଥାଏ । ଗୋଡ଼ ଦୁଇଟା ସେମିତି ହଲୁଥାଏ, ଦେଖୁଥାଏ ପାଚିଲା ଧାନକ୍ଷେତ, ଆଉ ଦୂରର ନୀଳ ସ୍ୱର୍ଣ୍ଣଚୂଡ଼ ପାହାଡ଼ । ସେ ବି ପ୍ରକୃତିର ଖଣ୍ଡେ ଅଂଶ ସିମିତି ।

ଖବରକାଗଜ ପଢ଼ା ବନ୍ଦ କରିଦେଲି ଏବଂ ବ୍ରିଫକେସ୍‌ରେ ରଖିଦେଲି ଫୋଲ୍ଡ କରି, ଝିଅଟା ବେଶି ଆକର୍ଷଣୀୟ ହେଲା । ଯେତେ ଦୂରେଇ ଯିବାକୁ ଚେଷ୍ଟା କରୁଛି ସେତେ ତା' ଆଡ଼କୁ ଟାଣି ହୋଇଯାଉଛି-ପରି ଲାଗୁଥାଏ ।

ନୂଆ କରି କଥାର ଖିଅଧରି ପଚାରିଲି, "ବସ୍ତା କାହା ଘରକୁ ଯାଉଛୁ?"

"ନାନୀ ଘରକୁ ।" 'କାହିଁକି' ର ପ୍ରଶ୍ନରୁ ପ୍ରଗଲ୍‌ଭ ନାୟିକା ପରି କହିଗଲା "ପଢ଼ୁଆଁ ମନାଇବ, କାଲି ପରା ପ୍ରଥମାଷ୍ଟମୀ; ନାନୀଙ୍କ ନୁହେଁ ତା'ର କଟି ଝିଅକୁ । ଗଲାବର୍ଷ ଏଇ ପ୍ରଥମାଷ୍ଟମୀ ଦିନ ତା'ର ଜନ୍ମପର୍ବ ।"

ମୁଁ ଭାବିଲା । ଆରେ, ମୁଁ ବି ପଢ଼ୁଆଁ । ମୋର ମନେନଥିଲା କାଲି ଅଷ୍ଟମୀ ବୋଲି, ଏତିକି ଟିକେ ଝିଅ, ସ୍ୱାକୁ କିଏ ପଢ଼ୁଆଁ ମନାନ୍ତା । ନା ଇଏ ଯାଉଛି ଆଉ କାହାକୁ ପଢ଼ୁଆଁ ମନାଇବ । କଉତୁକ କରି କହିଲି, "ହଇରେ ଝିଅ ! ମୋର କେହି ନାହିଁ ମତେ ପଢ଼ୁଆଁ ମନାଇବାକୁ । ତୁ ମତେ ଏ ବର୍ଷ ପଢ଼ୁଆଁ ମନାଇବୁ ?"

"ତୁମ ମାଆ, ବାପା, ଭଉଣୀ, ଝିଅବହୁ କେହି ନାହାନ୍ତି ?" କରୁଣ 'ନା' ଶବ୍ଦଟିଏ ମୁହଁରୁ ବାହାରିଲା ।

"ତୁମେ ନୂଆ ଲୁଗା ହେଉ ବା ଜାମା ହେଉ ତୁମ ପାଇଁ କିଣି ରଖିଥିବ । ମୁଁ ଫେରିବା ବାଟରେ ତୁମ ହାତରେ ଧରାଇ ତୁମ ଘରକୁ ଯିବି । ଗଲା ଦୁଇବର୍ଷ ନାଗଜ ମନାଇଥିଲି ଏଥର ତା'ର କୁନ ଜୁଆକୁ ମନାଉଥାନ୍ତି ନ ହେଲେ ତୁମକୁ-ମୋର ବୁଢ଼ା ଅଜାକୁ ମନାଇବି । ଏଇ ଦେଖ କୁନଜୁଆ ପାଇଁ କ'ଣ ଆଣିଛୁ ।"

କାନ୍ଧରେ ଝୁଲୁଥିବା ଥଳି ମେଲକରି ତହିଁରୁ ଗ୍ରେଟ ଫ୍ରକ୍ ପେଣ୍ଟ୍, ରବର ରିଂ ଫିଟାଇ ଦେଖାଇଲା । 'ଏଇଟା ମାଆ କିଣି ଦେଇଛି' କହି ଗାଲପଟ କୋଣାରୁ ଦଶ ପଇସାର ମିଠେଇଟିଏ ଦେଖାଇଲା । ଥଳି ଭିତରେ ଆଉ କ'ଣ ଥିବ କୌତୂହଳୀ ହୋଇ ଉହୁଙ୍କି ଚାହିଁଲି । ପାଞ୍ଚ ଛଅଟା କଇଁଥ ବେଲ । ତା' ମାଆ ଜାଣେନି ଆମ ସେ ପଟର ଗୀତିଟା "କୋଳି କଇଁଥ କରମଙ୍ଗା, ଏ ଧନହେଁ ଅନୁକୂଳ ଭଙ୍ଗା ।" ଅଶୁଭ ହେବ ନିଶ୍ଚୟ ।

ଅଦ୍ୟ ମଗୁଣିର ପହିଲା ଉତ୍ତର ହିତ କାରୁଣ୍ୟର ସ୍ପର୍ଶ ବାରମ୍ବାର ଅନୁଭବ କରୁଥାଏ । କହିଲି "ଝିଅରେ, କାହିଁକି କେଜାଣି ତୋତେ ମୋର ଭାରି ଗରଧା ହେଉଛି, ତୁ ମୋର ନାତୁଣୀ ପରି ଦିଶୁଛୁ, ଠିକ୍ ଗୋପା ପରି, ତୋଠୁଁ ସେ ଟିକିଏ ଡେଙ୍ଗୀ ଗୋଟି, ତୋ'ରି ବୟସ ହବ ।"

"ମୁଁ ବି ତ ତମକୁ ଅଜା କହୁଛୁ । ଗୋପା କେଉଁ କ୍ଲାସରେ ପଢ଼ୁଛି ?"

"ଅଷ୍ଟମରେ ।"

"ତେବେ ସେ ମୋଠୁଁ ଢେର ବଡ଼, ନହେଲେ ଅଷ୍ଟମରେ ପଢ଼ନ୍ତା ନାହିଁ, ଅଜା, ଏଇ ହଲଦୀପଦା ଆସିଲା । 'ଚାଆ' 'ଚାଆ' ଡାକି ଡାକି ଲୋକଟା ଆସିବ । ଠିକ୍ ଚା'ବାଲାର ସୁର ଅନୁକରଣ କରି 'ଚାଆ' 'ଚାଆ' କହୁଥିଲା । ମୁହୂର୍ତ୍ତିକେ ଚା' ବାଲା କିରିସିନି ଗନ୍ଧ ଓ ଷ୍ଟୋଭର ଉଷ୍ଣତା ନେଇ ଆସିଗଲା ।"

"ଏ ଚା'ବାଲା, ପଚିଶ ପଇସାରେ କାପେ ଚା' ଏ ଝିଅକୁ ଦବୁ ।" ହରେଜନୀ ତରଫ ନେଇ ପଚାରିଲି । ଚା' ବାଲା କାହିଁକି ବା ରୋମାଣ୍ଟିକ୍ ହେବ ? ଅନ୍ୟଆଡ଼େ ଚାଲିଗଲା; "ଏତେ ସାନବେଳୁ ତ ଚସ୍ତାଖିଆ ହେଲାଣି, ପଛକୁ କ'ଣ ନ ହବ ?" କହି କହି ଚା' ବାଲା ଢାଳିଥିବା ଚା' କାପ୍‌କୁ କେଟିଲରେ ଢାଳିଦେଇ ଅନ୍ୟପଟ ଚାଲିଗଲା ।

ଟିଅଣ୍ଟା କହିଲା, 'ରୂପ୍ସା ଷ୍ଟେସନ୍‌ରେ ଜଳଖିଆ ମିଳିବ, ଚା' ବି ମିଳିବ । ଶସ୍ତାରେ । ନ ଦେଉ ।"

ମୋର ବୟସ୍ୟ ସତ୍ୟବ୍ରତ, ଇଂରାଜୀରେ ଏମ୍. ଏ., ଦୁଇ ଦୁଇଟା ମହାସମର ଦେଖିଲାଣି । କଲେଜରେ ପାଠ ପଢ଼ାଇ, ପ୍ରିନ୍‌ସିପାଲ ହୋଇ ଜୀବନ କଟିଲା; କିନ୍ତୁ ସରୋଜିନୀର ଜ୍ଞାନ ଓ ଅଭିଜ୍ଞତା ମୋଠୁ ବେଶୀ ପରି ମତେ ଲାଗୁଥାଏ ।

ଖିଅଲରେ ପଚାରିଲି "ସରୋଜିନୀ, ତୁ ମୋ' ଘରେ ରହିବୁ ? ଖାଇବୁ, ପିନ୍ଧିବୁ, ପଢ଼ିବୁ, ତୋର ସବୁ ଖର୍ଚ୍ଚ ମୋର । ତୁମେ ତ ଫେର ଦୁଇ ଭଉଣୀ ଅଛ ବାହା ହବାକୁ । ଡମାଣ୍ଡରେ ବାପା ଉମାଣ ଜମି ଗ୍ଳଲିଯିବ । ରହିବୁ ?"

"ରହନ୍ତି ଯେ, ମାଆ ମନା କରିବ । ଗରିବ ହେଲେ ବି ମାଆ ଆମକୁ କେଉଁଠି ଖାଇବାକୁ ପର ଘରକୁ ଛାଡ଼ିବ ନାହିଁ । ମତେ ନେବ ବୋଲି ଜଣେ ଧନୀ ମହାଜନ ମାଆକୁ ଢେର ଲୋଭ ଦେଖାଇଲା । ମାଆ ମନାକଲା । ମୋ ତଳ ଭଉଣୀକି ଦେଇ ଦେବ ।"

'କାହିଁକି ?'

"ସେ ଖୁବ ଚଗଲା, ଦୁଷ୍ଟ, ମାଙ୍କଡ଼ୀ, କଥା ମାନେ ନାହିଁ, ପଢ଼େ ବି ନାହିଁ । ମାଆ ତାକୁ ଖୁବ ଚଡ଼େ ।"

"ମୁଁ ତାକୁ ଆଣିବି; ତୁ' କପ୍ ପ୍ଳେଟ ନଆଅଣା, ବାସନକୁସନ ଧୂଆପୋଛା, ଘର ଝରକାଝରକ ପାରିବୁନ ?"

"ବେଶ୍ ପାରିବ ।"

ରୂପ୍ସା ଷ୍ଟେସନ । ଏଠାରୁ ଗାଡ଼ି ଯିମିତି ଆଉ ଯିବ ନାହିଁ ସେମିତି ଲାଗିଲା । ଗୁଡ଼ଗୁଡ଼ିଟା ମାଲଗାଡ଼ି ଅତିକ୍ରମ କରି ଯାଉଥାନ୍ତି, ଆମ ଗାଡ଼ି ଠିଆ ହୋଇଥାଏ । ଜନମଙ୍ଗଳ ରାଷ୍ଟ୍ରର ଅର୍ଥନୀତିରେ ମାଲ ମଣିଷ ଅପେକ୍ଷା ବେଶୀ ମୂଲ୍ୟବାନ, ଏଣୁ ମାଲ-ବାହୀ ଗାଡ଼ିର ଅଗ୍ରାଧିକାର ।

ଶ୍ରୀମତୀ ସରୋଜିନୀଙ୍କର ପଚିଶ ପଇସା ବଳିଛି । କ'ଣ ଖାଇବ ? କେଣ୍ଟିନ୍‌ରୁ ବାସି ପଚ୍ଚା ଖାଦ୍ୟ ଖାଇବ ନାହିଁ । ସରୋଜିନୀ ଗୁଡ଼ଟା ସେଥିରୁ କିଣିଲା, ଏତିକିବେଳେ କାଟବାକ୍‌ସରେ ପୂରା ଭର୍ତ୍ତିକରି ବକାଲୀଟିଏ ଦେଶୀକାଠିଆ ବସ୍ତୁଟି ଆଣିଲା । ମୁଁ ଆଉ ଗୋଟେ କୁହାବୋଲା କରି ମଗାଇ ଦେଲି, କଚ୍ କଚ୍ କଡ଼ କଡ଼ କରି ପାଞ୍ଚ ମିନଟ୍‌ରେ ସବୁ ଶେଷ କରିଦେଲା । ମୋର ପାକୁଆ ପାଟି ଆଁ କରି ତା'ର ଚୋବାଇବା ଭଙ୍ଗୀକୁ ଚାହିଁ ରହିଥାଏ ।

ନୂଆଗାଁ ହଲ୍ଟରେ କାଚ ଜାର୍‌ରେ ଆସିଲା ଲଜେନ୍‌ସ । "ଟୋମାଟୋ ଲେମ୍ବୁ ନାରଙ୍ଗ, ଗୋଟି ଦଶ ପଇସା ଡବାଟା ପଚିଶ ।" ସେଥିରୁ ଡବାଟା କିଣିଦେଲି । ଝିଅଟା ଏତେ ଲାଳ ଝରାଇ ଚଟାଚଟି କରି ଖାଇଲା ଯେ ହାତମୁହଁ ଅଠା ହୋଇଗଲା । 'ତୁ ଅପରିଛନ୍ନଅଠା' କହିଲି । ହାତଟାକୁ ମୁଣ୍ଡରେ ପୋଛିଦେଇ ଦାନ୍ତନିକୁଟି ହସିଦେଲା ।

ବାଟରେ ଅନ୍ତତଃ ଅଧାଘଣ୍ଟାଏ ଛିଡ଼ାହବ ଆମ ଟ୍ରେନ୍ । ଅନ୍ତତଃ ଶହେ ବୋସ୍ ପାନଝୁଡ଼ି ଲୋଡ଼ିଂ ହବ । ସରୋଜିନୀ ବୁଝାଇଲା, ମୁଁ ବି ବୁଝାଇଲି ତା' ସହିତ, ଟ୍ରେନ୍ କେତେ ସମୟ ଛିଡ଼ା ହେବ ସେ ଭିତରେ ଆମେ ପ୍ରଥମାଷ୍ଟମୀ ବିଷୟରେ ନିଷ୍ପତ୍ତି ଗ୍ରହଣ କରିବା ।

ପ୍ଲାଟଫର୍ମର ନଦ୍ରାବଣ ଗଛମୂଳରେ ଛିଡ଼ାହୋଇ ଶହେବୋଟ୍ ପାନ ଲୋଡ଼ିଂ ସମୟଟକ ଭିତରେ ପ୍ରୋଗ୍ରାମ ଠିକଣା କଲୁ । ମୋ କାମ ସାରି ଫେରନ୍ତା ଅଶନଶୋଲ ଗାଡ଼ିରେ ମୁଁ ଆସିବି । ସେ ନାନୀ ଘରେ ରଥ ରହିବା କେନସେଲ କଲା । କହିଲା, "ନାନୀ ତା' ଝିଅକୁ ପଢ଼ିଆଁ ମନେଇଦବ, ମୁଁ କାଳୀଘାଟରୁ ତାକୁ ଦେଇ ଫେରିଯିବି, ତୁମକୁ ପଢ଼ିଆଁ ମନେଇବାକୁ ତୁମର କେହି ନାହିଁ । ତୁମ ଘରେ ରଥ ରହିବ । କାଲି ଭଦ୍ରଖ ଲୋକାଲରେ ଘରକୁ ଫେରିବି ତୁମକୁ ପଢ଼ିଆଁ ମନେଇଯାଏ । ତେବେ ତୁମେ ତୁମ ଧୋତି, ଜାମା, ମିଠାଇ ଅମରଦା ରୋଡ଼ରୁ ସାଙ୍ଗରେ ନେଇ ଫେରିବ । ହେଲା ତ ?"

"ହେଲ ତୋର କଥା । ତୁ ଆରପଟ ପ୍ଲାଟଫର୍ମରେ ଯେଉଁଠି ସେଇ ସିମେଣ୍ଟ ବେଞ୍ଚ ଅଛି ତାର ପାଖରେ ଛିଡ଼ା ହୋଇଥିବୁ । ଗାଡ଼ି ଫେରିଲାବେଳେ ମିନିଟିଏ ରହିବ ଜାଣିଥା । ମୁଁ ପଢ଼ୁଆଁ ମାନବାର ସବୁତିକ ହାତରେ ଆଣିବି ମୋ ପାଇଁ, ତୋ ପାଇଁ ଫ୍ରକ୍ ନ ହେଲେ ଛିଟକନା ଅଣିଥିବି ।"

ଅନନ୍ଦାତିଶଯ୍ୟରେ ସରୋଜିନୀ କହିଗଲା, "ଅଜା, ମତେ ଭାରି ଖୁସି ଲାଗୁଛି । ତୁମକୁ କଞ୍ଚା ହଳଦୀ ମଖାଇବି, ସିନ୍ଦୁର ଚନ୍ଦନ ଦେବି, ମନ୍ଦିରକୁ ଯିବା, ଭୋଗ ଲଗାଇବା । କୃଷ୍ଣଚୂଡ଼ା ନୂଆଲୁଗା ପିନ୍ଧି ନୂଆଜାମା ଯୋଡ଼ି ତୁମେ ଯେତେବେଳେ ଚାଲିଥିବ କେତେ ସୁନ୍ଦର ନ ଦିଶିବ । ମୁଁ ଖାଲି ଦୁଲଦୁଲ ଦେଖୁଥିବି ।"

"ଆଉରି ଭଲ ଦିଶନ୍ତା ବନଥାଁଟିଏ ମୋ' ଆଗରେ ଚାଲିଥିଲେ ।"

ଖିଲଖିଲ ହୋଇ ହସି ସରୋଜିନୀ କହିଲା "ଅଜା, ତୁମେ ଖୁବ୍ ରସିକ ଅଛ ।" ସତ କହୁଛି ଅଜା, ତୁମକୁ ଏମିତି ପଢ଼ୁଆଁ ମନାଇବ ତୁମ ମାଆ, ତୁମ ସ୍ତ୍ରୀ, ତୁମ ଝିଅ ବୋହୂ କେବେ ଦେମିତି ପାରି ନ ଥିବେ ।"

ଗାଡ଼ି ଖଣ୍ଡେଦୂର ଯାଇ ତା' ଦୃଷ୍ଟିରୁ ଅନ୍ତର୍ଦ୍ଧାନ ହେଲାଯାଏ ସେ ତା' ଚିକହାତ ହଲଉଥାଏ । ଦିନଯାକ ମୋର ଭାରି ଖୁସିରେ କଟିଲା । ସେ ଝିଅ ପୁଣି ମୋ ହାତରେ ବାଲେଶ୍ୱର ଯିବ, ମୋ ଘରେ ରାତି କଟାଇବ, ସକାଳେ ପଢ଼ୁଆଁ ମନେଇବ । କି ଆନନ୍ଦ ! ରାତିରେ ମୋର ନିଦ ହେବନି ।

ବସନ୍ତ ପୂଜା ପରେଇଁାମ କରି ମୁଁ ଅସି ଆନନ୍ଦ ଉତ୍ସୁକତାରେ ଫେରନ୍ତା ଅଶନସୋଲ ଧରିବା ପାଇଁ ଷ୍ଟେସନରେ ହାଜର ।

"ଅଶନସୋଲ ଟ୍ରେନର ଖବର କି; ମାଷ୍ଟରବାବୁ ?" ଏ ପ୍ରଶ୍ନର ଉତ୍ତର ଏଇପରି । ରାଇଟ୍ ଟାଇମ୍, ଅଧଘଣ୍ଟେ ଲେଟ୍, ମାଲଗାଡ଼ି ଗଲାପରେ ଆସିବ । ଘଣ୍ଟାଏ ଲେଟ୍ । ଦୁଇଘଣ୍ଟା ଲେଟ୍ । ସବାଶେଷରେ 'ଅଶନସୋଲ କେନ୍‌ସେଲଡ୍' । ଏଣେ ଷ୍ଟେସନ ପ୍ଲାଟଫର୍ମଯାତ୍ରୀ ସମାଗମରେ ସିଁ ସିଁ କରୁଛି । କାଲି ପ୍ରଥମାଷ୍ଟମୀ

ଛୁଟି, ଅପ୍ରେନୋଲ ଛୁଟି । ତା' ପରଦିନ ସେକେଣ୍ଡ ସାଟରଡେ, ରବିବାର । ସମସ୍ତେ ଉତ୍ସୁକ, ଉଦ୍‌ଗ୍ରୀବ । ବାସ୍‌ସବୁ ଓଭରଲୋଡେଡ୍ ।

ଐତିହାସିକ ଅଗଷ୍ଟ ନଅରୁ ପୁରୀ ଯାତ୍ରୀ ସମାଜ ଦେଶର ବିପତ୍ତି ବେଳେ କପଣ ଆଗେଇ ଆସିଛି । ସିଗ୍‌ନାଲ କେବିନକୁ ଆକ୍ରମଣ କରି ପରବର୍ତ୍ତୀ ଏକ୍ସପ୍ରେସକୁ ଛଡ଼ା କରାଯାଇପାରେ । ଲିଡ଼ରମାନେ ଲାଗିପଡ଼ିଲେ । ଇଷ୍ଟକୋଷ୍ଟ ଛଡ଼ାହେଲା । କେତେ ଜଣ ଯାତ୍ରୀ ମୋତେ ପଟପଟ୍ ଟେକି ଟ୍ରେନର ପ୍ରବେଶ ଦ୍ୱାରରେ କୌଣସିମତେ ଛଡ଼ା କରାଇଲେ; ଦି' ତର୍ଜନ ପାଚେଲା କଦଳୀରୁ ଗୋଟିଏ ମଧ୍ୟ ମିଳିଲା ନାହିଁ । ଅନ୍ୟ କେତେଜଣ ପିଲା କାନ୍ଥଟିଏ ରଚନା କରି ମୋତେ ପଡ଼ିଯିବାରୁ ରକ୍ଷା କରୁଥାନ୍ତି ।

ବତ୍ରାରେ ବି ଏକ୍ସପ୍ରେସ୍ ଛଡ଼ାହେଲା । ସବ୍ରେଜନୀ ସିମେଣ୍ଟ ବେଞ୍ଚ ପାଖରେ ପ୍ରତୀକ୍ଷା କରିଛି କି ନାହିଁ ଜାଣିବାର ଉପାୟ ନାହିଁ । ହାତ ଗୋଡ଼ ହଲଚଲ ହବାର କି ନାହିଁ ।

ବାଲେଶ୍ୱର ଷ୍ଟେସନରେ ଗୁଡ଼ି ଛଅ ଅର ଅଟକିବା ପରେ ଗାଡ଼ି ଛଡ଼ାହେଲା । ଯାତ୍ରୀଙ୍କ ଧ୍ୟାନ କେବଳ ମାତ୍ର ପ୍ଲାଟଫର୍ମରେ "ସବ୍ରେଜନୀ, ଦବ୍ରେଜନୀ" ଚିତ୍କାର କରି ଏପଟ ସେପଟ ଧାଁଧପଡ଼ କଲି । କଦଳୀ ବାଦ୍ ଫେଣାର ତେମିତି ରଶିରେ ଝୁଲୁଥାଏ ମାତ୍ର ।

ତା'ପରେ ସ୍ପେଲ ପାସେଞ୍ଜର, ପରଦିନ ସକାଳଗାଡ଼ି, ଦଶଟାବେଳେର ଭଦ୍ରକ ଲୋକାଲ ପ୍ରତ୍ୟେକ ଗାଡ଼ିରେ ତଦାରଖ କରିଛି, 'ସବ୍ରେଜନୀ' 'ସବ୍ରେଜନୀ' ଡାକରେ ପ୍ଲାଟଫର୍ମ କମ୍ପାଇ ପ୍ରତିଧ୍ୱନି ସୃଷ୍ଟି କରିଛି । ତାକୁ ପାଇନାହିଁ । ଜନ୍ମାଷ୍ଟମୀ ମାନିପାରି ନାହିଁ ।

ପୁଣି ଜନ୍ମାଷ୍ଟମୀ ଆସୁଛି । ଜନ୍ମାଷ୍ଟମୀ ମାନିବାର ଆଉ ଚେଷ୍ଟା କରିବି କି ନାହିଁ ସେକଥା ପଛକୁ ଥାଉ; କିନ୍ତୁ ଜୀବନର ଶେଷଯାଏ ବର୍ଷକୁ ବର୍ଷ ଯେତେଦିନ ଜନ୍ମାଷ୍ଟମୀ ଆସୁଥିବ, ସେତେଦିନ ପ୍ରଥମ କରି ସେହି ବାପାମାଆ ମୋତେ ଏ

ଦୁନିଆଁକୁ ଆଣିଥିଲେ, ତାଙ୍କୁ ମନେପକାଏ ନ ପକାଏଁ ନିଷ୍ଟୟ ମନେକରୁଥିବ କୁଳଗାଁର ହେଇ ଟିକେଟିଅ ଶ୍ରୀମତୀ ହରେଜନୀ ମାହାନ୍ତ କେଅର ଅଫ୍ ସୁଦାମ ମାହାନ୍ତ ପୋ:ଅ: ଖନ୍ତାପଡ଼ା, ଜିଲ୍ଲା ବାଲେଶ୍ୱରକୁ । ଆଉ ହେଇ ଜଗନ୍ନାଥଙ୍କୁ ଚୈତନ୍ୟଦେବ ହସ୍ତ ଯୋଡ଼ିଥିବା ଚିତ୍ରଟିକୁ ଯେ ଆମ ଦୁଇଙ୍କୁ ଏକାଠି କରି ପୁଣି ଅଲଗା କରିଦେଲ ।



# ଅବଶୋଷ

ପଗ୍ଭରବ ନ ପଗ୍ଭରବ ତର୍କଣା କର ଅବଶେଷରେ ଦନେ ପଗ୍ଭରେଲ, ବାପା ! ତୁମ ଜୀବନରେ କ'ଣ ଅବଶୋଷ ରହିଗଲା ?

ମୋ'ର ମୁହଁ ନେଇ ବାପା ଉତ୍ତର ଦେଲେ, "ମୁଁ କ'ଣ ଫାଶିକାଠକୁ ଯାଉଛି ଯେ ତୁ ମୋର ଶେଷ ଇଚ୍ଛା, ଅଭିଳାଷ ଜାଣିବାକୁ ଚାହୁଁଛୁ ?"

"ଫାଶିକାଠ କହୁନ ବାପା ! ଜିଗୁଣ ରଜ୍ଜୁ ଧରି ଯିଏ ଆମକୁ କଣେଇ ନାଚ ନଚଉଛି, ସେ କେତେବେଳେ କାହାକୁ ଉପରକୁ ଉଠେଇ ନେବ, କିଏ କହିପାରିବ ? ତୁମର ଚଉରାଶୀ ଟପିଲା ପରି ଅଙ୍କ ପାଖରୁ, ଜାଣୁଅଛି ପଦ୍ମାନାଥ । ସତରେ କୁହନା ତୁମ ଜୀବନରେ କ'ଣ ଅବଶୋଷ ରହିଗଲା । ଚେଷ୍ଟା କରିବି ହୁଏତ ତାକୁ ପୂରଣ କରିବା ପାଇଁ ।"

ଉତ୍ତର ଦେବା ପାଇଁ ବାପା ଦଣ୍ଡେ ସିରଅସ୍ ହୋଇଗଲେ । ମୁଁ ବି ତାଙ୍କ ମୁହଁରୁ ଉତ୍ତର ଶୁଣିବାକୁ ନଜର କରୁଁ କରୁଁ ଭାବିଗଲି ତାଙ୍କ ମୋର ଅଦେଖି କାଳେ କ'ଣ ରହିଯାଇଛି ।

ସେ ଥିଲେ ଏକ ଦୀନ ଦରିଦ୍ର ଭିକାରୀ ବ୍ରାହ୍ମଣ । ମାଗିଯାଚି କାଖେଇ କାନ୍ଧେଇ, ରକ୍ତ ଦେଇ, ରୋଗ ଶଯ୍ୟାରୁ ବାରମ୍ବାର ବଞ୍ଚାଇ ପାଠଶାଠ ପଢ଼େଇ-ଥିଲେ ଏବଂ ଅପର୍ଯ୍ୟାପ୍ତ ସ୍ନେହ, ସେବା, ତ୍ୟାଗ ବିନିମୟରେ ମୋତେ ମଣିଷ କରିଥିଲେ । କୃତଜ୍ଞ ପୁତ୍ର ଆକାରରେ ମୁଁ ବି ସିମିତ ତାଙ୍କ ମନଜାଣି ସବୁ ଦେବାର

ଚେଷ୍ଟା ଜୀବନଯାକ କରିଆସିଛୁ, ଯିମିତି କି ପ୍ରୀତି, ଭୃତ୍ୟ ସେ ପାଆନ୍ତି ତାଙ୍କ ବଡ଼ପୁଅ ପାଖରୁ ଏବଂ ତାଙ୍କ ଅନ୍ତେ ତାଙ୍କ ଅତୃପ୍ତ ଆତ୍ମା ଯେପରି ମୋତେ ସ୍ୱପ୍ନରେ ସୁଦ୍ଧା ଆସି ନ କୁହେ, "ବାପା ମୋତେ ଏଇଟା ଦେଲୁନି, ସେଇଟା ଦେଲୁନି ।

ପୁଷମାସିଆ ଶୀତ ସକାଳେ ସେ ଘରେ ଧୂନି ପାଖରେ ବାଡ଼ିପଟ ଖଳାରେ ଅମ୍ବଗଛ ମୂଳରେ ବସି ମୋଟା ମୋଟା ବୁଢ଼ା ଗଣ୍ଠିଆ ହାତ ଆଙ୍ଗୁଳିଗୁଡ଼ାକୁ ଏପଟ ସେପଟ କରି ଉଷୁମ କରୁଥାନ୍ତି ଏବଂ ମଝିରେ ଖଣ୍ଡିଏ ଖଣ୍ଡିଏ ଗ୍ରେଟ କାଠି ନିଆଁରେ ପକାଉଥା'ନ୍ତି । ମୁଁ ପାଖରେ ବସି ଏଇ ପ୍ରଶ୍ନଟି ପଚାରିଲି । ବହୁତ ଯାଏଁ ସେ ଭାବୁଥାନ୍ତି । ମୋ' ପ୍ରଶ୍ନର ଉତ୍ତର ଖୋଜୁଥାନ୍ତି କି ମାଆ ମାଉସୀ କଥା ଭାବୁଥା'ନ୍ତି ଜାଣି ହେଉନଥାଏ । ମାତ୍ର ବର୍ଷେ ହେଲା ଆମେ ମାଆକୁ ହରାଇଛୁ । 'ମାଆ' କହିଲେ, ମୁଁ ରମା ଉମା ଆଦି ସହରର ନାରୀମାନଙ୍କ କଥା ଭାବେନି । ମୁଁ ଭାବେ ମୋତେ ଜନ୍ମଦେଇ କ୍ଷୀର (ରକ୍ତ) ଦେଇ ଯେ ବାରବ୍ରତ ପୂଜା ଉପାସ କରି ମୋତେ ବଢ଼ାଇ ବଞ୍ଚାଇ ପାଳିଥିଲା; ସେଇ ମାଆ ରୁକ୍ମିଣୀ କଥା । ଯାହାର ଡାକ ନାଆଁ କେଜେବାପା ଦେଇଥିଲେ କାନ୍ଦୁଣୀ । ଛଅବର୍ଷରୁ ଯେ ବାପଘର ଛାଡ଼ି ଆମ ଘରେ ତା' ମା' ବାପାଙ୍କୁ ମନେପକାଇ ଲୁହଝରାଇ ଭୋକ ଉପାସରେ କାନ୍ଦୁଥିଲା ଏବଂ ପରେ ଆମକୁ ବୁଝି ଅନନ୍ତ ଆଗ୍ରହରେ ବଞ୍ଚିଥିଲା ଏଇ ବାପା ପାଇଁ, ଯେ ମୋର ପାଖରେ ବର୍ତ୍ତମାନ ବସିଛନ୍ତି ।

ଅବଶେଷରେ ଶେତା ଆଖିରେ କିଛି କୌଣସି ଫୁଟାଇ ବାପା କହିଲେ, "ପ୍ରଶାନ୍ତରେ ! ମତେ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଛି, ତୁ ଭୋର ସକାଳଟାରେ ଅନ୍ୟସବୁ କଥା ଛାଡ଼ି ଏଇ ମରମ କଥାଟି କିମିତି ଜାଣିକି ପଚାରିଲୁ ।" ତୋ' ମାଆ ଚାଲିଗଲା ପରେ ଖିଆପିଆ ଉଦ୍ଧପାଆ ଜମି ଜାଇଗା, ଧନସମ୍ପତ୍ତି କିଛି ଚିନ୍ତା ନାହିଁ । ମୋର ଅଭାବ ଅସୁବିଧା ତ କିଛି ନାହିଁ । ଅବଶୋଷ କଥା ପଚାରୁଛୁ ? ତୁମେସବୁ ପୁଅ ଝିଅ ମିଳାମିଶି ଅବଶୋଷ, ଓରମାନ ବୋଲି କିଛି ରଖି ଦେଇନ । ସବୁ ଖାଇଛି, ସବୁ ଜାଗା ବୁଲିଛି, ସବୁ ଦେଖିଛି । ବଡ଼ କଥା ହେଲା ତୋର ଚେଷ୍ଟାରେ ମୁଁ ସଂସ୍କୃତ, ଇଂରାଜୀ, ବଙ୍ଗଳା ଅକ୍ଷର ପାଠଶିଖି ପଢ଼ାପଢ଼ି କରି ଆନନ୍ଦ ପାଇଛି । ତା' ଛଡ଼ା ତୋ ମାଆ ତ ମତେ ରଜା କରି ଦେଇଥିଲା, ଗରିବ ଦୁଃଖୀ ବୋଲି ମୁଁ କେବେ ନିଜକୁ ଭାବି

ପାରନଥିଲି । ସେ ଯାହା ବାକି ରହିଗଲା ତୁମେ ସବୁ କରିଦେଲ । ଅବଶୋଷ କ'ଣ ? ନା ନା, ମୋର କିଛୁ ଅବଶୋଷ ରହିଛି ବୋଲି ତୋର ଭାବିବା ଉଚିତ ନୁହେଁ ।"

ଏତିକିବେଳେ ମୋ' ସ୍ତ୍ରୀ ଦୁଇ ହାତରେ ଦୁଇ କାପ୍ ଚା' ଧରି ପହଞ୍ଚିଗଲେ ଏବଂ ଚା' ବଢ଼ାଇ ଦେଇ ଚନ୍ଦନରପୁରିଆ ଗୋଲପ ସୁନ୍ଦରୀ ବିଡ଼ିକଠା ଓ ଦିଆସିଲି ଥୋଇଦେଲେ ବାପାଙ୍କ ଆଗରେ । ବାପାଙ୍କ ଏକମାତ୍ର ପୁରୁଣା ବଦ୍ଅଭ୍ୟାସ ଏଇ ବିଡ଼ି । ଦିଆସିଲି ଫେରାଇଦେଇ ଧୂନି ନିଆଁରେ ବିଡ଼ି ଧରାଇଲେ । ଏଇଟି ତାଙ୍କର ଦିବ୍ୟ ମୁହୂର୍ତ୍ତ । ମାଆ ବର୍ଷ ବର୍ଷ ଧରି ଏଇ କାମ କରୁଥିଲି । ଚୁଲ୍ଲୀ ପାଖରେ ଆମ ଅଗ୍ଣାଭଡ଼ାରରେ ବାପା-ମାଆ ଏମିତି ବସି ଧୂଆଁର ଉଷ୍ମତା ଟାଣିବା ସଙ୍ଗେ ସଙ୍ଗେ ବୁଢ଼ା ଚଙ୍କୁଡ଼ିମାଛ ଚିପାଚିପି କଥା ମନେ ପକାଉଥାନ୍ତି ।

ପୁଣି ଆରମ୍ଭ କଲି, "କୁହନା ବାପା ! ଜାଣିବାକୁ ମୋର ଭାରି ଇଚ୍ଛା ହେଉଛି କାଳେ କିଛି ନା କିଛି ଅବଶୋଷ ନିଶ୍ଚୟ ରହିଯାଇଥିବ । ସବୁ ଇଚ୍ଛା ଅଭିଳାଷ ଯଦି ମର୍ତ୍ତ୍ୟରେ ମେଣ୍ଟିଯାଉଥାନ୍ତା, ପୂରଣ ହେଉଥାନ୍ତା, ତେବେ ମଣିଷ ସ୍ୱର୍ଗ ଖୋଜନ୍ତା କାହିଁକି, ସ୍ୱର୍ଗ ବୋଲି ଗୋଟାଏ ସ୍ଥାନର କଳ୍ପନା କରାଯାଇଥାନ୍ତା କାହିଁକି । କୁହ ଯେତେ ଗୋପନ କଥା ହେଲେ ବି କୁହ । ଯେତେ ଅମିଳ ଚିଜ ହେଲେ ବି କୁହ । ମୁଁ ତ ଆଉ ପିଲା ନୁହଁ, ଷାଠିଏ ପାଖାପାଖି ହେଲିଣି, ପଞ୍ଚାବନରେ ରିଟାୟାର କଲି ପରା ।

ବାପା ଆଉ ଖଣ୍ଡିଏ କାଠି ଧୂନିରେ ଫୋପାଡ଼ି କହିଲେ, "କ'ଣ ଭାବିବୁ କେଜାଣି ! ତୋତେ ମୁଁ କୌଣସି କଥା ଲୁଚାଇ ପାରେ ନାହିଁ । ଯଦି ନିହାତି ମନକଥା ଜାଣିବାକୁ ଚାହୁଁଛୁ, ତେବେ କହୁଛି । ମୋର ଜୀବନରେ ଗୋଟିଏ ଅବଶୋଷ । ସେଇଟି ମୋ ଭାଗ୍ୟରେ ବି ନାହିଁ । ସେଇଟି ହେଉଛି ତୋ ମାଆ ସମ୍ପର୍କରେ । ରୂପରଙ୍ଗ ଗୁଣରେ ତୋ ମାଆର ସମକକ୍ଷ କେହି ଆମ ଗାଁ କି ଖଣ୍ଡମଣ୍ଡଳରେ ନ ଥିଲେ । ସେ ଦିଗରେ ସେ ଏକ ଦେବୀ । ତୁମ ସମସ୍ତଙ୍କ ପରି ସର୍ବଗୁଣସମ୍ପନ୍ନ ପିଲାଟିଏ ସେ ଦେଇଯାଇଛି ତାକୁ କ'ଣ କହିବି । ହେଲେ ମୋ

କପାଳ ସ୍ଥାନ । ତୁ ଜନ୍ମ ହେବା ପରେ ଘରେ କ'ଣ ହେଲା କେଜାଣି ତୋର ମାଆର ଦେହ ଏକାବେଳେ ଖର୍ବି ଗଲା । ସେ ଖାଲି ଅସ୍ଥିଚର୍ମ ହୋଇଗଲା । ଯେତେ ଯାହା ଭସ୍ମ, ସାଲସା, ପାଞ୍ଚନ, ତୈଳ ଜଡ଼ିବୁଟି ଦେଲେ ମନ୍ତ୍ରଯନ୍ତ୍ର ଗୁଣିଗାରେଡ଼ି କଲେ ବି ଜୀବନଯାକ କଙ୍କାଳସାର ହୋଇ ରହିଲା । ଗୋଟାଏ ଚଢ଼େଇ ଦେହରେ ଯେତେ ମାଂସ ଥାଏ ତା' ଦେହରେ ସେତକ ବି ରହିଲା ନାହିଁ । କିଏ ଡାହାଣୀରକ୍ତଣୀ ତା'ର ସବୁ ଶୋଷି ନେଇଗଲା । ଭଗବାନ ଏତେ ଅଲଭ୍ୟ ଚିଜ ତାକୁ ଦେଲା, ଉଭୟ ନାରୀ ପୁରୁଷ ପକ୍ଷରେ ଲୋଭନୀୟ, ପୁଳାଏ ଦିପୁଳା ମାଂସ ଦେବାରେ କାର୍ପଣ୍ୟ କଲା । ମୋର ଏଇ ଏକମାତ୍ର ଅବଶୋଷ । ତୁ ହୁଏତ ହସିବୁ ମୋର ଏ ପିଲାକଥା କଥାରେ ।'' ବାପାଙ୍କର ଆଖିଏଠା ଧୂଆଁରେ ହେଉ ବା ଦୁଃଖରେ ହେଉ ବା ମାଆଙ୍କ ମୁମୂର୍ଷୁ କଙ୍କାଳସାର ଚେହେରା ମନେପକାଇ ଜକେଇଗଲା ।

ଆଉ କିଛି ପଚାରିବାରୁ ମୁଁ କ୍ଷାନ୍ତ ହେଲି । ଭୟ ହେଲା, ବାପା ଯେଉଁ ଅବସ୍ଥାରେ ଅଛନ୍ତି ସେଥିରେ ସେ ଗୋପନରୁ ଗହନକୁ ଚାଲିଯିବେ । ମୁଁ ହୁଏତ ଖୁବ୍ ଅଡୁଆ ଅବସ୍ଥାରେ ପଡ଼ିଯିବି । ଯିମିତି ପ୍ରସିଦ୍ଧ ଟୀକାକାର ମଲ୍ଲୀନାଥ କୁମାରସମ୍ଭବରେ ପଡ଼ିଯାଇ ଥିଲେ । ହର-ପାର୍ବତୀଙ୍କ ବିବାହ ପରେ ଯେତେବେଳେ ଜଗତ୍‌ପିତା-ମାତାଙ୍କ ରତିକ୍ରିୟା ବର୍ଣ୍ଣନା ଆସିଲା ସେ ଆଉ ଅଗ୍ରସର ହେଲେନି । କାରଣ, ବାପା ମାଆଙ୍କ ପ୍ରେମଲୀଳା ଦେଖିବା, ଶୁଣିବା ବା ବର୍ଣ୍ଣନା କରିବା ପୁଅ ପକ୍ଷରେ ଅନୁଚିତ ।

ତା' କଥା ଠିକ୍ ସେତିକିବେଳେ ମାଉସୀ କାପଗୁଡ଼ାକ ନେବା ପାଇଁ ଗୁହାଳ ଘରୁ ଆସି ଆମ ପାଖରେ ଛିଡ଼ା ହୋଇଗଲା । ଆମ ଦୁଇ ଦିବ୍ୟ ମଣିଷଙ୍କ ଭିତରେ ଏ ଅଦିବ୍ୟ ନାରୀଟିର ଆକସ୍ମିକ ଉପସ୍ଥିତି ଆମକୁ ଅଲଗା କଲା ନା ଏକାଠି ଯୋଡ଼ିଲା ତାହା ଜାଣିବା କଥା ।

ଆମ ସୃଷ୍ଟି ପ୍ରାକ୍‌କାଳରୁ ଏଇ ମାଉସୀ ନାମକ ଜୀବଟି ଆମ ଘରେ ଏକ ପ୍ରକାର ରହସ୍ୟମୟ ପରିସ୍ଥିତିରେ ରହିଛି । ଆମକୁ, ମୋତେ ବିଶେଷତଃ, ଜଣାପଡ଼େ ଯେମିତି ସେ ମାଆର ଲେଉଡ଼ି କମ୍ପେନିଅନ ହୋଇ ତା' ବାପଘରୁ ଆସିଥିଲା । ଭାଇଭଉଣୀଙ୍କ ମଧ୍ୟରୁ କେବଳ ମୁଁ ଏକା ଜାଣିଛି ଯେ ତା'ର ସ୍ୱାମୀ ଥିଲା, ତା'ର ପୁଅ ବି ଥିଲା ଯାହାର ନାଆଁ ହରି । ସ୍ୱାମୀର ନାଆଁ ମନେପଡ଼ୁନି ।

ଆମ ଘର ବାଡ଼ପଟେ ଯେଉଁ ବଗାଲ ସାହି ସେଇଠି ତା'ର ଘର । ଜାତି ହିସାବରେ ବଗାଲମାନେ ଗଉଡ଼ଙ୍କ ସହିତ ସମାନ, ପାଣିଚଲେ । ଘରଟି କୁଡ଼ିଆ, ଛାଳରେ ମୁଣ୍ଡ ବାଜେ; ପଶିଲାବେଳେ ସାବଧାନ ନ ହେଲେ । ଯେବେ ମୁଁ ପାଞ୍ଚ ମାଇନର ସ୍କୁଲରେ ପଢ଼ୁଥିଲି, ତେବେ ମୁଁ ଆଉ ମାଉସୀର ପୁଅ ହରି ସଙ୍ଗାତ ବସିଥିଲୁଁ । ଦିନେ ସକାଳେ ପ୍ରାୟ ନଅଟାବେଳେ ଆମ ଦୁହିଁଙ୍କ ବାପମାଆ ଅଗଣାରେ ପୂଜାପର୍ବ କରି ନୂଆଲୁଗା ପିନ୍ଧାଇ ସଙ୍ଗାତ ବଦାଇଥିଲେ । ସେଇଦିନରୁ ଆମେ ଦୁଇ ପରିବାର ଏକ ହେଲା ପରି ଜଣାଗଲା ।

ସେ କାଳରେ ଆମ ଗାଁରେ ଶୁଣ୍ଢି, ଡୋମ, ଭୂମିଜ, ଭୂୟାଁ ଜାତିର ଲୋକେ ଗୋଟିଏ ଗୋଟିଏ ସାହିରେ ରହୁଥିଲେ, ବ୍ରାହ୍ମଣ ଲୋକଙ୍କ ଆଶ୍ରିତ ହୋଇ । ଆମ ଘରମାନଙ୍କରେ ଖଟିଲୁଟି, ଜମିଜାଗା ସସ୍ତା ବଖରା ନେଇ, କାମଦାମ କରି ସେମାନେ ଚଳୁଥିଲେ । ଜାତିଭେଦ ଥିଲେ ମଧ୍ୟ ମଣିଷ ଆକାରରେ ସମାନ ଥାଇ ପରସ୍ପରକୁ କକା, ଅଜା, ମାମୁଁ, ମାଉଁ, ଭାଇଭଉଣୀ ଡକାଡ଼କି ହୋଇ ପରିବାର ପରି ରହୁଥିଲେ । ଏପରିକି ପରସ୍ପରଠାରୁ ଯେତିକି ଦୂରତା ରଖିବା କଥା ତା' ମଧ୍ୟ ରଖୁ ନ ଥିଲେ । ସଙ୍ଗାତ ମଇତ୍ର ବସିବା ରୀତି ବହୁଳ ପ୍ରଚଳନ ଥିଲା ସେଥିପାଇଁ ।

ଆମ ବାଡ଼ପଛ କୁଡ଼ିଅଘରେ ସଙ୍ଗାତ, ସଙ୍ଗାତ ବାପା ଓ ମାଉସୀ ରହୁଥିବାରୁ ପ୍ରାୟ ସବୁବେଳେ ସେମାନେ ଆମ ଘରେ ଥାଆନ୍ତି କାମଦାମ କରନ୍ତି, ଖାଆନ୍ତି । ସଙ୍ଗାତ ବସିବାର ଦୁଇତିନି ବର୍ଷ ପରେ ମାଉସୀ ମୁଣ୍ଡରେ ଚଢ଼କ ପଡ଼ିଲା । ତା' ପୁଅ ହରି, ମୋ ସଙ୍ଗାତକୁ କାଶ ରୋଗ ଧରିଲା ଏବଂ କେତେ ମାସ ଭିତରେ କାଶି କାଶି ରକ୍ତ ବାନ୍ତି କରି ସେ ମରିଗଲା । ଦୁଇବର୍ଷ ପରେ ଯେତେବେଳେ ମୁଁ ଦଶମ ଶ୍ରେଣୀରେ ପଢ଼ୁଥାଏ ଆଉ ଏକ ଦୁର୍ବିପାକ ତାକୁ ପଡ଼ିଲା । ସଙ୍ଗାତ ବାପା ବି ମରି ପଡ଼ିଲେ ସେଇ ରୋଗରେ । ପୁଅ, ସ୍ୱାମୀ ଚାଲିଯିବା ପରେ କୁଡ଼ିଆରେ ରହିଲା ଏକା ମାଉସୀ ଓ ତା'ର ନାଲି ରଙ୍ଗର ଦେଶୀ କୁକୁର, ଯିଏ ମାଉସୀ ଆମ ଘରେ ଥିଲା ବେଳେ ଝୁଙ୍ଗୀ ଜଗିଥାଏ ।

ଜମିଜାଗା ମାଣେ ଅଧେ ମାଉସୀର ଥିଲା । ଘରଡ଼ିହଟା ବି ମାଣେ ଅଧେ ହବ । ସେଥିରେ ମାଉସୀ ମକା ସାରୁ ଲଗାଏ; ଗୋବର ଖାତଟାରେ ବର୍ଷାଦିନେ

କଲମଶାଗ, ଶୀତଦିନେ କୋଶଲାଶାଗ କରେ । ଚୂଲରେ ପୋଡ଼ି କଖାରୁ ଲତା ଆଉ ମଡ଼ାଏ । ବାଡ଼ି ମୂଳକୁ ବାଉଁଶ ବୁଦାଏ ଓ ଏଣ୍ଡେ ଜାଗାରେ ବୋବାଇ ଘାସ । ଭଲ ଅବସ୍ଥାରେ ଗୋରୁଗାଈ, କୁକୁଡ଼ା, ମାଙ୍କଡ଼, ଛେଳି ମେଣ୍ଢା ବି ସେମାନଙ୍କର ଥିଲା । ସେ ସବୁ ମାଉସୀର କି ଆମର ଜଣା ପଡ଼ୁନଥିଲା । ମୋର ବେଶ୍ ମନେ ଅଛି ମାଉସୀ କଦଳୀଟାଏ, କଖାରୁଟାଏ, ଶାଗ ଜାଲାଏ ବୋହେଇ ବଡ଼େ ଦ'ବଡ଼ା ନଦୀବର ଆମ ଘରକୁ ଆଣି ଦିଏ; ନହେଲେ ମାଆ ଯାଇ ନେଇ ଆସନ୍ତି । ମୁଁ ଖାଇବାକୁ ଭଲ ପାଏ ବୋଲି ପୁଡ଼ାକୁଟିରେ କଲମଡ଼ଙ୍କ ଆମ ଘରକୁ ଆସେ । ଆମ ଘର ମାଉସୀ ଘର ଏପରିକି ମାଆ ଓ ମାଉସୀ ଆମ ପକ୍ଷରେ ଅଭେଦ କଳ୍ପନା ।

ଆଜି ମାଉସୀର ପୂର୍ବସ୍ୱାସ୍ଥ୍ୟ ଟେଡ଼େବେଶ କୌଣସି ନାହିଁ । ମୋ ସାନ ଭାଇ-ଭଉଣୀମାନେ ତାକୁ ସଧବା ଆକାରରେ ଦେଖିନାହାନ୍ତି । ଅଜ ତା'ର ନାଲିପାଡ଼ିର ମୋଟା ପାଟଗୁଣା ଶାଢ଼ୀ ନାହିଁ, କି କାନରେ କାପ, ବାହୁରେ ବାଜୁ, ହାତରେ ବଟଫଳ ନାହିଁ । ନାକରେ ଗୁଣା ନାହିଁ, ଗୋଡ଼ରେ କଂସା ଖାଡ଼ୁ ଆ ନାହିଁ । ଏବର ପରିଧାନ ସୁତାଖିଅ ପରି କଳା ଧଡ଼ିଥିବା ନଳଗୋଡ଼ରେ ପଡ଼ିଥିବା ଧୋତି । ସିନ୍ଦୁର ବନ୍ଦୁ ଜାଗାରେ ଶ୍ୱେତ ଚନ୍ଦନ ଫୁଟାଟି ଯାହା ଛୁଞ୍ଚରେ କୁଟାହୋଇଛି ବାହୁରେ ସେଇ ନୀଳରଙ୍ଗରେ 'ହରେକୃଷ୍ଣ' ଚିହ୍ନକୁଟା ସହିତ ମେଳରଖି । ଯେଉଁ ଦେହ ପୂର୍ବେ କୋଣାର୍କ ମନ୍ଦିରର ମୁଗୁନିପଥର ମୂର୍ତ୍ତିପରି ଦିନେ ଦିଶୁଥିଲା, ଏବେ ଅନେକ ଝଡ଼ିଯାଇଛି । ତଥାପି ଦେହରେ ଯେତିକ ମାଂସ ଅଛି, ତା'ର ଗୃହସ୍ୱରରୁ ସ୍ୱଗେ ଯଦି ମୋ ମାଆ ଦେହରେ ଥା'ନ୍ତା, ତେବେ ବାପାଙ୍କ ମାଂସ ଅବଶୋଷ ବୋଧହୁଏ ରହିନଥାନ୍ତା ।

ଜଣଜଣ ହୋଇ ଆମେ ଭାଇଭଉଣୀ ଘର ଛାଡ଼ି ଚାଲିଆସିଲୁ, ଉଡ଼ିଆସିଲୁ ବସାରୁ ଡେଣାଲଗା ଚଢ଼େଇ ପରି; କିନ୍ତୁ ମାଉସୀ ସେଇଠି ରହିଛି ଘରକୁ (କାହାଘର ?) ଜଗି, ମାଆକୁ ଜଗି, ବାପାଙ୍କୁ ଜଗି । ଯଦିଓ ସେ ଘରର ମାଲିକାଣୀ ନୁହେଁ କି ବାପା ତା' ପରମଶିଷ ନୁହନ୍ତି ।

ଅମେ କେବେ ତା' ଜୀବନ ଜୀବିକା ବିଷୟରେ କୌତୂହଳୀ ହୋଇନାହୁଁ । ଧାରଣା, ଭଗବାନ ଆମର ସେବାଶୁଶ୍ରୂଷା ପାଇଁ ଆମ ଘରକୁ ମାଉସୀଟିଏ

ପଠାଇଦେନ୍ତେ । ତା'ର ପେଟ ନାହିଁ, ପିଠି ନାହିଁ, ଭୋକ ନାହିଁ, ଶୋଷ ନାହିଁ; ଖାଲି ଆମର ସେବା, ସେବା, ସେବା । କୂଅରୁ ପାଣି କାଢ଼ିବ, ଧାନ ଉଷେଇବ, ଶୁଖେଇବ, କୁଟିବ; ଗାଈଗୋରୁଙ୍କୁ ବାନ୍ଧିବ, ଗୋବର ପକେଇବ, ଖୁଆଇବ, ଗୁହାଳ ସଫା କରିବ, ଘରଦ୍ୱାର ଝାଡ଼ିବ, ଲିପିବ, ସାନ ସାନଙ୍କୁ ସ୍ନାନ ଦେଲାପରେ ଛାଡିବ ଏପରିକି କ୍ଷୀର ( ତା ନଜର ! ) ଖୁଆଇବ । ଚକ ଲାଗିଥିବା ବାପାଙ୍କ ଚଉକି ଖଟିଆରେ ବସାଇ ମୋ ସାନ ଭଉଣୀଟି ଗାଁମୁଣ୍ଡ ପଡ଼ିଆରୁ ପୋଖରୀ ତୁଠ ପର୍ଯ୍ୟନ୍ତ ଘଡ଼ଘଡ଼ କରି ବୁଲାଇ ଆଣିବ; ବରି ଭାଙ୍ଗିବ, ବଡ଼ି ଦେବ, ବାଟିବ, ପିଠା କରିବାରେ ମାଆକୁ ଯିମିତି କିଛି ଅସୁବିଧା ନହେବ । ସତେ କେବେ ଗୋଡ଼ହାତ ବଥା କରୁଛି, ମୁଣ୍ଡ ବଥାଉଛି ବୋଲି ଶୋଇପଡ଼ିବ ନାହିଁ, କିଛି କହିବ ନାହିଁ; ବରଂ ଦରକାର ନ ଥିଲେ ବି ଆମ ଗୋଡ଼ମୁଣ୍ଡ ଘଷିଦେବ ।

ବଡ଼ ଭୋରୁ ଅସି କାମ ପାଇଁଟି ଆରମ୍ଭ କରେ । କେବଳ ଗାଧୋଇବା ଲୁଗା ବଦଳାଇବା ପାଇଁ ଘରକୁ ଯାଏ । ପୁଅ ସ୍ୱାମୀ ଥିଲା ବେଳେ ସାମାନ୍ୟ ବେଶୀ ସମୟ ରହୁଥିଲା ଘରେ ସେମାନଙ୍କ ପରିଚର୍ଯ୍ୟା ପାଇଁ । ଏବେ ଚବିଶଘଣ୍ଟିଆ ନ ହେଲେ ବି Whole time servant, ମାଆ ରନ୍ଧାବଢ଼ା କଲାବେଳେ ଚହଲିଆ କାମ ମାଉସୀ କରେ । ପରିବା କାଟେ, କାଠ ଯୋଗାଇଦିଏ । ଝୋଳଦନା ସିଏ । ମାଛ ବାଛେ, କାଟେ । ମସଲା ବାଟେ । କଥାବାର୍ତ୍ତା ଖୁବ୍ କମ୍ । କାମର ଦୁନିଆଁ । କେବଳ ଅଣ, ନିଅ, ଦିଅ, ରଖ, ଢାଳ ଆଦି ଶବ୍ଦର ବ୍ୟବହାର ବହିମସ୍ତ ।

ମାଆ ଯେ ମାଉସୀକୁ କି ଆଖିରେ ଦେଖୁଥିଲା, ହିଂସା ଦ୍ୱେଷ, ଈର୍ଷା ବା ସନ୍ଦେହ ଆଦି ତା' ହୃଦୟରେ ଥିଲା କି ନାହିଁ । । ପାକଳ ବୟସରେ ବି ଜାଣିପାରିଲି ନାହିଁ । ସେହିପରି ପ୍ରାୟ ଅଜଣା ରହିଲା ବାପା ସହିତ ମାଉସୀର ସମ୍ପର୍କ ଅର୍ଥାତ୍ ସେ ଦୁହେଁ ପରସ୍ପରକୁ କେଉଁ ଦୃଷ୍ଟିରେ ଦେଖୁଥିଲେ । ବାପା, ମାଆ ଓ ମାଉସୀଙ୍କ ନେଇ ଏ ଯେଉଁ ତ୍ରିଭୁଜ, ତା'ର ରୂପରେଖ ଯିମିତି ରହସ୍ୟମୟ, ସିମିତି ବିସ୍ମୟକର ତଥା କୁତୂହଳପ୍ରଦ । ସେମାନେ ଏକାନ୍ତରେ ଖୁସିଗପ ଅନ୍ଥାତାମସା ହେବାର ଆମେ ଶୁଣିନାହୁଁ ବା ଟସରୁରି ବା ହସାହସି ହେବାର ଆମେ ଦେଖିନାହୁଁ । ସ୍ନେହ

ପ୍ରୀତି ମମତା ଭାଷା ବିନା ଭାବଭଙ୍ଗୀରେ ବ୍ୟକ୍ତ ହୋଇପାରେ ବା ଅବ୍ୟକ୍ତ ହୋଇ ମଧ୍ୟ ବ୍ୟକ୍ତ ପ୍ରକାଶିତ ହୋଇପାରେ । ଏଇ କଥାକୁ ମନେରଖି ବାପା ଓ ମାଉସୀଙ୍କ ସମ୍ପର୍କର ବ୍ୟବଚ୍ଛେଦ କରାଯାଇପାରେ ମାତ୍ର ।

ମାଉସୀର ଯେଖ୍ ମାଂସ ଥିଲା, ଶୋକଶୋଷ ମଧ୍ୟ ଥିଲା ଧରିନେବାକୁ ହେବ । ବଙ୍ଗାଳ ପ୍ରାନ୍ତରେ କେତେଜଣ ତା'ର ଜାତିଭାଇ ଥିଲେ, ଯେଉଁମାନେ ପ୍ରସ୍ତୁତ ଥିଲେ ତାକୁ ନେଇ ଘରକରି ପାରିଥା'ନ୍ତେ ଆଗ୍ରହରେ । ମାଉସୀ ମଧ୍ୟ ସେମାନଙ୍କୁ ପାଳିପୋଷି ତା'ର ନିଜ ଘରେ ସୁଖ-ସ୍ୱାଚ୍ଛନ୍ଦ୍ୟରେ ରହି ନୂଆ ସଂସାର ଗଢ଼ି ପାରିଥା'ନ୍ତା; ନିର୍ବିଘ୍ନରେ, ନିର୍ବିରୋଧରେ । ଯାହାହେଉ ତା'ର ଚଳିବା ପାଇଁ ଥିଲା, ସୁଅଙ୍ଗ ମଧ୍ୟ ଯଥେଷ୍ଟ ଥିଲା । ତା' ସମାଜରେ ସଙ୍ଗା ପଦ୍ଧତିର ପ୍ରଚଳନ ଥିଲା, ଯାହା ବିବାହର ଅନ୍ୟ ଏକ ସମାଜସ୍ୱୀକୃତ, ଆଇନସମ୍ମତ ପ୍ରଥା ଓ ପନ୍ଥା । କିନ୍ତୁ ମାଉସୀ ସିଆଡ଼କୁ ଗଲା ନାହିଁ, 'କାହିଁକି'ର ଉତ୍ତର ସେ ଦେବ । ବୋଧହୁଏ ଭାବିଲା, ଯାହାର କପାଳରେ କେବଳ ଦୁଃଖ, ସେ ଭଙ୍ଗା ଘରକୁ ପୁଣି ସଜାଡ଼ିବାକୁ ଯିବ କାହିଁକି ? ବରଂ Statusquo ବା ଉପସ୍ଥିତ ସ୍ଥିତି ଭଲ । ବାପାଙ୍କୁ ପଚାରିଥିଲେ ସେ ବୋଧହୁଏ ଇଙ୍ଗିତ ଦେଇଥାଆନ୍ତେ । କେହି କାହାକୁ ପଚାରିବାର ଆବଶ୍ୟକତା ଦେଖି ନ ଥିଲେ ବୋଧହୁଏ ।

“ଦୁଃଖେ ଯାଉଛି ଗଡ଼ା ।” ଆମ ଘର ମଧ୍ୟ ମାଉସୀ ଘର ପରି ଭାଙ୍ଗିଗଲା ପରି ଲାଗିଲା । ଧୂମକେତୁ ଉଇଁଲେ ବା ଗ୍ରହ ଚକ୍ରର ଫେର ହେଲେ ଯିମିତି ଯାହା ହୁଏ, ତାହା ହଠାତ୍ ସଂଘଟିତ ହେଲା । ପ୍ରଥମେ ପ୍ରଥମେ ଏକ ଅହେତୁକ ପାପ, ଆଶଙ୍କା ଆମ ପ୍ରତ୍ୟେକଙ୍କ ମନକୁ ଛୁଇଁଲା, ବଢ଼ି ବଢ଼ି ଆମ ଆକାଶକୁ ଆଚ୍ଛନ୍ନ କରିଗଲା । ସବୁଜ ଖାଲି ଭରି ଭରି ଭାବର ଉଦୟ ଯିମିତି କି ବଜ୍ର, ବିଦ୍ୟୁତ କୁଆପଥର ତଥା ତୋଫାନରେ ଭରପୂର ହୋଇ ଆମ ମୁଣ୍ଡ ଉପରେ ଦୁର୍ଦ୍ଦୈବ ରାଗିମାଗି କଟମଟ ଚାହିଁଛି । ଅଲବଦାମିଆ ନାଟକ, ମେଲୋଡ୍ରାମା, ଅପେରା, ଯାତ୍ରା ସୁଅଙ୍ଗରେ ବା ଶସ୍ତା ଗଳ୍ପ ଉପନ୍ୟାସରେ ଜୋର ଜବରଦସ୍ତ କରୁଣ ପରିବେଶ ଆସିଗଲା ପରି ଆମର ସ୍ରଷ୍ଟା ବା କୁଶଳୀ କଳାକାର ମାଆ ମାଉସୀଙ୍କ ଦୁନିଆଁରେ ସମଧର୍ମୀ ଟ୍ରେଜେଡ଼ି ଆଣି ଦେଲେ । ଯାହା ବିଶ୍ୱାସ କରିହୁଏନା; କିନ୍ତୁ ପ୍ରତ୍ୟସ୍ୱବସ୍ଥାନ ଅବିଶ୍ୱାସ୍ୟ ଘଟଣାବଳୀ

ପଟେ ସହାରରେ ଯାହାର ଦୃଶ୍ୟ ବା ହବି ଅନ୍ୟେ ହବୁ ଅଦେଖିଲ ପଇସା ଦେଇ ଦେଖୁଁ ନ ହେଲେ ଶୁଣୁଁ ।

ପ୍ରଥମେ ଗଲ ମୋ ସ୍ତ୍ରୀ ଚବଣ ବର୍ଷର ମମତା ଭୃଟାଇ । ହଠାତ୍ ତା' ମଥା ବଗିଡ଼ିଗଲ ମୋର ହହଜ ସାମାନ୍ୟ ବ୍ୟାଧିକୁ ଦୁରାରୋଗ୍ୟ କରି । କେତେବେଳେ କମିତ ସୁସ୍ଥ ଥିଲବେଳେ ମାଉସୀକ ଡାକ କୁହେ, "ମାଉସୀ ସ୍ବାଙ୍କ କଥା ବୁଝିବ ।" ମାଉସୀ କୁଆଡ଼େ ମୋ ଚଥା ବୁଝିବ ! ତା' ନଜ ଦୁଃଖ ହହିବ ନା ବାପାଙ୍କ ଅଲ ଢଲ ଷଗ୍ର ହହିବ ନା ମୋ ପରି ଅଠବ କଥା ବୁଝିବ !

ମାଆର ଯନ୍ତ୍ରଣ ଖୁବ୍ କରୁଣ । ପେଟ ରୋଗରେ ଦନରାତ ଛଟପଟ ହୋଇ ବହୁଦନ କଷ୍ଟ ପାଇଲ । ସବୁବେଳେ ବାପାଙ୍କୁ ଖୋଜୁଥାଏ ପାଇଲେ କୁହେ, "ମୋ ପାଖରେ ବସିଥାଅ, ଉଠିବନ କଂାା, ମୋ ହାତଟା ଧରି, କପାଳରେ ରଖିଥାଅ ତୁମ ହାତ, ପେଟରେ ଭାର କଷ୍ଟ, ଟିକେ ତଳପେଟରେ ହାତଟା ବୁଲାଉଥାଅ ।" ପେଟରେ ହଦାରୁଣ ଯନ୍ତ୍ରଣା ଢନେ ନ ଥିଲବେଳେ ମାଆ ବାପାଙ୍କୁ ନରମ ଗଳାରେ କହିବାର ଶୁଣିଛୁ "ତୁମର କଛୁ କରିପାରଲନ, ଜୀବନରେ ଅବଶୋଷ ରହିଗଲ; ହବୁଦନ ତ ରୋଗିଣୀ, ଗଣ୍ଡା ଗଣ୍ଡା ପୁଅଝିଅ ତୁମକୁ ଦେଲ ସିନା, ତୁମକୁ ଜୀବନରେ ସୁଖ ଦେଇ ପାରଲନ; ଖାଲ ହଇରାଣ ହରକତ କଲ ଯାହା ।"

ମରିବାର ପୂର୍ବଦନ ଘଟଣା । ଗରମ ପାଣି ବୋତଲଟା ମାଉସୀ ମାଆ ତଳପେଟରେ ରଖି ସେକ ଦେଉଥାଏ ଚୁପ୍‌ଚାପ୍ ବସି ମାଆ ମୁହଁରେ କରୁଣ ଦୃଷ୍ଟି ପକାଇ । ବାପା ମାଆର କପାଳରେ ବେଳେବେଳେ ତାତ ପରୀକ୍ଷା କରିବା ପାଇଁ ହାତ ରଖୁଥାନ୍ତି; ଆଉ କେତେବେଳେ ବାଙ୍କି ଯାଉଥିବା ଅସ୍ଥିଚର୍ମସାର ଆଙ୍ଗୁଳିଗୁଡ଼ାକୁ ହଳଖ ରଖିବାର ଚେଷ୍ଟା କରୁଥାଆନ୍ତି । ମାଆ ମାଉସୀ କ ଗୁହି କହିଲ, "ମୋ ପାଇଁ, ପ୍ରଶାନ୍ତର ବାପା ପାଇଁ, ଛୁଆପିଲଙ୍କ ପାଇଁ ଜୀବନଯାକ ଢେର କରିଛ ! ମୁଁ ପୋଡ଼ାମୁହିଁ ନାଆଁକୁ ମାତ୍ର ସ୍ତ୍ରୀ, କାମକୁ କଛୁ ନାହିଁ । ତାଙ୍କ କଥା ଉତେ ଲଗିଲ ।" ବାପାଙ୍କ ଆଖିରୁ ଲୁହ ଟୋପାଏ ମାଆର ଗାଲରେ ପଡ଼ିବାର ଦେଖିଛୁ ।

ତହିଁ ପରଦନ ମାଆ ଚାଲଗଲ ବାପାଙ୍କ ଦାୟିତ୍ୱ ଏହିମତେ ମାଉସୀକ ଅର୍ପଣ କରି । ମାଆ ଯିବା ପରେ ଛଅନାଟି ବର୍ଷ ବେଶ୍ ଆରାମରେ ବାପା କଟାଇଲେ;

ମାଆର ଅଭାବ ସେମିତ କିଛୁ ଅନୁଭବ କରିପାରିଲେନି । ମାଆ ମାଢ଼ଦୀ ଦୁହେଁ ଲକ୍ଷ୍ମୀ ସରସ୍ୱତୀ ପରି ନାରାୟଣଙ୍କ ସେବାରେ ଏକଜିଦ ବହୁ ବର୍ଷ କଟାଇଥିବାରୁ ମାଆ ମାଢ଼ଦୀରୁ ଜଣକର ଅଭାବ ଘଟିଲେ ବାପାଙ୍କୁ ବିଶେଷ ବାଧୁ ନଥିଲା । ସୁତରାଂ ବୁଢ଼ା ବୟସରେ ପତ୍ନୀ ବିୟୋଗ କଷ୍ଟରେ ସେ ଖାଇଁ ପଡ଼ିଲେ ନାହିଁ, ବରଂ ଉଭୟ ମା'କୁ ଓ ମାଢ଼ଦୀକୁ ଭଲ ଭାବରେ ସେଇ ଗୋଟିଏ ବିଧବା ନାରୀ ଭିତରେ ପାଇପାରିଲେ ।

ବୁଢ଼ାମାନେ ସାଧାରଣତଃ ଯେମିତି ପାଚିଲା ପତ୍ରପରି ଅଳ୍ପ ପବନରେ କେଉଁଠି ଦେଖୁ ନଥିବା ବେଳେ ଝଡ଼ିପଡ଼ନ୍ତି, ବାପାଙ୍କର ସେମିତି ହେଲା ନାହିଁ । ସେ ଢେର ଦିନ କଷ୍ଟ ଭୋଗିଲେ । ତାଙ୍କ ଦେହଯାକ ଏକଜିମା ପରି ଘାଆ ଛିଡ଼ ହୋଇଗଲା । ସେ ଘାଆର କେତେବେଳେ କାଉ୍ଳରୂପ ଆଉ କେତେବେଳେ କାନ୍ଦୁରାରୂପ କେତେ-ବେଳେ ପୁଣି ଶୁଷ୍କ ରୂପ । ଖୁବ୍ କଦର୍ଯ୍ୟ ଜାଗାର ଘାଆ । ମୂଳପାଣି ଝରିବାକୁ ଆରମ୍ଭ କଲେ ବନ୍ଦ ହୁଏନି । ଘରଯାକ ପୂତିଗନ୍ଧମୟ । କ୍ରମେ ଏମିତି ଅବସ୍ଥା ହେଲା ଯେ ସେ ଠାଏଁ ପଡ଼ିରହିଲେ । ଏମିତି ଅବସ୍ଥା ଚେହେରା ତାଙ୍କର ହେଲା ଯେ ଦାଇପଡ଼ଶା ବନ୍ଧୁବାନ୍ଧବ କେହି ଦେଖିବାକୁ ଆସିଲେ ନାହିଁ । ଘୃଣାଆଡ଼େ ଦୂରହେଲା ବାପାଙ୍କୁ ବଡ଼ଭୋଗ ହୋଇଗଲା । ମୁଁ ବଡ଼ ପୁଅ; ଫଳନ୍ତବନ୍ଧ ସେ ବାପାଙ୍କ କିଛୁ ଅବଶୋଷ ଯେମିତି ନରୁହେ । ତଥାପି ତାଙ୍କ ଫୁଲମୁହଁ ଗୋଡ଼ ହାତରେ ଘାଆ ଦେଖିବାକୁ, ପାଖକୁ ଯିବା କଥା ଗୁଡ଼, ମୋର ବି ଭୟ ଘଣା ହେଲା ।

ମାଢ଼ଦୀ ଘରକୁ ଯାଏ ନାହିଁ । ଦିନରାତି ବାପାଙ୍କ ପାଖରେ, ବାପାଙ୍କ ସେବାରେ, ଗୁହମୂତ ପୂଜରକ୍ତରେ ସାର୍ଣ୍ଣିଚକଟି ହୋଇ ବାପାଙ୍କୁ ଦଫାସୁତୁରା ରଖିଥାଏ । ଏତେ ସେବା, ଏତେ ଧ୍ୟାନ, ନିଷ୍ଠା ଗୁର ଢାମୁରୁଣୀଟାଏ; ନୀଚ ଶ୍ରେଣୀର ଅଥଚ ତା'ର ଅନ୍ୟ ଏକ ରୁଗ୍ଣ ପୁରୁଷ ପ୍ରତି ଏତେ ଶ୍ରଦ୍ଧା, ଏତେ ମମତା । ମୋ ବାପାଙ୍କୁ ମାଢ଼ଦୀ ତା'ର ମୃତ ପୁତ୍ରର ସ୍ୱର୍ଗତ ପିତା ବୋଲି ଭାବୁଛି ନା କ'ଣ ଏବଂ ନିଜ ସ୍ୱାମୀଙ୍କି ଯେଉଁ ସେବା ଦେଇପାରିନି ସେ ମୋ ମାଆର ସ୍ୱାମୀଙ୍କି ଡବଲ ଡୋଜ୍‌ରେ ବୋଧହୁଏ ଦେଉଛି ।

ରାତିଯାକ ବାପାଙ୍କୁ ନିଦ ହୁଏନି । ଔଷଧ ବି ଦଉନ୍ତେ, ପରେ ଅନିଦ୍ରା କରାଏ । ଯେଉଁ ମାଢ଼ଦୀ କେବେ ଦିନେ ରାତିରେ ଆମ ଘରେ ଶୋଇନଥିଲା ସେ ବାପାଙ୍କ

କୋଠରୀରେ ଛୁଣ୍ଡା ସଅପଟାଏ ପାରି ଖଟତଳେ ଶୋଉଥାଏ । ସବୁଯାକ କଅଣ ଭୁଟ୍‌ରୁ ଭୁଟ୍‌ରୁ ବୁଝେଁ ହେଉଥାନ୍ତି । ମାଉସୀଙ୍କି ଦିନେ କହିଲି "ମାଉସୀ ! ତୁମ ବୁଝିଙ୍କୁ ଘରେ ନିଦ ହୁଏନି କି ? କ'ଣ ଏତେ କଥାବାର୍ତ୍ତା ସବୁଯାକ ହେଉଥାଅ ?" ମାଉସୀ କହିଲି, "ଅର୍‌ ଜନ୍ମ୍‌ କଥା ହବାରେ ବାପା ! ସେଇ ତର୍‌ ମାଥର କଥା । ସେଇ ଗୁଟିଏନି କଥା ଆମର । ତର୍‌ ମାଆର କଥା ।"

ଆମେ ବେଶ୍‌ ଜାଣିଲୁଣି ବାପା ପଡ଼ିଛନ୍ତି ମହାପ୍ରସ୍ଥାଣ କରିବେ । କେନସାର ଯା' ଅପେକ୍ଷା ଭଲ ରୋଗ । ତା'ର ସୀମା ଅଛି । ଏ ନିଉକ୍ଳିଆ ରୋଗର ଶେଷ ନାହିଁ ସିମିତ । ମାଉସୀ କିନ୍ତୁ ଆଶାବାଦୀ; ଗଭୀର ଈଶ୍ୱର ବିଶ୍ୱାସ ତା'ର । ପ୍ରଶାନ୍ତର ବାପାର କିଛି ହବନି । ଟିରେ ସିନା ମଣିଷ ବିଧବା ହୁଏ, ଦି'ଥର ସେ ବିଧବା ହବନି । କିନ୍ତୁ ମାଉସୀର ସକଳ ଈଶ୍ୱର ବିଶ୍ୱାସ, ସେବା, ନିଷ୍ଠା, ଆଶାବାଦ ଅର୍ଥହୀନ ହେଲା । ବାପାଙ୍କର ଦେହର ମାଂସ ସିମିତ ଗଳିବାକୁ ଆରମ୍ଭ କଲା, ମାଉସୀର ମାଂସ ବି ସିମିତ ଉଦେଇବାକୁ ଆରମ୍ଭ କଲା ଏବଂ ଅଳ୍ପ ଦିନରେ ସେ ବି ଅସ୍ଥିଚର୍ମ ହୋଇଗଲା ପ୍ରଶାନ୍ତର ମାଆ ପରି ।

ବାପାଙ୍କର ପ୍ରଲାପ ଆରମ୍ଭ ହେଲା । କ୍ଷୀଣ ଗଳାରେ ସେ କହୁଥାନ୍ତି, "ମାଂସ ମାଂସ । ମାଂସ କାହିଁ ମିଳିବନି ? ମାଂସ, ମାଂସ, ମାଛ ନୁହେଁ ।" ମୁଁ ପାଟିକରି କାନ ପାଖରେ କହିଲି, "ବାପା ! ହରି ହରି କୁହ । ରାମ ରାମ କୁହ ।" ତାଙ୍କ ପାଟିକୁ ମରା ମରା ବି ଆସିଲା ନାହିଁ ।

ଦିନେ ମୋର ସବା ସାନପୁଅ ( ସେ ବି କାଳବଳେ ଅଭିନୟ ସାରି କଳଙ୍ଗ୍‌ରେ ଦଶବର୍ଷ ବୟସରେ ଗ୍ଳନ୍‌ଗଲା; ଅଭିପ୍ରେ ବଂଶ ନା କ'ଣ !!! ) ଭୁଲରେ ତାଙ୍କ କୋଠରୀରେ ପଶିଗଲା । ବାପା ଖୁବ୍‌ ଶରଧାରେ ଡାକି କହିଲେ, "ବାବୁରେ ! ଟିକେ ମାଂସ ଆଣିପାରିବୁ ?" ସିଏ କହିଲା, "ମୁଁ କେଉଁଠୁ ମାଂସ ପାଇବ ?" ବାପା ତାକୁ ବୁଦ୍ଧି ଦେଇ କହିଲେ "ଅରେ ବୋକା ! ଦେଖିବୁ, ବିଲରେ ପଡ଼ିଆରେ ଚଳପଳ ହେଲା ଚରୁଥିବେ । ତୁ ଟିକିକାଉଡଟା ଧରି ଯାଆ । ମାଂସ ନ ପାଇଲେ ଚପ୍‌ କରି ଛେଳିକୁ ଟେରି ତା' ଲଞ୍ଜରୁ ଟିକିଏ କାଟିଆଣି ଧାଇଁଆସିବୁ । ଖାଇବା ପେଟେ ପେଟେ ।"

ପୁଅ ସ୍ୱୀତସ୍ୱସ୍ତ ହୋଇ ଅସି ମୋତେ ଦେବୁକଥା କହିଲା ଏବଂ ଯୋଡ଼ିଲା "କେକେଙ୍କ ମୁଣ୍ଡ ଖପ୍ପର; କଞ୍ଚା ଦେଲ ମାଂସ, ହେଲ ଲଷ୍ଟ ଖାଇବେ କହୁଛନ୍ତି ।"

ମୁଁ ନିଶ୍ଚିତ ରୂପେ ଜାଣିଗଲି ବାପାଙ୍କର ମାଂସର ଅବଶୋଷ ହୋଇଯାଇଛି । ସେ ଅବଶୋଷ ମାଆ କି ମାଉସୀ ଦୂର କରିପାରି ନାହାନ୍ତି ସେମାନଙ୍କ ସବନ୍ଧରେ । ମାଂସ ପ୍ରତି ମଣିଷର ଏତେ ଲୋଭ ! ମଣିଷ ନା ରାକ୍ଷସ ! ପୁଣି କଞ୍ଚା ମାଉଁସ !

ଡାକ୍ତରମାନଙ୍କ ଭାଷାରେ ଯାହାକୁ 'କମା' କୁହାଯାଏ ବାପାଙ୍କର ସେଇ ଅବସ୍ଥା ଆସିଲା । ଦିନେ ସକାଳେ ଶେଷ ହାକୁଟି ଅସିଲା । ପାଟି ଆଁ କରି ଚିତ୍ ହୋଇ ପଡ଼ିଥାନ୍ତି । ଜଣେ କହିଲା "ପାଣି ମାଗୁଛନ୍ତି । ବଡପୁଅ ହାତରେ ରୂପା ଶାମୁକାରେ ଠାକୁର ଗାଧୁଆ ପାଣି ପାଟିରେ ଦେଲା । ପାଣି ତଣ୍ଟିରେ ସିଧା ପେଟକୁ ଗଳିଗଲା । ହାକୁଟି ବନ୍ଦ ହେଲା ନାହିଁ । ମାଉସୀ ଦେଖିଲା ଏବଂ ଧାଇଁ ଧାଇଁ ଖଟତଳୁ ଶିଶିଟାଏ ଅଣି ସେଥିରୁ ଦୁ' ଟୋପା ବାପାଙ୍କ ପାଟିରେ ଢାଳିଦେଲା । ଶୋଷ ଅବଶୋଷ ଦେଇ ଦୁ'ଟୋପାରେ ମେଣ୍ଟିଗଲା ସିମିତ । କେତେବର୍ଷ ତଳେ ମାଉସୀ ତା'ର ସ୍ୱାମୀକୁ ଏଇ ବୋତଲରୁ ଗଙ୍ଗାଜଳ ଦେଇଥିଲା । ବାପାଙ୍କ ହାକୁଟି ବନ୍ଦ, ପାଟି ବନ୍ଦ ଏବଂ ଅଖିଯୋଡ଼ିକ ମଧ୍ୟ ବନ୍ଦ ।

ବାପାଙ୍କ ମୁର୍ଦ୍ଦାର ଉଠିଯିବାର କେତେ ସମୟ ପରେ ମାଉସୀ ଆମ ଘରୁ ଅନ୍ତର୍ଦ୍ଧାନ ହୋଇଗଲା ଆମେ କେହି ଜାଣିପାରିଲୁଁ ନାହିଁ । ତା'ର ରହିବାର ବୋଧହୁଏ ଆଉ ଆବଶ୍ୟକତା ନଥିଲା । ଆମେ ବ୍ୟସ୍ତ ରହିଲୁଁ ଶୋକପାଳନ ଓ ଶୌଚକ୍ରିୟାରେ ।

ଦିନେ ଦୁ'ଦିନ ପରେ ଶୁଣିଲି ମାଉସୀର ଦେହ ଖୁବ୍ ଖରାପ । ସେ କୋଠରୀ ଯୋଡ଼ପାଡ଼ ହୋଇ ଛିଣ୍ଡା ପଟିଆରେ ପଡ଼ିଛି । ଦେହରେ ଖୁବ୍ ତାତି । ଉଠିବାର ବସିବାର ଶକ୍ତି ନାହିଁ । ପାଣି ମୁନ୍ଦେ ଦେବାକୁ ପାଖରେ କେହି ନାହିଁ ।

ଅଶୌଚ ଅବସ୍ଥାରେ ବି ମୁଁ ଛଅଦିନ ଦିନ ଜୀବନରେ ପ୍ରଥମ ଥର ମାଉସୀର କୁଡ଼ିଆକୁ ଗଲି । ଦେଖିଲି, ମାଉସୀ ଭୂଇଁ ସାଙ୍ଗରେ ମିଶିଯାଇଛି । ଯେପରି କି ତା'ର

ଚନ୍ଦ୍ରମାଂସକୁ କିଏ କାହାଣୀ ଚୁହାଁଇ ଶୋଷି ଖାଇଦେଉଛୁ । ମୋତେ ଦେଖି ସେ ବହେ କାନ୍ଦିଲା; କୋହ ଉଠାଇ, ସାରା ଦେହ ଥରାଇ । ରହି ରହି ଧୀରେ ଧୀରେ କହିଚାଲି, "ଅର ନାହିଁ ବସ୍ତ୍ରାରେ ବାପା ପରଶାନ୍ତ ! ଅଉ ମର ବୁଲି କିଏ ଅଛୁ ଯେ କହିବ ? ତର ବାପା ତ ଚାଲିଗଲେ; ଏ ବାପା ପରଶାନ୍ତ ! ଗୁଟେ କଥା କରିବୁ ! ତର୍ ବାପା ଜୀବନ୍ ଥାଉ ଆର ଗେଲବେଲକୁ ବେଟୁ ମାଆଁସ ମାଆଁସ ହେଉଥିଲେ । ବାରଦିନରେ ବାହ୍ମଣମାନଙ୍କେ ବେଜାଏ ବେଜାଏ ବଡ଼ିଆ କଲା ଖାସିର ମାଆଁସ ଦବୁ । ଅର୍ ବଡ଼ ଦନା ଗୁଟାକରେ ଭରତି ଦନାଏ ମାଆଁସ କଲାବାଡ଼ିରେ ରଖିଦବୁ ଯେ, କୁଆମାନେ ଥୁଣ୍ଟରେ ଧରି ନେଇଯିବେ ତର୍ ବାପା ପାଖକୁ । "ତାଙ୍କର ଅବଶୁଷ ମେଣ୍ଟିଯିଆକ୍ ।"

ଦ୍ୱାଦଶାହ । ବନ୍ଧୁମିଳନ । ଗୁଡ଼ଖାଇ । ମାଛ, ମାଂସ ଭୋଜିଭାତରେ ଦିନ । ଗୋଟାଏ ବଡ଼ କଳା ଟେକିଆ ଛେଳି କିଣାଗଲା । ଓସ୍ତାଦ୍ ଷୋଷେଯ୍ୟା ହାତରେ ମାଂସର ମସ୍ତକ ଘରବାହାର ଗୃହଆଡ଼େ ଫେଲି ବୁଲୁଥାଏ । ପୁଣି ଖିଅଲ୍ ପଶିଲା । କହିଲା "ମାଂସହଣ୍ଡା ଚୁଲ୍ଲୀରୁ ଓହ୍ଲାଇ ବାପା ଯେଉଁଠି ଶୋଉଥିଲେ ସେଇଠି ରଖିଦିଅ । କଳକଳ ଟବଟବ ହୋଇ ଫୁଟୁଥାଉ । କବାଟ ବନ୍ଦ କରି ରଖିଦିଅ ଦଣ୍ଡେ । ବାପାଙ୍କ ଅତୃପ୍ତ ମାଂସାଶୀ ଆତ୍ମା ଯେତେଇଚ୍ଛା ଆଘ୍ରାଣ କରି ପରିତୃପ୍ତ ହେଉ । ତାହା ହିଁ ହେଲା । ମାଂସରେ କାହାରି ଅବଶୋଷ ରହିଲା ନାହିଁ ।

ମାଉସୀର ଦୂର ସମ୍ପର୍କୀୟ ଲେଖାଯୋଖା ଭଉଣୀଟିଏ ଆମ ଘରେ ରହିଥିଲା । କହିଲା, ଯାହା ଯାହା ଖାଇବାର ହୋଇଛି ଦବୁଥିବୁ କିଛି କିଛି ମିଶାଇ ଦନାଏଁ ଖୋଲ ଚହିତ ପଟରେ ଦେଇଆସ ତ ।" ନେଇଗଲା ସେ ଏବଂ ଦଶ ମିନଟ୍ ପରେ ଫେରିଆସି କହିଲା, "ଏ ବାବୁ ! ତୁମେ ଯେ ରକମ କହିଥିଲ ସବୁ ନେଇ ତା'ର ମୁହଁ ପାଖରେ ବାଢ଼ି ଦେଲି । ଯେତେ ଡାକିଲି ଶୁଣିଲା ନାହିଁ ବେଲକୁ ତା'ର ମେଲା ପାଟିରେ ଖୋଲି କେତେ ଟୋପା ପକେଇ ଦେଲି । ଏ ବାପା ! ସେତକକୁ ଯେମିତି ତା'ର ଅଣ୍ଟା ଥିଲା । ହାଙ୍ଗେ ସାଙ୍ଗେ ଘଡ଼ର ଘଡ଼ର ବନ୍ଦ, ପାଟି ବନ୍ଦ । ସବୁ ଅବଶୋଷ ମେଣ୍ଟିଗଲା ତା'ର ଯିମିତି ।

ମାଢ଼ସୀର ଝୁଙ୍କି କ ଗଲା । ମା'ର ଅସ୍ମାର ହଦ୍‌ଗତ ପାଇଁ ଯେମିତ ପ୍ରାର୍ଥନା କରିଥିଲି, ମାଢ଼ସୀ ପାଇଁ ବି ଠିକ୍ ସେମିତ କଲି । ତା'ର ମାଟିଆ ରଙ୍ଗର ଦେଶୀ କୁକୁରଟା ତା' ଦଦ୍ବକୁ ଲାଗି ପ୍ରେମ ଖୋଜୁଥାଏ । ମାଆ ମାଉସୀ ଆଉ ମୋ' ନିଜ ସ୍ତ୍ରୀକୁ ଏକାଠି ଦେଖିବାର ଅବଶୋଷ ମୋର ମେଣ୍ଟି ଗଲା ।



# ପୁଅ ହେଉ ବା ଝିଅ ହେଉ

ଦାଣ୍ଡ ଦରଜା ଯେମିତି ମେଲା ଥିଲା । ସିଧା ଚାଲିଗଲି ଶୋଇବା ଘରକୁ ; ମୁନୁ, ପିଙ୍କି, ରାନୁଙ୍କୁ ଦେଖିବା ପାଇଁ ।

ପଶିଯାଉଛୁ, ଦେଖିଲି ସେମାନଙ୍କ ମାଆକୁ । ମାଆ ନା ମାଆର ଭୂତ ? ଯିମିତି ମତେ ଦେଖିଦେଇଛୁ ସେ କି ଚମକିପଡ଼ି ଦପାଦ ଘୁଞ୍ଚିଯାଇ ଖଟ ପାଖରେ ଛିଡ଼ାହେଲା ପିଲାମାନଙ୍କୁ ଜଗି, କାଳେ ମୁଁ ସେମାନଙ୍କୁ ଡରେଇବି । ସେ ବି ମୋତେ ବୋଧହୁଏ ଭୂତ ବୋଲି ଭାବିଥିଲା । କାରଣ ଆମେ ଦୁହେଁ ଅଧଘଣ୍ଟାଏ ଆଗରୁ ପ୍ରତିଯୋଗିତା କରିଥିଲୁ କିଏ ଆଗ ଆତ୍ମହତ୍ୟା କରିବ ।

ମୁନୁ, ପିଙ୍କି, ରାନୁଙ୍କୁ ଖୁଆଇ ପିଆଇ ଶୁଆଇ ସେ ଆଗ ବାହାରିଗଲା, ମୋ ଆଡ଼କୁ ନଚାହିଁ । ରାତି ସେତେବେଳକୁ ପ୍ରାୟ ସାଢ଼େ ଅଠଟା ହେବ । ସିଏ ତ ଚାଲିଗଲା ମୁଁ ବା ବଞ୍ଚି ରହି ଲାଭ କ'ଣ ? ଏ ଝିଅ ତିନିଟା ମତେ ପାଳିବେ ? ତା ଛଡ଼ା ମୁଁ ବି ରାଣ ନିୟମ ପକାଇ ସଙ୍କଳ୍ପ କରିଛି ଆତ୍ମହତ୍ୟାର । ସିଏ ଯଦି କୌଣସି କାରଣରୁ ଆତ୍ମହତ୍ୟା କରି ନପାରି ଘରକୁ ଫେରିଆସେ ଏବଂ ମତେ ବଞ୍ଚିଥିବାର ଦେଖେ, ତେବେ ତୁଚ୍ଛ ତାଚ୍ଛଲ୍ୟରେ ହସି ମତେ ଶୂନ୍ୟକୁ ଉଡ଼ାଇ ଦେବ । ମୁଁ ବି ତେଣୁ ବାହାରି ପଡ଼ିଲି । ମୁନୁ, ପିଙ୍କି, ରାନୁ ତ ଶୋଇଛନ୍ତି । ଭୟ କ'ଣ ? ସଞ୍ଜବେଳଟା-ଯାକ କାନ୍ଦିବେ, ଯାହାଦିନ ସେତେ କାଳ ଲାଗିଛି ତାର ଏକାବେଳକେ ଗୋଟାଏ ନିଷ୍ପତ୍ତି ହୋଇଯିବ; ଏମିତି ବିରାଡ଼ି କୁକୁର ପରି କଳି ଝଗଡ଼ା ଏପରିକି ଠେଙ୍ଗାଧରି ମାରପିଟ୍ ପର୍ଯ୍ୟନ୍ତ ଯାଇ କେତେଦିନ ଆମେ ବଞ୍ଚିବୁ । ଦାଣ୍ଡପଡ଼ିଶାଙ୍କ ଆଗରେ ମୁହଁ ଦେଖାଇବୁ କେମିତି ?

ଅଥଚ ଆମର କେଉଁଥିରେ ଅଭାବ ନାହିଁ । ଯୌବନ ଅଛି, ଧନ ସମ୍ପତ୍ତି ପ୍ରଚୁର ଅଛି । ଆଉ କ'ଣ ଦରକାର ବଞ୍ଚିବା ପାଇଁ ? ସସମ୍ମାନ ସମାଜରେ ବନ୍ଧୁବାନ୍ଧବ ମେଳରେ ବଞ୍ଚି ରହିବା ପାଇଁ ? ପୁଣି ଆମ ଦୁହିଁଙ୍କ ରାଜଯୋଟକ । ଏକା ରାଶି, ଏକା ନକ୍ଷତ୍ରରେ, ଏକା ଗୁରୁବାରରେ, ଏକା ମୀନ ଲଗ୍ନରେ ଆମ ଦୁହିଁଙ୍କ ଜନ୍ମ । (ବଢ଼ଦା ଗଣକ ବାହାଘର ବେଳେ ବାପାଙ୍କଠୁଁ ପଇସା ନେଇ ଗଣଗୁନ୍ଥା କରିଥିଲା ! ମଲା ବି ନକେ ସିମିତ; ତା ନିଜ ପୁଅ ତା'କୁ କୁରାଢ଼ିରେ ମାଆ ସାଙ୍ଗରେ ମିଶି କେଚ ମାରିଦେଲା ପରା ! ଠିକ୍ ହୋଇଛି, ନିଜ ଜାତକଟା ଠିକ୍ ଦେଖିଥିଲେ ଏମିତି ଅପମୃତ୍ୟୁ ହୋଇଥାନ୍ତା ! )

ପ୍ରକୃତରେ ବିବାହ ପରେ ପୂରା ପାଞ୍ଚ ବରଷ ଆମେ ଏକ ଅସ୍ଥାରେ ହସଖୁସି କେତେ ଆନନ୍ଦ ଉତ୍ସବରେ କାଳ ନ କଟାଇଛୁ ? ଏ ଅସ୍ୱସ୍ତିତା ବେଗଟା ଏବେ ଦୁହିଁଙ୍କି ଗ୍ରାସିଛି ରାଜୁର ଜନ୍ମ ପରେ ପରେ । ମୁନୁ ଜନ୍ମପରେ ଆମେ ଦୁହେଁ ଖୁବ୍ ବେଶୀ ଖୁସି ନ ଥିଲେ ବି ସୁଖୀ ଥିଲୁ । ଦୁହିଁଙ୍କ ମତ ସମାନ, ପ୍ରଥମ ପିଲାଟି ଝିଅ ହେଲେ ଭଲ । ପିଙ୍କୁ ଜନ୍ମ ହେଲାବେଳକୁ ଏକୋଇଶିଆ, ଅନ୍ନପ୍ରାଶନ୍ନ ଆଦି କର୍ମ ଅଡ଼କୁ ମୋଟେ ମନ ଗଲା ନାହିଁ । ଦୁର୍ଯୋଗକୁ ଆମ ସାଙ୍ଗସାଥୀଙ୍କ ଗୋଟାକ ପରେ ଗୋଟେ ପୁଅ ହେବାର ଦୁଃସମ୍ବାଦ ଆମ କାନକୁ କ୍ରମାଗତ ଆସୁଥାଏ । ଆମେ ଅତି ନିମନ୍ତ୍ରଣ ରକ୍ଷା କରୁ ନ ଥାଉ, ମନକଷ୍ଟ ଏଡ଼ିବା ପାଇଁ ସମସ୍ତଙ୍କ ପୁଅ ପରେ ପୁଅ !

ପିଲାବିଲା ପାଇବାର ଓରମାନ ମେଣ୍ଟି ଆସୁଥାଏ । ସ୍ତ୍ରୀ କହିବାକୁ ଆରମ୍ଭ କରିଥାନ୍ତି, "ବୋଟ୍ ବୋଟ୍ ଝିଅ ଜନ୍ମ ହୋଇ କ'ଣ ଆମ ବଂଶ ଉଦ୍ଧାର କରିବେ ?" ଝିଅ ଦୁଇଟି କିନ୍ତୁ କେତେ ସୁନ୍ଦର, ଦୁଇଟିଯାକ ଅବିକଳ ତାଙ୍କ ମାଆ ପରି । କେଡ଼େ ସୁନ୍ଦର ସୁନ୍ଦର ଆଖି, ନାକ, ଚୁଳ, ରଙ୍ଗ ! ଗୁଲୁଗୁଲିଆ, କେତେକେତେ ଗୁହରେ ହେବେ ବୋଲି ତୁଳସୀ ପରି ଦୁଇ ପଟରୁ ଜଣା ପଡ଼ିଲାଣି । ଦ'ଟା ତ ! ଆମର କ'ଣ ଅଭାବ ଅଛି ଯେ । ଦ'ଟାକୁ ଦ' ଲକ୍ଷ ତ, ଆଉ କେତେ ଫିକ୍ସଡ଼ ଡିପୋଜିଟରେ ଟଙ୍କା ରଖିଦେଲେ ତ ହେଲା ! ତା'ଛଡ଼ା ପୁଅ ଆଜି ହେଉନି, କାଲିକୁ ତ ହେବ ।

ମାଡ଼ଗୁଲି ଏବଂ ମାଡ଼ଗୁଲିଙ୍କୁ । ବିଜ୍ଞାନୀ, ଡାକ୍ତରମାନେ ଏତେକଥା କଲେ; ପେଟ ଭିତର ଝିଅଟାକୁ ପୁଅ ପାଲଟିଯିବାର ବ୍ୟବସ୍ଥା ଆମର ସବୁ ସମ୍ପଦ ନେଇକରି ପାରିଲେନି ! ଏବଂ ଆମର ସମସ୍ତ ଆଶଙ୍କାକୁ ଫଳବତୀ କରି ଜନ୍ମହେଲି ରାନୁ । ତଣ୍ଟି ଚିପି ତା ମାଆ ମାରିପାରିବନି କହିଲା, ମାରିଦେବ କହିଥିଲେ ବି ମୁଁ ନା' କରିଥାନ୍ତି ଏବଂ କୁନିଝିଅର ତଣ୍ଟିରୁ ତା'ର ଲମ୍ବା ଲମ୍ବା ଆଙ୍ଗୁଳିଗୁଡ଼ାକୁ ଫିଟାଇ ଆଣିଥାନ୍ତି ।

ହେଲେ କାଳକ୍ରମେ ମୋର ବି ମାନସିକ ବିକାର ଆସିଲା; ନିଜକୁ ଧିକ୍କାର କଲି, ତାକୁ ପୁଅ ଦେଇପାରିଲି ନାହିଁ; ତାକୁ ଧିକ୍କାର କଲି ଯେ ମୋ ପୂର୍ବପୁରୁଷଙ୍କ ପିଣ୍ଡ ବୁଡ଼ାଇଦେଲା ବୋଲି; ଭଲା ଘୋଡ଼ାମୁହାଁ ପୁଅଟାଏ ଜନ୍ମ କରିଥାନ୍ତା । ବିଧାତାକୁ ଅକଥା ଭାଷାରେ ଗାଳିଦେଲି; ଏତେ ପୂଜାଅର୍ଘ୍ୟ ସତ୍ତ୍ୱେ ସାମାନ୍ୟ ଲିଙ୍ଗ ପରିବର୍ତ୍ତନ କାମଟା ତାଙ୍କ ଦେଇ ହେଲାନି, ଏଡ଼େ କାଠୁଆ ଠାକୁରଟା !

ସ୍ତ୍ରୀ ତେଣେ ଭାବୁଥିଲେ ପୁଅ ଜନ୍ମ ନ କରିବା ଯାହା ଆଣ୍ଟୁକୁଡ଼ୀ ହେବା ତାହା । ତଳ ସାହିରେ ଖ୍ୟାମା, ଦୁଃଖୀ, ରମା, ଟେପା, ଝୁଣ୍ଟୁରୁ ସମସ୍ତଙ୍କ ଗୋଟାକୁ ଗୋଟା ବର୍ଷକୁ ବର୍ଷ ପୁଅ ଲମ୍ବା ଧାଡ଼ି ଧରି ଆସୁଛନ୍ତି, ଅଥଚ ଆମର··· । ଯାଇ ପଡ଼ିଶା କହିଲେ, "ସବୁ ଅଛି, ପୁଅ ନାହିଁ ।"

ଲୋକଙ୍କୁ, ଠାକୁରଙ୍କୁ କାହିଁକି ଦୋଷ ଦେବା ? ଆମ ନିଜର ଅକ୍ଷମତା । ଆମେ ଦୁହେଁ ଭାବିନେଲୁ । ସବୁବେଳେ ଚଡ଼ଚଡ଼ ଭାବ; ସେଇ ଆଖି, ସେଇ ନାକ, ସେଇ ଅବୟବ ଇନ୍ଦ୍ରିୟଗତି ରହିଛି, ଅଥଚ କିଏ ଯେମିତି ଗୁଣି ଗାରେଡ଼ି କରିଦେଲା । ଆମେ ଦୁହେଁ ଭିଡ଼ଫାଟ୍ ଢରିବାକୁ ଆରମ୍ଭ କଲୁ । ଏକ ଶଯ୍ୟା ପରିବର୍ତ୍ତେ ପୃଥକ୍ ଶଯ୍ୟା କେବଳ ନୁହେଁ ପୃଥକ୍ କୋଠରୀର ବ୍ୟବସ୍ଥା ହେଲା । ମୋ ଭାଗରେ ମୁନୁ, ପିଙ୍କୁ ସେ ଦୟାକରି (ବାଧ୍ୟ ହୋଇ) ରାନୁକୁ ନେଲେ । ଏଇ ସନ୍ତାନ କାରଣ ନେଇ ବୈକୁଣ୍ଠ ନରକରେ ପରିଣତ ହେଲାପରି ଲାଗିଲା ।

ଗୋଟିଏ କାରଣ ଶହେ କାରଣରେ ପରିଣତ ହେଲା ମନୋମାଳିନ୍ୟ କ୍ଷେତ୍ରରେ, ସେ ଶହେ ପୁଣି ଶାଖା ପ୍ରଶାଖା ମେଲିଲା । ଏତେଦୂର ଗଲା ଯେ ଯେଉଁ

ଚୁ' କପଟି ପାଇଁ ମୁଁ ସକାଳେ ଏତେ ଅକୁଳ ଓ ଆତୁର ଆଗ୍ରହରେ ଚାହିଁଥାଏ ତାହା ପିତା ଲୁଣିଆ ଗନ୍ଧଆ ହେବ ଏବଂ ମୁଁ ଘରକୁ ଫେରିଲାବେଳେ ମୁଣ୍ଡରେ ଓଢ଼ଣାଟାଣି ଜଳା କବାଟ ବା ଝରକା ଫାଙ୍କର ଚିହ୍ନା ମୁହଁଟି ଦେଖିବା ଦୁର୍ଲ୍ଲଭ ହେଲା ।

ଦୁହେଁ ଦୁହିଁଙ୍କ କ୍ରୋଧର ଉପଶମ ପାଇଁ ଆମେ ଛନୋଟି ସନ୍ତାନଙ୍କ ପିଠି ଓ ଗାଲ ଉପରେ ସବୁବେଳେ ନଜର ରଖିଲୁ ଏବଂ ବାଧା ଚୁପୁଡ଼ା (ଯଦିଓ ନିଜେ ନିଜକୁ ବା ପରସ୍ପରକୁ ଜଣା ନଥିଲା) ସବାସରି ହେଲୁଁ । ଘର ଭିତରେ ଚେଁ ଚୁଁ, ଭେଁ ଭାଁ ଧାଁ-ଦଉଡ଼ ସବୁବେଳେ ଲାଗି ରହିଲା, ଆମରି ସୌଭାଗ୍ୟରେ ପଡ଼ୋଶୀଟିଏ ଅନ୍ୟ ଭଡ଼ାଘରକୁ କେତେଦିନ ହେଲା ଚାଲିଗଲେଣି । ମୁନୁ, ପିଙ୍କୁ, ରନୁ କମେ ଚତ୍ତ୍ୱସତ୍ ଅଭାବରେ ଶ୍ରୀହୀନା ହୋଇଗଲେ ଏବଂ ଛେଦଣ୍ଡ ଘର ଧରିଲେ । ଆମ ଦୁହିଁଙ୍କ ମୁହଁ ଦେବ ଦେବୀର ରୂପ ହରାଇ ରାକ୍ଷସ ରାକ୍ଷସୀ ରୂପ ନେଲା ।

ଏମିତି ଦହଗଞ୍ଜିଆ ହୀନମାନିଆ ଜୀବନକୁ ଶେଷ କରିବାର ଏକମାତ୍ର ଉପାୟ ଆତ୍ମହତ୍ୟା । ସୁଇସାଇଡ୍ ସ୍କ୍ୱାଡ୍ ନ ଗଢ଼ି ଆମେ ଅଲଗା ଅଲଗା ନିଷ୍ପତ୍ତି କଲୁ । ସେଇ କୁକର୍ମ, ଅପକର୍ମ ପାଇଁ, ଯେଉଁଥିପାଇଁ ଲୋଡ଼ା ଦୁଇ ଘଣ୍ଟା ପାଖର ମୁହୂର୍ତ୍ତ । ମରିବା ପାଇଁ ବା ମାରିବା ପାଇଁ ଗୋଟାଏ ମୁଡ୍ ଆସିଲେ ତ ହେଲା ।

ଦିନଯାକର (ଦୁଇ) ଘଟଣାବଳୀରେ ପରିସମାପ୍ତି ଘଟାଇ ଯେତେବେଳେ କୁଆଡ଼ୁ ଝିଣ୍ଟିଆ ଭୂତପରି ମାଡ଼ିଆସି ସ୍ତ୍ରୀରନ୍ତ ରେଡ଼ିଓଟାକୁ ଟେବୁଲ ତଳକୁ ଫୋପାଡ଼ି ଦେଲେ ଏବଂ ମୋ ଚଷମାକୁ ନାକରୁ କାଢ଼ିନେଇ ତଳେ ବାଡ଼େଇ ଦେଲେ (ମନ ଭୁଲାଇବା ପାଇଁ ରେଡ଼ିଓ ଶୁଣିବା ବା ଖବରକାଗଜ ପଢ଼ିବା କେତେ ଦରକାର ସତେ ।) ମୋର ସେଇ ଯୋଡ଼ାଏ ପାଗଳ ମୁହୂର୍ତ୍ତ ଆସିଗଲା ଏବଂ ଅପମୃତ୍ୟୁ ଉଦ୍ଦେଶ୍ୟରେ ମୁଁ ଘରୁ ବାହାରିଗଲି ଗେଞ୍ଜି ଲୁଙ୍ଗି ପିନ୍ଧି ଅନ୍ଧାରୁଆ ଜଗତକୁ । ମୋର ଚେତା ନଥିଲା । ବହିର୍ଜଗତ ଅଛି ଏକଥା ଭୁଲି ଯାଇଥିଲି ।

ମୁଁ ଦିନେ ଦି'ଦିନ ହେବ ସେଇ ଆତ୍ମହତ୍ୟା କଥାଭାବି ଉପାୟ ଓ ସ୍ଥାନ ମନେ ମନେ ନିରୂପଣ କରିସାରିଥିଲି, କାଳେ ରାଗ ବା ଦୁଃଖର ସ୍ରୋତରେ ବସ୍ତ୍ରଜ୍ଞାନହୀନ ହୋଇ ବାଜେ ଭାବରେ ନିଜକୁ ଶେଷ କରି ବସିବି ଏବଂ ଜନେ ହସିବେ । ଆତ୍ମହତ୍ୟାର ବି ତ ଗୋଟାଏ ଡିସେଣ୍ଟ ଓଏ ଅଛି ।

ନିଦବଟିକା ମୁଠାଏ ଖାଇଦେବି । ବଢ଼ିଆ ଉପାୟ; କିନ୍ତୁ ଭେଜାଲ ବା ମାତ୍ରାଜ୍ଞାନର ଅଭାବରେ ଇପ୍ସିତ ଫଳ ନ ମିଳିପାରେ, ଡାକ୍ତର ହୁଏତ ବଞ୍ଚାଇଦବ । ଗୁଡ଼ ! ପିସ୍ତଲ ତ ନାହିଁ । ହୁଏ ଗୁଳିରେ ଭୁଷିବି, ମୁଠାରେ ବଳ ନପାଇପାରେ । ଖାଲି ଯାଉ୍ଲ ହବା ସାର । ଗୁଡ଼ !

ସେହିନ ଭଦ୍ରିଡ଼ସ୍ତର ପାଖରେ ଛିଡ଼ାହୋଇ ଅଢ଼େଇ କୋଟି ବ୍ୟୟରେ ନିର୍ମିତ ଫ୍ଲାଇଓଭରର ବହରଣୀ ଯାହା ରେଲଲାଇନ୍ ଉପରେ ପଡ଼ିଥିଲା । ସେଥିରେ ଉଚ୍ଚତା ଲେଖାଥିଲା ପନ୍ଦର ମିଟର । ମରିବା ପାଇଁ ପ୍ରଶସ୍ତ, ଯଥେଷ୍ଟ ଉଚ୍ଚ । ଭଲ ହୋଇଛି ଏ ଯାକେ ଅନ୍ଧାର ଅଛି କର୍ପୋରେସନର ଯାକ । ମ୍ୟୁନିସିପାଲିଟି ନିର୍ବାଚନ ହେବ, ଉଜ୍ଜଳ ଆଲୋକ ଆସିବ, ବର୍ତ୍ତମାନ କେବଳ ଆଲୋକିତ ଅନ୍ଧାର । ରାତ ଦଶଟା ପରେ ଟୋକା ଟୋକାଏ ସନ୍ଧ୍ୟା ଶୋ ସିନେମା ପରେ ଡ୍ରଗ, ଦେଶୀ/ବିଦେଶୀ, ଗଞ୍ଜା (ସବୁ ପୋଲତଳେ ଅଛି) ଖାଇପିଇ ଟାଣି ଏଇଠି ଆରମ୍ଭ କରନ୍ତି ଆତ୍ମହତ୍ୟାର ଅଭିନୟ । ଡେଇଁପଡ଼ିବ ଆଖିବୁଜି ନିଃଶ୍ୱାସ ବନ୍ଦକରି, ସବୁ ଅନ୍ଧକାର । ଏଇତ ଟ୍ରେଜିକ୍ ହବେ ।

କିନ୍ତୁ ସକାଳୁ କ୍ରମେ ନରମ ହୋଇଆସୁଛି କାହିଁକି ? ଜୀବନଯାକ ବଞ୍ଚିବାରେ ଯେତେ କଷ୍ଟ ଅନୁଭବ ନଥିଲା ମରିବା ତା'ଠାରୁ ଅଧିକ କଷ୍ଟକର ଜଣାପଡ଼ୁଛି । ଆତ୍ମହତ୍ୟା ପାଇଁ ସବୁ ଗବେଷଣା ଦର୍ଶନଶାସ୍ତ୍ର ପଢ଼ି ସାରିବା ପରେ ଦୁର୍ବଳତା ମନକୁ ଛୁଉଁଛି କିପରି ? ଅରେ ଡେରି ହୋଇଯାଇଛି । ବାଘୁଣୀ ଯଦି ଏଇକ୍ଷଣି ଆସେ ଦେଖିବ ଯେ ମୁଁ ଆତ୍ମହତ୍ୟା ଏ ଯାକେ କରିପାରିନି ତେବେ ସେ ମୋତେ ଚିଡ଼ିବି । ନା, ହେଇ ଡେଇଁଲି । ପନ୍ଦର ଫୁଟ ଯଥେଷ୍ଟ, କାଲି ସକାଳୁ ସେ ଆସି ଦେଖିବ ଶବଟି ଉଭେଇ ଯାଇଛି, ଖାଲି ରେପାଟି ଖୋଲପାଟି ପଡ଼ିଛି । ତଳକୁ ଚାହିଁଲି, ଅନ୍ଧକାର । ସେଇ ଅନ୍ଧାର ଭିତରେ ମୁନୁ, ପିଙ୍କୁ, ସନୁଙ୍କ ମୁହଁମାନ କ୍ଷଣିକ ପାଇଁ ଦିଶିଗଲା । ମୁଁ ନଇଁପଡ଼ି ଏକ ଦୁଇ ତିନି କହି ଡେଇଁପଡ଼ିଲି; ଆଗକୁ ନୁହେଁ ପଛକୁ । ଯେଉଁଠି ଛିଡ଼ା ହୋଇଥିଲି ସେଇଠି ପଡ଼ିଲି । ପିଠିକୁ ଟିକେ କାଟିଲାପରି ଲାଗିଲା ।

କେଉଁ ଏକ ଅଦେଖା ହାତ ମତେ ତେବେ ଏ ଆତ୍ମୋତ୍ସର୍ଗରୁ ବାଧା ଦେଇଛି ! ସେ ଯାହେଉ ନାହିଁ ମୋର ମରଣ; ମୁନୁ, ପିଙ୍କୁ, ସନୁ, ବ ବୋଧହୁଏ ଚାହାନ୍ତି ନାହିଁ । କେବଳ ମୋ ସ୍ତ୍ରୀ ଚାହୁଁଥିବ !

ଏଥିକବେଳେ ଗୋଟେଇଆଡ଼୍ ଆସୁଥିବା ଗୋଟାଏ ଟ୍ରକର ଆଲୁଅ ଖଣ୍ଡେକ ପାଇଁ ମୋ ଉପରେ ପଡ଼ିଲା । ସ୍ୱଳ୍ପ ଅପ୍ରଶସ୍ତ ପୋଷାକ ପାଇଁ ମୁଁ ଲଜ୍ଜିତ ହେଲି । ତା'ପରେ ମୋର ପୂର୍ବ ଚେତା ଆସିଲାରୁ ଉପଲବ୍ଧି କଲି ଯେ ଆତ୍ମହତ୍ୟା ମୋ ଦେଇ ହେଲା ନାହିଁ । ଏଥର ଆଇନକାନୁନ କଥା ଭାବିଲି । କେହି ଦେଖି ନାହିଁ ତ ? ଆତ୍ମହତ୍ୟା କରିପାରିଲେ ତ ଭଲ ନ କରି ପାରିଲେ ଆତ୍ମହତ୍ୟାର ପ୍ରଚେଷ୍ଟା ଯୋଗୁଁ ମୋତେ ଥାନାବାଲାଏଁ...ଧୀରେ ଧୀରେ ଗ୍ରେରଲ୍ଲପରି ପୋଲ ତଳକୁ ଖସିଯିବାର ଚେଷ୍ଟା କଲି । ମନେ ପଡ଼ିଲେ ମୁନ୍ନୁ, ପିଙ୍କୁ, ରାନୁ । କି ଆଶ୍ଚର୍ଯ୍ୟ ! ସେମାନଙ୍କଠାରୁ ବିଦାୟ ନ ନେଇ ଶେଷଦେଖା ନ ଦେଇ ମୁଁ କେମିତି ଆସିପାରିଲି ? ତାଙ୍କ ମାଆ ମୋର ପଛେ ପଛେ ଆସି ଯଦି ଆତ୍ମହତ୍ୟାରେ କୃତକାର୍ଯ୍ୟ ହୋଇ ପୋଲତଳେ ପଡ଼ିଥିବ ତେବେ କିଏ ଚିହ୍ନଟ କରିବ । ପୋଲତଳ ବୁଲି ପ୍ରାୟ ଦଉଡ଼ିବାକୁ ଆରମ୍ଭ କଲି । ପୋଲତଳ ଅଣଓସାରିଆ ରାସ୍ତାର ଏପାଖ ସେପାଖ ନାରୀମୂର୍ତ୍ତି କେଉଁଠି ପଡ଼ିଥିବ ବୋଲି ଖୋଜିଲି । ପୋଲ ଶେଷ ପଡ଼ୁଥିବା ଉପରେ; କାହିଁ ? ସେ ତେବେ ଅନ୍ୟ ଉପାୟରେ ଆତ୍ମାହୁତି ଦେଲା ? କି ପେଥେଟିକ୍ !

ଓଭରେଇ ପୋଲ ଫ୍ଲାଇଓଭର ଯେଉଁଠି ସରୁଛି ଏବଂ ରାସ୍ତାର ମାଟିକାମ ଆରମ୍ଭ ହୋଇଛି, ସେଇଠି ଷଣ୍ଢେ ନିଃଶ୍ୱାସ ମାରୁଥାଏ । ଆମ କୋଠାଟା ସେଠାରୁ ପାଖ୍ୟ ଘନଗହ ଗଜ ହେବ; ଆଲୁଅ ସବୁ ଜଳୁଛି, ଆତ୍ମହତ୍ୟାକୁ ବାହାରି ଆସିଥିଲା ବେଳେ ଯିମିତି ଜଳୁଥିଲା । ଦେଖିପାରୁଛି କବାଟ ଝରକା ସବୁ ଭାଁ ଭାଁ ହୋଇ ମେଲା ରହିଛି । ମୁନ୍ନୁ, ପିଙ୍କୁ, ରାନୁ, ହାୟ ! ହାୟ ! ନିରାଶ୍ରୟ ଭିଖାରୀଛୁଆ ପରି ପଡ଼ିଥିବେ, ଯଦି ତାଙ୍କ ମାଆ ବି ବାହାରି ଆସିଥାଏ ଆତ୍ମହତ୍ୟାକୁ । ସକ୍ ସକ୍ ହୋଇ କାନ୍ଦିଲି; ଟୋପାଏ ଦ'ଟୋପା ଲୁହ ବି ଗଡ଼ିଆସିଲା ଗାଲ ଦେଇ ।

ପୋଲତଳ ସେଇ ଗୁମ୍ଫା ପରି ଅନ୍ଧାର ( ଛୁଡ଼ା ହେଲେ ମୁଣ୍ଡ ବାଜିବ ) ସ୍ଥାନ ଆଡ଼କୁ ଅନାଇଲି । ପରିବ୍ୟାପ୍ତ ଅନ୍ଧାର ଭିତରେ ଉଦ୍ଭଟ ଛବିପରି ଦୃଶ୍ୟଟାଏ ମୋତେ ଦେଖିଗଲା । ପାଖ ଦୋତାଲା ବେଲ୍‌କଂ ପଦ୍ଦୋବିହାନ ଝରକା ଦେଇ ବାହାରିଆସିଥିବା ଆଲୁଅ ଗୁମ୍ଫାଟି ତ୍ରିକୋଣାକାର ଛବିପରି ଆଲୋକିତ ହୋଇଛି । ଯିମିତି ରୂପେଲି ପରଦାରେ ଛବିସବୁ ଦଣ୍ଡେ ପରେ ପଡ଼ିବ ।

ସମ୍ମୁଖରେ ଦେଖିଲି ଅପୂର୍ବ ଦୃଶ୍ୟ । ବିଶ୍ୱବିଖ୍ୟାତ ଗ୍ରୁ ଲେଗ୍ରୁନ ଫିଲ୍ମ୍‌ର ବହୁ ପ୍ରଚ୍ଛଦପଟର ବିଜ୍ଞାପନୀ ଛବିରେ ନାୟକ ନାୟିକା ଛୁଡ଼ା ନ ହୋଇ ପାଖେ ପାଖେ ଲାଗାଲାଗି ହୋଇ ବାଲି ଶେଯରେ ଶୋଇଥାନ୍ତି ଯିମିତି ଦମ୍ପତ୍ତି ସେମିତି ପ୍ରକୃତ ଜୀବନ କ୍ଷେତ୍ରରେ ଶୋଇଛନ୍ତି କଳାକଳା ପୁରୁଷ ଓ ସ୍ତ୍ରୀ, ଉଭୟଙ୍କ ପରିଧାନ ପ୍ରାୟ ନାହିଁ । ସ୍ତ୍ରୀ ଲୋକଟିର ଛାତିରେ ବଇଁଳା ପିଲାଟାଏ ପେଟେଇ ଶୋଇ ଗୋଟାଏ ସ୍ତନକୁ ଚିଁ ଚିଁ କରି ପିଇଯାଉଛି, ଅନ୍ୟଟିର ବେଣ୍ଟିକୁ ବାଁ ହାତରେ ଧରି ମୋଡ଼ୁଛି । ଆଉ ମଧ୍ୟ ଦି'ଟା ଝିଅ ସେମାନଙ୍କ ଚାରିପଟେ ଘୂରି ଘୂରି ତାଙ୍କ ଭାଷାରେ କ'ଣ ଗୁଡ଼ାଏ ଗୀତଗାଇ ନାଚୁଛନ୍ତି, କେତେବେଳେ ବଜାରିଆଙ୍କ ଠାରୁ ଶିଖିଥିବା ଉପ୍‌ଭୋ ନାଚ ବି ବାପ ମା'ଙ୍କୁ ଦେଖାଉଛନ୍ତି । ମାଟିଆ ରଙ୍ଗର ରୋଗା କୁକୁରଟାଏ ପୁରୁଷର ଗୋଡ଼କୁ ଲାଗି ଶୋଇଛି ଏବଂ ଲାଞ୍ଜ ଭୂଇଁରେ ପିଟି ପିଟି ତାଳ ଦେଉଛି ସେମାନଙ୍କ ସହିତ । ପୁରୁଷର ମୁଣ୍ଡଆଡ଼କୁ କଳା ପାଣିମାଠିଆ, ହାତେ ଦୂରରେ ବାଉଁଶିଆ ଯାହା ଭିତରେ ପଖାଳ ହାଣ୍ଡି, ବଡ଼ କଂସା ବେଲାଟାଏ, ମୁଣ୍ଡି ଗୁଣ୍ଡୁଣି ଓ ଲାଉ ତଙ୍କିଟାଏ । ଝୁଲୁଥିବା ପଟିଆ ଛିଣ୍ଡାକନା ଏଣେତେଣେ ପଡ଼ିଥିବାରୁ ମଶାଣିର ଦୃଶ୍ୟଟିଏ ଦେଖିବାକୁ ମିଳୁଛି । ଯେଉଁ ତିନୋଟି ସନ୍ତାନ ସନ୍ତତି ଦେଖିଲି; ଛଅ ଚାରି ଦୁଇ ବୟସର; ଆମର ମୁନୁ, ପିଙ୍କୁ, ବାନୁ ଯାଇଜର । ଏମାନେ ବାଳୁ ଅଲଙ୍କାରଟି ପରି କଳା । ତ୍ରିମିତି ସୀମିତ ଅନେକରେ ମଧ୍ୟ ସ୍ପଷ୍ଟ ଜାଣିହେଉଥିଲା ସମସ୍ତେ ଝିଅ ।

କୌତୁହଳୀ ହୋଇ ଦମ୍ପତ୍ତି ଛୁଡ଼ା ରହି ପଚାରିଦେଲି, 'ଏତେ ରାତି ହେଲାଣି, ଶୋଇନ ତୁମେ ସବୁ । ପିଲା ଝିଲାଏଁ କ'ଣ ରାତିଯାକ ଏମିତି ଉଜାଗରରେ କଟେଇବେ ?'

ପୁରୁଷଟା କହିଲା, 'ନିଦ ମାଡ଼ିଲେ ଶୁଇବେ । ଅଖଣି ଖେଳୁଛନ୍ତି । ଆମର ତ କଡ଼େ ନିଦ ହେଇ ଗଲାଣି । ଆଲ ନା ପାପ, ଆମର ତ ଏଠେ କିଛି ନାହିଁ । ବେଲଠୁଁ ପଖାଳପାଣି ଖାଇଦେଇ ଶୁଇଗଲେ ହେଲା । ଆମର ଦିନ ଯାହା ରାତି ବି ତାହା ।'

'ଏ ତିନିଟାଯାକ ଝିଅ ? ଗୋଟେ ବି ପୁଅ ନାହିଁ ?'

'ଝିଅ କଏ ପୁଅ କଏ ପଚାରୁଛୁ କଏ ? ଦେଖୁଛୁ କଏ ? ଅମର ହାତରେ କ ଝିଅ ପୁଅ ଅଛୁ ? ପୁଅ ହେଲେ ବ ମର ଛୁଆ, ଝିଅ ହେଲେ ବ ମର । ତୁମର ବଡ଼ ଲୁକ ଯେତେ ଝିଅ ପୁଅ ବାଛ, ଆମର ସବୁ ସମାନ । ଝିଅ ହେଲେ ବ ଖଟିକୁଟି ଖାଇବ, ପୁଅ ହେଲେ ବ ଖଟିବ ଖାଇବ । ତାମ ଦାମ ନ କଣ ଦୁନଆଁରେ କଏ ବଞ୍ଚିଛୁ ? ପୁଅ ହେଲ ବୁଲ ପାଳିବ, ଝିଅ ହେଲେ ପକେଇଦେବ ! କ ଯେ କହୁ !'

'କମିତ ଏତେ ପ୍ରାଣୀ ବଞ୍ଚୁଛ ଜଣକର ମଜୁରୀ ଉପାର୍ଜନରେ ?'

'କହୁଲ ଯେ ଖଟୁଛୁ, ଖାଉଛୁ, ଆମର ଦୁଇଜଣ ଯେ । ଷୋଳ ଟଙ୍କାରେ ସନକର ହବନ ? ଅର କେତେଦନ ଗଲେ ବଡ଼ଟା ନେଇ ଜୁଟିବ, ଖଡ କୁଟେଇବ ?'

'ହେଲ ତର କଥା । ଖୁଏଇ ପିଏଇ ବଡ଼ କଲୁ । ବାହାଥିବା ଦବୁ ଉନଉନଟା ଝିଅକୁ କମିତ ?'

'ବାହା କେମିତ ଦେବ ! କଂହା ଖଣ୍ଡେ କ ବେଲବାହନ ଖଣ୍ଡେ ଅର କନାକପଟା ହାତେ ହେଲେ ତ ବାହାଘର ହେଲ । ମର ଝିଅଟାର ନ ଦାମ ନାହିଁ ଯେ ଅହୁର ଟଙ୍କା ପଇସା ଜନଷପନ ଦେବ ? ଏଲ଼ଟା ଦଣି ଦେଇ ତ ଦର ମର ଝିଅକୁ ନବ । ତୁମର ଜାତର ମିତ ଆମର ଝିଅକୁ ସୁନା ଗହଣା ଦେଇନ । ତୁମର ବଡ଼ଲୁକ ପୋଲ ଉପରେ ଯାଅ, ଆମର ତଳେ । ଅମର ଏଇଠି ପଡ଼ୁଛୁ ଖରା ହେଲ ଭଲ, ବର୍ଷା ହେଲ ଭଲ ।'

'ତୁମେ ମରଗଲେ ତୁମର ଯାହା ଅଛୁ କଏ ଖାଇବ, ତାହାକୁ ଦେଇଯିବ ?'

'ତୁ ନବୁ, ତୁ ଖାଇବୁ । ତୁ ଏତେ ବୋକା ! ତର ଗୁଲାଏ ଅଛୁ, ଘର ଦୁଅର ଅଛୁ ବୁଲ ଏକଥା ପଚାରୁଛୁ ! ଆମର ପି. ଇ. ( ପ୍ରଜେକ୍ଟ ଇଞ୍ଜିନିଅର ) ରକମ ହେଉଛୁ ।'

ଭଗ୍ୟ ଭଲ ମେ ମୋତେ ଚହ୍ନିନ । ସବୁ ଦେଖୁଥାଏ, ଶୁଣୁଥାଏ, ଭାବୁଥାଏଁ । ଭବୁଥାଏ ଯିଏ ଯଦ ସ୍ୱାର ଏ ଜ୍ଞାନ କଥାଗୁଡ଼ାକ ଶୁଣିଥାନ୍ତା, ତେବେ

ଆତ୍ମହତ୍ୟା ଆଡ଼କୁ ଅଗେଇଥାନ୍ତା ! ମୁଁ ତ ମୂର୍ଖ, ସେ ମହା ମୂର୍ଖ । ଆମର କୋଠା ପାଖରେ ଏ ମହର୍ଷି ପଡ଼ିଛି ଅଥଚ ଆମେ ଦୁ'ଟା ହାସ୍ୟାସ୍ପଦ ହେଉଛୁ !

ମନଟା ଅଚାନକ୍ ପାଉଟି ହେଲେ ଯାଏ ଘରକୁ ଫେରିବା ପାଇଁ, ମୁନୁ, ପିଙ୍କୁ, ମନୁଙ୍କୁ ଦେଖିବା ପାଇଁ । ଆଉ ପଦେ ଦୁ'ପଦ କଥା କହି ବୁଝିଲି ଯେ ସେମାନେ କେତେ ବର୍ଷ ପୂର୍ବେ ସିମିଳିପାଳ ଅଞ୍ଚଳରୁ ଏଠାକୁ ଆସି ପୋଲ କାମ କରୁଥିଲେ । ତାଙ୍କ ନିଜ ପାଇଁ ସହରାଞ୍ଚଳରେ ସ୍ଥାନ ନ ପାଇ ପୋଲତଳ ଗୁମ୍ଫାରେ ରହି ଯାଇଛନ୍ତି । ଦୁଇଟି ପ୍ରାଣୀ ପାଖାପାଖି ଅନେକ ଦିନ କାମ କରୁଁ କରୁଁ ଦେହ ଘଷାଘଷି ହେଉଁ ହେଉଁ ପ୍ରେମରେ ଆବଦ୍ଧତା ଆସିବା ପୂର୍ବରୁ (ଆଦିବାସୀ ଟିଅ ଉପରେ ଗ୍ଲୁଟିଆ ବାବୁ ଠାରୁ ନିଜପତ ପି. ଇ. ଯାକେ ଅଖିରଖନ୍ତି ) ସେମାନେ ବି ଆମ ପରି ମେଡ଼୍ ଫର ଇଚ ଅଦର ହୋଇଗଲେ ବିନା ଯାଜକ ଟିପଣାରେ । ସେମାନଙ୍କ ପରିବେଶ ଓ ଜୀବନଯାପନ ପ୍ରଣାଳୀ ଓ ଜୀବନ ଦର୍ଶନରୁ ସ୍ୱାଭାବିକ ଗୌତମ ରାଜବାଟୀରୁ ବାହାରି ବନେ ଯଦି ଏମାନଙ୍କୁ ଦେଖି କଥାବାର୍ତ୍ତା କରିଥାନ୍ତେ ତେବେ ନିର୍ବାଣ ଖୋଜିବା ଆଗରୁ ଏମାନଙ୍କ ଘରଦ୍ୱାର ପୋଷାକପତ୍ର ଯୋଗାଇବା କଥା ଅଗ ଭାବିଥାନ୍ତେ; ପ୍ରାସାଦ ଛାଡ଼ି ପଳାଇ ନଥାନ୍ତେ ବଣ ଜଙ୍ଗଲକୁ ନିର୍ବାଣର ଅନୁସନ୍ଧାନରେ ।

ଏକମୁହାଁ ଘର ଭିତରକୁ ପଶିଯାଇ ପରସ୍ପରର ମୁହଁ ଦେଖିଲୁଁ । ସ୍ୱାଭାବିକ ଆତ୍ମହତ୍ୟା କରିବା ପାଇଁ ଯେମିତି ନୈତିକ ଓ ମାନସିକ ସାହସ ଦରକାର ସ୍ତ୍ରୀ ତାହା ମୋର ପରି ସଞ୍ଚୟ କରି ପାରିନାହାନ୍ତି । ମୃତ୍ୟୁ ତାଙ୍କୁ ବି ହୁଏତ ରିଜେକ୍ଟ କରି ଦେଇଛି । କ୍ଷଣେ ଗୁହାଁଣୀ ପକାଇ ଦେଖିଲି ବେଡ୍ ରୁମ୍‌ରେ ମୁନୁ, ପିଙ୍କୁ, ମନୁ ପରସ୍ପର ଦେହରେ ହାତ ପକାଇ ( ମନେ ମନେ ବାପା ମାଆଙ୍କୁ କୁଣ୍ଢେଇ ଶୋଇଛନ୍ତି ) ଶୋଇଯାଇଛନ୍ତି । ତାଙ୍କ ଆଡ଼େ ନ ଚାହିଁ ଆଡ଼ମୁହାଁ ହୋଇ ଅତିଥିଙ୍କ ପାଇଁ ଉଦ୍ଦିଷ୍ଟ ବାହାର କୋଠରୀକୁ ପଶି କବାଟ ବନ୍ଦକରି ଶୋଇଗଲି ।

ସକାଳେ ଠକ୍ ଠକ୍ ଆଓ୍ୱାଜ ଶୁଣି ଉଠିପଡ଼ି କବାଟ ଫିଟାଇଲି । ଗୋଟାଏ ପୁରା ରାତିର ପାଗଳ କରିଦେବା ଉତ୍ତପ୍ତ ମସ୍ତିଷ୍କକୁ କେତେ ଶୀତଳତା ଓ ପ୍ରଶାନ୍ତି ଆଣି ନଦିଏ । ପରଦା ଉଠାଇ ଦେଖିଲି ସେଇ ସ୍ୱର୍ଗୀୟ ଦୃଶ୍ୟ ଯାହା ଜୀବନଯାକ ନିତି ପ୍ରତି ସକାଳେ ଦେଖି ଅପାର ସୁଖ ଓ ଶାନ୍ତିରେ ଦିନଟି କଟାଇବାକୁ ମୁଁ ଭଲ ପାଇଛି ।

ବ'ଦପଟ ସୁନାରଙ୍ଗ ପିନ୍ଧା ଗୋଡ଼ ଗୋଡ଼ ହାତରେ ଧୂଆଁ ବାହାରୁଥିବା ଗୁଡ଼ନା କପଟି ଯେଉଁ ଆଖିରେ ନାନା ମେଜିକ୍/ଭେଲ୍‌କି ଦେଖାଇ ଯେବେ ଛୁଡ଼ାହୋଇ ସ୍ଵର୍ଗ ମାଗନ୍ତି ମୁଁ ତ ଖଣ୍ଡେ ତାଙ୍କୁ ଦେଇଦେବି । ମୁଁ ସବୁ ଭୁଲ କଥା କେଉଁଠୁ ଆରମ୍ଭ କରିବି ଠିକ୍ କରିପାରିଲିନି । ଗୁ' ତୁମ୍ଭେ ତମୁକେ ପିଉଥାଏଁ ତାଙ୍କ ମୁହଁକୁ ଗୃହୁଥାଏଁ । କପ୍ ଥୋଇଲାମାତ୍ରେ ସେ ମୋ ହାତକୁ ନେଇ କପାଳରେ ଥୋଇଲେ, କହିଲେ ତାତଛୁ ନ ? କାଲି ସବୁ କ କାଲବୃଷ୍ଟି ! ଗୋଟାଏ ପିଶାଚୀ ଅଗ୍ରା କରିଥିଲା ମତେ । ତୁମକୁ ବି ଭୂତ ଜାବୁଡ଼ିଥିବ । ଜଗନ୍ନାଥଙ୍କ ଦୟାରୁ ଦୁହେଁ ବର୍ତ୍ତିଗଲୁଁ, ମନୁ, ପିଙ୍କୁ, ରଜୁ ବି ବର୍ତ୍ତିଗଲେ । ଦୁହେଁ ଗୁଲିଯାଇଥିଲେ ସେମାନଙ୍କ କଥା କିଏ ବୁଝିଆନ୍ତା ? ସେମାନେ କ'ଣ ଛେଳିଛୁଆ ଗୋରୁଛେଳି ହୋଇଛନ୍ତି ଯେ ମା' ବାପ ଗୁଡ଼ିଗଲେ ଚରିବୁଲି ଖାଇବେ ! ତେଣୁ ଲଗିନି ବଞ୍ଚିଗଲି । ତଥାପି ମୁଁ କାଲି ଆତ୍ମହତ୍ୟା ପାଇଁ କି ତୁମକୁ ଫେରାଇ ଆଣିବା-ପାଇଁ ମନେ ପଡ଼ୁନି । ପୋଲ ଉପରଟା ଖୁବ୍ ଅନ୍ଧାର, ଡର ମାଡ଼ିଲା, ଗୋଟାଏ ଜାଗାରେ ତଳକୁ ଗୃହିଁଲି । ଡର ମାଡ଼ିଲା ପୋଲ ତଳେ ତଳେ ଗୃଲିଲି; ଜାଲେ ତୁମେ କେଉଁଠି ପଡ଼ିଯାଇଥିବ, ପାଖରେ କେହି ନଥିବେ । ତୁମକୁ ନପାଇ ଗୋଟାଏ ଅଦ୍ଭୁତ ଜାଗାକୁ ଗୃଲିଗଲି । ସେ ଜାଗାଟାକୁ ତୁମକୁ ଦେଖାଇବି ଆସ, ମୁନୁ ପିଙ୍କୁ ରଜୁ ଉଠିନାହାନ୍ତି । ଏଇଠି ପାଖରେ, ଆସ ଯିବା ତୁମେ କଦାପି ଭାବିବ ନାହିଁ ଯେ ମୁଁ ଆତ୍ମହତ୍ୟା କରିବାକୁ ଉଠିଲି । ଅସଲ କଥାହେଲା ରାଗଗ୍ରେଟରେ ଭୁଲିଗଲି ତୁମକୁ ପଗୃରିବାକୁ କମିତ ଆତ୍ମହତ୍ୟା କରିବାକୁ ହୁଏ । ସ୍ଵାମୀକୁ ନ ପଗୃରି ମୁଁ କ'ଣ କିଛୁ କରେନା କରିପାରେଁ ।"

"ମୋର ବି ସେଇ ଅବସ୍ଥା । ତୁମକୁ ନ ପଗୃରି ମୁଁ ବି ଫେଲ୍, ମାଷ୍ଟ୍ରେ, ଥରେ ତେଉଁଥିଲି ଯେ ଅଗକୁ ନ ଦେଖି, ପଛକୁ ତେଢ଼ିଲି ।'

ଦୁହେଁ ଗୃଲିଲୁଁ । ସେଇ ଜାଗାକୁ ଯେଉଁଠି ଗୁମ୍ଫାର ବାସିନ୍ଦାଙ୍କୁ ରାତିରେ ଭେଟିଥିଲି । ଏ ସ୍ଥାନଟା ଗୁମ୍ଫାର ଅପରପାର୍ଶ୍ଵ ବାଉଣ୍ଡେଟି ଗୃହଦ୍ଵାର ବ୍ୟବଧାନ ମାତ୍ର । 'ଦେଖ' କହି ସେ ମୋ ପାଖରେ ଛୁଡ଼ା ହୋଇଗଲେ । 'କାଲି ଏଇଠୁ ଘରକୁ ଫେରିଲି ।'

ଦେଖିଲି, ବୁଢ଼ାଟାଏ ବାଡ଼ି ଖଣ୍ଡିଏ ଧରି ଇଟା ଦୁଇଟା ଉପରେ ବସିଚ୍ଛି । କାଲି ରାତି ଆଉ ପାଖରେ ଛନ୍ନଛିଆ ଓ ବାପ ମାଆକୁ ଯାହା ଦେଖିଥିଲି ଏଠି ଦେଖିଲି

ବୁଢ଼ା ହାତ ଝିଅଙ୍କୁ ଦେଇ ସିଟିଂ କରୁଛ । ବାପ ମାଆମାନେ କାମକୁ ବାହାରି ଯାଇଛନ୍ତି ଖୁବ ସକାଳୁ ପଖାଳତୋରାଣି, ଚୂନ ଦୋକତା ଧରି । ଦଣ୍ଡେ ଛୁଡ଼ା ହୋଇ ସେମାନଙ୍କ ଡିଆଁ ଧାପଡ଼ା, ଖେଳ କଉତୁକ କଳଗୋଳ ଦେଖିଲୁଁ । ମାରପିଟ୍ ପର୍ଯ୍ୟନ୍ତ ଯାଇ କନ୍ଦାକଟା କଲାବେଳକୁ ବୁଢ଼ା ଘୁଁଷୁଁ କାଶ ସହିତ କହିଲା, "ଦେଖ ଦେଖ ଏଇ ରେଲ ଯାଉଛି । ହେଇ ପୋଲ ଉପରେ ମଟର, ଏଇ ରେକ୍ସା, ହେଇ ବାବୁ ବାବୁଆଣୀ ।"

ସେମାନଙ୍କୁ ଦଣ୍ଡେ ନିର୍ବିଶେଷରେ ଗୃହିଁ ପଦେ ଅଧେ କଥା ପଚାରୁଛୁ ବୁଢ଼ାଟି ଗର୍ଜିଉଠି କହିଲା, "କିଏ ହୋ ତୁ ବାବୁ କାଲି ସାଢ ତର ଗଲା ଶୁଣିଥିଲି, ଆଜ୍ ଫେର ଏ ପାଖକୁ ଆସି କଟମଟ କରି ଗୃହୁଁଛୁ ଆମକୁ, ଛୁଆ ଡରି କାନ୍ଦିଲେଣି ତୁମ୍ଭରମାନଙ୍କୁ ଦେଖି । ପଳାଅ ଯାଅ ନହେଲେ କୁକୁରଟା କାମୁଡ଼ିଦବ । ସେ ପାଖର କୁକୁର ଏ ପାଖକୁ ଅସିଯାଇଛି । ତତେ ମନ୍ତ୍ର ଯନ୍ତ୍ର ଗୁଣିଗାରେଡ଼ି ଆସେ ନା କି ?"

ସର୍ବମସ୍ତ କର୍ତ୍ତା ହୋଇଥିବାରୁ କାହାର କଡ଼ାଗଲା ମଫସଲ ସହରରେ ଏତେଦିନ ଶୁଣିନଥିଲି । ବୁଢ଼ା ସିମିତ କହିଲା ତୁ କିଏ ହୋ ? ମୁଁ ହାକମାଢ ଗଳାରେ କହିଲି—ମୁଁ ପି.ଇ, ଏତେଦିନ ତୁ ମତେ ଜାଣିନ । ମୁଁ ଏ ପୋଲର ମାଲିକ, ତୁ ଏହାରି ତଳେ ବେଆଇନ ରହୁଛୁ । ଉଠିଯାଅ ସମସ୍ତେ । ଏଇକ୍ଷଣେ, ନହେଲେ··· ସ୍ତ୍ରୀ ମୋତେ ପଛପଟୁ ଆପୁଡ଼ାଇ ଦେଲେ ।

ବୁଢ଼ା କହିଲା, ତୁ ପି. ଇ. । ତେର ଦିନ ହେଲା ତତେ ଖୁଜୁଥିଲି, ଆଜୁ ପାଇଛୁ । ଶୁଣିଲି ତୁମର ପରି ଦୁଇଜଣ କେତେ କଳଗୋଳ ମାରପିଟ୍ ଲାଗୁଛି, ଖାଲି ଝିଅମା ଜନ୍ମିଲେ ବୋଲି । କି କହିବ, କି ପାଠପଢ଼ିଛୁ । ତତେ କୁହାର କରିତେ ଇଚ୍ଛା ନାହିଁ । ପୁଅ ଝିଅ କି ତରି ହାତରେ ନା ତରି ଧର୍ମର ହାତରେ । ଏଇ ଦେଖ ସେପାଖରେ ଦଶଟା ଏପାଖରେ ସାତଟା । କେତେଟା ହେଲେ ତରି ହିସାବରେ । କାମ ଯିଏ କରିଲା ସିଏ ମରଦ, ପୁଅ, ହେଉ ଝିଅ ହେଉ । କାମ ଯିଏ ନ କରିଲା ହାକବାଜ ହୋଇ ବସି ଗୋଡ଼ ହଲେଇଲା ସେ ଧର୍ମ ନାହିଁ, ମରଦ ନାହିଁ, ମଣିଷ ନାହିଁ । ଆମର ବାହୁଛୁ ନା କଳଗୋଳ ଲାଗୁଛି, ପୁଅଛୁଅ ନାହିଁ ବୋଲି, ତରି ଏ

ପୋଲରେ ଯେତେ ଲୁକ ନାଗିଥିଲେ ହିସାବ କର । ଦଶଜଣରେ ସାତ ଜଣ ଝିଅ । ଯା ଯା ଘରକୁ ଯାଆନ୍ତି । ଆମର ପାଖକୁ ଆସିବୁ ନାହିଁ । ତେଣୁ ମୁହିଁ ଗୃହଦ୍ୱାର କଥା ନାହିଁ ।

ବଡ଼ କଡ଼ା ହେଲା ବୁଢ଼ାର କଥାଗୁଡ଼ାକ । ଅସ୍ୱସ୍ତିଭାବର କଷ୍ଟଠୁଁ ବଳି । ଘରମୁହାଁ ଚାଲିଲୁ ।

ବାଟରେ ସ୍ତ୍ରୀ ପଚାରିଲେ, 'ଛନରୁ ଗୃହ ହେବେ ନା । କାଲୁ ସମ୍ପତ୍ତିବାଡ଼ କଏ ଖାଇବ. ସେଇ ମୋର ଚିନ୍ତା ।' ମୁଁ କହିଲି, 'ମୋର ତ ଗୋଷ୍ଠରେ ଜମି ନଥିଲା, ଗୃହକର କର ଠକ ଭର୍ତ୍ତି ଏତକ କରଛୁ । ଶୁନରୁ ଶୁନକୁ ଫେରିଯିବ,. ଯଦି ଝିଅମାନେ ସମ୍ପତ୍ତି ଖାଇ ନ ପାରିବେ ।'

'ପିଣ୍ଡ କଥା ? ପିତୃ ପୁରୁଷ ପିଣ୍ଡ ପାଇବେନି ।'

'ମାର ଗୁଲି, ପିତୃ ପୁରୁଷଙ୍କୁ । ବାପା କେବେ ମଲେ ତା'ର ତାରିଖ ମନେ ନାହିଁ । କେଜେବାପା କେଜେମାଆ, ଅଜାଆଇଙ୍କ ନାମ ଜଣା ନାହିଁ ମତେ । ପିଣ୍ଡ ଦେବି କାହାକୁ ? ଝିଅମାନେ ଭଲ ପିଣ୍ଡ ଦେଇପାରନ୍ତି । ସୀତା ଠାକୁରାଣୀ ଅଞ୍ଜଳାଏ ବାଲି ଦେଇଥିଲେ ଯେ ଶ୍ୱଶୁର ଦଶରଥ ସଶରୀରେ ଠିଆହୋଇ ପିଣ୍ଡ ଗ୍ରହଣ କରିଥିଲେ । ରାମଚନ୍ଦ୍ର ତା' ପାରି ନଥିଲେ ।'

ଘର ପହଞ୍ଚି ଦେଖିଲୁଁ ମୁନୁ, ପିଙ୍କୁ, ରାନୁ, ଘରଦ୍ୱାର, ବାଡ଼ବଗିଚା ଖୋଜି ବୁଲାନ୍ତି ଆମକୁ ନପାଇ ଏମିତ କାନ୍ଦୁଛନ୍ତି ଯିମିତ ତାଙ୍କ ବାପମାଆ ମରିଯାଇଛନ୍ତି । ସେମାନେ ହେଉଣ୍ଡ ହୋଇଯାଇଛନ୍ତି ।



# ସେବା ଓ ସାଥୀ

"ସୁଟ୍‌କେଶ୍‌ଟା ବାହାରେ ରଖିଦେଇ ମୁଁ ଯାଉଛି ଆସୁଛି, ତୁମେ ଏଇଠି ମୋତେ ଅପେକ୍ଷା କରିଥିବ ।" ପୁଅ କହିଲା ।

ମୋର କିନ୍ତୁ ଅପେକ୍ଷା କରିବାର ବେଳ ବା ଅବକାଶ ନଥିଲା । ଉତ୍କଳ-କଳିଙ୍ଗ ଏକ୍‌ସପ୍ରେସ୍ । ଠିକ୍ ଠିକ୍ ବାରଟା ପାଞ୍ଚମିନିଟ୍‌ରେ । ବିକୃତ ଓଡ଼ିଆ ଉଚ୍ଚାରଣରେ ତେଲୁଗୁ ବା ବଙ୍ଗାଳୀ ଘୋଷକ କଣ୍ଠରେ ଚିତ୍କାର ଶୁଭୁଛି ତିନିନମ୍ବର ପ୍ଲାଟଫର୍ମରେ ଗାଡ଼ି ଆସିବ । ଆସିବ କ'ଣ ଆସୁଛି ହେଇ ତ ଆସିଗଲା । ପୁଅ କାହିଁ ? କି ଦାୟିତ୍ୱହୀନ ! ଗାଡ଼ି ଇନ୍‌କଲା । ଗାଡ଼ିର ହେବେରେ ଥାଡ଼୍‌ବେଲ୍ ଶବ୍ଦ, ହକରଙ୍କ ଚିତ୍କାର, ପାସେଞ୍ଜରଙ୍କ କୋଳାହଳ ବୁଡ଼ିଗଲା । ମୁଷ୍ଟିମେୟ କେତେଜଣ ଓଡ଼ିଆଯାତ୍ରୀ ପିଲାକବିଲା ଧରି ରୁହିଁ ରହିଥାନ୍ତି ସେଇ ଗୋଟିଏ ଡବାକୁ—Eଡବାକୁ । ବାଲେଶ୍ୱରରୁ ରାଉରକେଲା ଯାଉଥିବା ଯାତ୍ରୀଙ୍କୁ ଏଇ ରିଜର୍ଭ ଡବାରେ ଝଡ଼ଗପୁର ଟାଟା ପାସେଞ୍ଜରଙ୍କୁ ସହିତ ବାର୍ଥ ମିଳେ ।

ସତରେ କେଡ଼େ ବଡ଼ର ବିବେକବିହୀନ ପୁଅଟା ! ବାସ୍ତରି ବର୍ଷର ଅଚଳ ଅର୍ଦ୍ଧମୃତ ( ଡାକ୍ତରୀ ଭାଷାରେ moribund ) ବୁଢ଼ାଟାକୁ ଶେଷ ମୁହୂର୍ତ୍ତରେ ଘରୁ ସୁଟ୍‌କେସ୍ ପଛରେ ବଡ଼ଣା ବ୍ରିଫ୍‌କେସ୍ ସହିତ ଡୋହୋଇ କରି ସିଧ ବା କଷ୍ଟେ ମଷ୍ଟେ ପ୍ଲାଟ୍‌ଫର୍ମରେ ପହଞ୍ଚାଇଲା ଅସଲ ବେଳରେ ପାଖରେ ନାହିଁ । ବଡ଼ଣୋପଟା ଧରାଧରି କରି ଗୁରୁଣ୍ଡି ଗୁରୁଣ୍ଡି ଯେଉଁଠି ଅଧାବଟା ଅଧାଠିଆ ଭଙ୍ଗୀରେ ଛିଡ଼ା ହୋଇଥିଲି, ସେଇଠୁ ମୋ ଡବାଅଡ଼କୁ ମୁହାଁଇଲି । ଭାଗ୍ୟକୁ ମୋ ଡବାଟି ମୋ ପାଖରେ ତ

କେବଳ ଲଗିଲା ନାହିଁ ମୋ ଆଡ଼କୁ ପ୍ରବେଶ ଦ୍ୱାର ଦେଖାଇ ଛୁଡ଼ା ହେଲା । ଅଦ୍ଭୁତ ଭାଗ୍ୟ ପୁଅ ସେଇ ମୁହୂର୍ତ୍ତରେ ଧଇଁସଇଁ ହୋଇ ଆସିଲା ଏବଂ ହାତେ ଦୁଇ ହାତ ସ୍ଥାନ ତା'ର ଅଙ୍କ ନ ମାନି ପରିବର୍ତ୍ତନ କରିଥିବାରୁ ମୃଦୁଭର୍ତ୍ସନା କରୁଁ କରୁଁ ମୋତେ ଓ ଜିନଷପତ୍ରକୁ ଏକ ବିବେଚନା କରି ଶୂନ୍ୟରେ ଟେକି ନେଇ ଅଠେଣଠି ନମ୍ବର ବାର୍ଥରେ ଥୋଇଦେଲା । "ଅହେ ଦୟାମୟ ବିଶ୍ୱବିହାରୀ !...... ରୋଗା ବାପାଙ୍କର ସେବା କାରଣେ; ବଳ ଦିଅ ତା'ର କର ଚରଣେ ।"

ଗୁଦରଟା ତଳ ବାର୍ଥରେ ପାରିଦେଇ ପତଳା ତକିଆକୁ ପଶ୍ଚିମ ଧାରକୁ କରିକୁ ଥୋଇ ପୁଅ କହିଲା, "ଏଥର ଡାହାଣକୁ କଡ଼ ମାଡ଼ି ଶୋଇଯାଅ । ଏ ରୋଗକୁ ଔଷଧ ଅପେକ୍ଷା ବିଶ୍ରାମ ଯାହାକୁ କହନ୍ତି ବେଡ୍‌ରେଷ୍ଟ ବେଶୀ ଦରକାର । ବ୍ରିଫ୍‌କେଶକୁ ପିଠିକୁ ଲଗାଇ ରଖିଦେଉଛି, ଜୋତା ହଳକ ତକିଆ ତଳେ ଗୁଦର ଢାଙ୍କି ଦେଉଛି ।" ଏଦେଶରେ ଛିଣ୍ଡା ଜୋତା ବି ଚୋରି ହୁଏ ।

ସେତେବେଳକୁ ଦେହଟାରେ ବଥା ପାରି ଯାଇଥାଏ । ସବୁ ଶିରା ମାଂସପେଶୀ ପ୍ରାୟ ଅଚଳ । ସାମାନ୍ୟ ଚଳପ୍ରଚଳ କରି ଏଡ଼୍‌ଜଷ୍ଟ କରିବାର ଚେଷ୍ଟା କଲାମାତ୍ରେ ଉଃ ! ଆଃ ! ଉଁ ଆଁ ! ଶବ୍ଦ ସ୍ୱତଃ ଗଳା ଭିତରୁ ବାହାରି ଆସୁଥାଏ । ଯାତ୍ରୀମାନଙ୍କ ବିରକ୍ତ କୋଧ କଥା ଶୁଭୁନ୍ତି । ନିଜକୁ ଧିକ୍‌କାର କରୁଥାଏଁ, ମରିବାକୁ ଗୁହୁଁଥାଏଁ ।

ଆଉ ଅଧିକ କାଳ ପୁଅ ମୋର ଯମଯନ୍ତ୍ରଣା ଦେଖି ଶୁଣି ସହି ନପାରି କମ୍ବଳଟା ଘୋଡ଼ାଇ ଦେଇ କହିଲା, ବାପା ମୁଁ ଏଥର ଯାଉଛି । ତୁମ ସାଙ୍ଗରେ ବି ଗ୍ଲଲିଯାଇଥାନ୍ତି । ଛୁଟି ନାହିଁ, କାଲିଠାରୁ ସକାଳ ଡିଉଟି । ଯଦି ବଡ଼ଭାଇ ଗାଡ଼ି ନେଇ ଷ୍ଟେସନକୁ ଆସି ନଥିବେ ତେବେ ଟେମ୍ପୋଟିଏ ଧରି ସିଧା ଅମ୍ବାବାଗାନ ଦେଇ ଅଠର ନମ୍ବର ସେକ୍ଟରକୁ ଗ୍ଲଲିଯିବ । କମ୍ୟୁନିଟି ସେଣ୍ଟର କଣକୁ ଲାଗି A/21 ନମ୍ବର ଘରକୁ ।" ଦେଖିଲି, ପୁଅର ଆଖି ଜକେଇ ଆସିଲା । ତା'ର କରୁଣ ଗ୍ଲହାଁଣୀରୁ ବୁଝିଲି ବୁଢ଼ା ଆଉ ଫେରିବ କି ନାହିଁ ସେଥିରେ ସେ ସନ୍ଦିହାନ । ସେ ଓହ୍ଲେଇଗଲା ।

ଏବେଲେ ଚଳେ ରେ । ନ ତାତୋ, ନ ମାତା, ନ ବନ୍ଧୁ, ନ ଭ୍ରାତା, ନ ଭଗ୍ନୀ, ନ ପତ୍ନୀ । ବୁଢ଼ା ଅବସ୍ଥାରେ ବାର୍ଦ୍ଧକ୍ୟ, ରୋଗାବସ୍ଥାରେ ରୋଗ, ମଣିଷକୁ

ଯେତେ ପୀଡ଼ା ନ ହଏ ତାଠୁ ବେଶୀ ଯନ୍ତ୍ରଣା ହଏ ନିଃସଙ୍ଗତା ବା ଅସହାୟତା ଉପଲବ୍ଧି । ରୁଚିଟି ଯେବେ ବନ୍ଧୁଥାଆନ୍ତି ତେବେ ମୋ ପାଖରେ ବସି ଜାଗର ରହି ସାରା ରାତି କହୁଥାଆନ୍ତି, "ଏଇଟା ନିଅ, ସେଇଟା ନିଅ", ପଚାରୁଥାଆନ୍ତି— "ଏଇଟା ଦେବି ? ସେଇଟା ଦେବି ?" କହୁଥାଆନ୍ତି "କିଛି ହବନି, ତୁମେ ଡରନି ।" ଉଭୟ ରେଳଯାତ୍ରା ଓ ଅହମନ ପୀଡ଼ାହୀନ ହୁଅନ୍ତା ।

କିନ୍ତୁ ପର ମୁହୂର୍ତ୍ତରେ ମୁଁ ଅନୁଭବ କଲି ମୁଁ ମୋଟେ ଏକୁଟିଆ ନୁହେଁ । ସାରା ପ୍ଲାଟ୍‌ଫର୍ମର ଯାତ୍ରୀ ସିମିତ ମୋ ଉବାକୁ ମାଡ଼ିଆସିଲେ । ମୁଁ ନିଃସଙ୍ଗ ନୁହେଁ, ବହୁସଙ୍ଗ । ମୋର ଜାତଭାଇ ଓ ମୋର ଭଷାଭଷୀକୁ ନେଇ ଦଣ୍ଡିକେ ସବୁ ବାର୍ଥ ଫୁଲ୍ । ବଡ଼ ବଡ଼ ଚମଡ଼ା ବାକ୍ସ ଭିଅଇପି ବ୍ରିଫ୍‌କେଶ୍ ସୁଟ୍‌କେଶ୍, ଯୋଡ଼ାଏ ଲେଡ଼ିଜ୍ ଝୁଡ଼ି, ଷ୍ଟିଲବୋର୍, ମୁଣ୍ଡିକିଣ ଏପରିକି ଯୋଡ଼ାଏ ସୁଟକେଇରେ ଗୋଟାଏ ଗୋଦାମ ସୃଷ୍ଟି ହୋଇଗଲା । ପଚିଶ ବର୍ଷ ବୈଜ୍ଞିକ ଅବସ୍ଥାରେ ରହୁଥିବାରୁ ସ୍ତ୍ରୀ ଲୋକଙ୍କ ସନ୍ନିଧି ବିଶେଷତଃ ସେମାନଙ୍କ ଅଙ୍ଗଗନ୍ଧ ମହକ ମୁଁ ସହିପାରେନା; ପିଲାଝିଲାଙ୍କ ଅହର କୁଧବାଦନା ଏଲର୍ଜି ସୃଷ୍ଟି କରେ । ପ୍ରାୟ ଅଧେର ମିନିଟ୍ ପର୍ଯ୍ୟନ୍ତ ଚାଲିଲା ଧଡ଼୍‌ଧାଡ଼୍ ଝଡ଼୍‌ଖଡ଼୍ ଶବ୍ଦ । "ମେନେଜ କରିନେବା", "ଏଡ଼୍‌ଜଷ୍ଟ କରିନେବା" ଶବ୍ଦ ପ୍ରାୟ ଦଳର ସମସ୍ତଙ୍କ ମୁହଁରୁ କମାଗତ ବାହାରୁ ଥାଏ ଏବଂ ବୁଗୁଗୁ ବାକ୍ସପତ୍ର ଉଠାଉଠି ଚାଲିଥାଏ ।

ମୁଁ ବି ତାଙ୍କ ଦେଖାଶିଖା ଏଡ଼୍‌ଜଷ୍ଟ କରିବାକୁ ପ୍ରସ୍ତୁତ ହେଲି । ଅଠୋଟି ଘଣ୍ଟା ସମୟ ଲାଗିବ ପହଞ୍ଚିବାକୁ । ମୋତେ ହୁଏତ ଯୁଗେ । ମୁଁ ବା ଏଡ଼୍‌ଜଷ୍ଟ କ'ଣ କରିବି ? ମୂର୍ଦ୍ଧାର ବା ମୁମୂର୍ଷୁ ଯେଉଁଠି ପଡ଼ିଛି ସେଇଠି ତ ପଡ଼ିଥିବ । ଥରେ ନିଦ ହୋଇଗଲେ ରାତିଟା କଟିଯିବ । କାଳେ ଯାତ୍ରୀମାନେ ମୋର ଯନ୍ତ୍ରଣା ଜୋର ଦ୍ରୁତ ବିରକ୍ତ ହୋଇ ଅଭିଶାପ ଦେବେ ସେଥିପାଇଁ କାମ୍ପ କୋହ ହମ୍ବାଲ ନେଇ ଅପେକ୍ଷା କରୁଥାଏଁ ନିଦ୍ରାଦେବୀଙ୍କି ! Sleep ! Blessed from pole to pole; the balm of troubled minds. କିନ୍ତୁ ସିମିତ Macbeth doth murder sleep; sleep no more." ଶବ୍ଦରେ ରାଜପ୍ରାସାଦ ପ୍ରକମ୍ପିତ ହେଉଥିଲା ଏଠି Sleeper Coach ସିମିତ ହେଉଛି ଯେ ! ଯାତ୍ରୀମାନେ ମୋ ପାଖରେ ନିଦକୁ ହତ୍ୟା କରିବାରେ ଲାଗିପଡ଼ିଛନ୍ତି । ମୁଁ ଶୋଇବି କିମିତ ?

ଅଣ୍ଡା ସିମିତ ନାହିଁ ତଥାପି ଝରକା କବାଟ ସବୁ ବନ୍ଦ । କାଲେ ବୁଢ଼ାଙ୍କୁ ପିଲାଝିଲାଙ୍କୁ ଅଣ୍ଡା ଲାଗିଯିବ ! ଗରମ ସ୍ୱେଟର ମାଙ୍କଡ଼ ଟୋପି ଭେଳ ଯାଇ !

ସେମାନଙ୍କର ଏଡ୍‌ଜଷ୍ଟମେଣ୍ଟ୍ ମେନେଜ୍‌ମେଣ୍ଟ୍ ଦେଖି ଦେଖି ଯନ୍ତ୍ରଣା ଲଘୁ କରୁଥାଏଁ । ପ୍ରଥମ ବଡ଼ ଏଡ୍‌ଜଷ୍ଟମେଣ୍ଟ୍ ହେଲା ଗୋଟିଏ ମୋଟାସୋଟା ବୁଢ଼ାକୁ ଅଗଆନ କରିବା । ଅଣିହୋଇ ଦେଖିଲି କମ୍ପାର୍ଟମେଣ୍ଟର ଗୋଟିକିଆ ସିଟ୍‌ରେ ଯେଉଁ ବୁଢ଼ାଟି ଥିଲା ତାକୁ ଦୁ'ଜଣ ଭେଣ୍ଡିଆ ଧରାଧରି ଟେକାଟେକି କରି ଆଣି ପହଞ୍ଚାଇଲେ ମୋର ପାଖ ସମାନ୍ତର ତଳ ବାର୍ଥରେ ଏବଂ ବେଶ୍ ନରମ ଶେଯ ତକିଆ ଆଦି ଦେଇ ଦୁଇ ସ୍ତ୍ରୀଲୋକ ପ୍ରସ୍ତୁତ କରିଥିବା ଶଯ୍ୟାରେ ଠାକୁରପରି ବସାଇଲେ । ତୁଳନା ବୈପରୀତ୍ୟରେ ମୁଁ ନିଜକୁ ହୀନ ମନେକରି ବ୍ୟଥିତ ହେଲି । ଅନୁମାନ କଲି ବୁଢ଼ାଟିର ବି ମୋରି ରୋଗ । ଅସ୍ଥାବଥା, ସାମ୍ୟାଟିକା; ମାରିବ ନାହିଁ ମଲାପରି କରିଦେବ ।

ଘୂରିଅଡ଼େ ଆଖିପକାଇ ଦେଖିନେଲି । ଦୁଇବୁଢ଼ା ପାଖାପାଖି ଦୁଇ ତଳ ବାର୍ଥରେ । ଆପାର ବାର୍ଥରେ କଏ ଦୁହେଁ ଅଛନ୍ତି ଜଣାପଡ଼ୁନାହାନ୍ତି । ଘୁଙ୍ଗୁଡ଼ି ଶବ୍ଦ ତଳକୁ ବେଶ୍ ଶୁଭୁଛି । ଆମର ଗୋଡ଼ତଳେ ଦୁଇ ବାର୍ଥରେ ଗୋଟିଏ ପେଅର ଏବଂ ତାଙ୍କ ପିଲା ବା ପିଲି । ମୋ ଉପରେ ମଝିବାର୍ଥ ଦୁଇଟାରେ ଆଉ ଗୋଟିଏ ପେଅର ଏବଂ ତାଙ୍କ ପିଲା ବା ପିଲି । ସମସ୍ତଙ୍କ ଗଲା ମୋଟା; ସ୍ୱାସ୍ଥ୍ୟ ଚମତ୍କାର । ଧନହମ୍ବଦର ଔଦ୍ଧତ୍ୟ ପୂର୍ଣ୍ଣମାତ୍ରାରେ । ଗରିବ ଥିଲେ । ଏବେ ଏବେ ଗ୍ରାଜନୀତି କରି ବା କଣ୍ଟ୍ରାକ୍ଟ୍‌ରେ ଅମାପ ଟଙ୍କା ପାଇ ପରାକ୍ରମ ଦେଖାଉଛନ୍ତି ।

ଦୁଇ ଭେଣ୍ଡିଆ କର୍ମଚାରୀପରି ହୋଇ ବଡ଼ବଡ଼ ବାକ୍ସ ଓ ବୋଝକୁ ସିଟ୍‌ତଳେ ଜାକିଜୁକି ପୂରାଇଲେ । ଦୁଇଜଣ ସ୍ତ୍ରୀ ଯେଝା ସ୍ୱାମୀ ଓ ପିଲାଝିଲା ନେଇ ମୋ ଗୋଡ଼ତଳେ ବାର୍ଥରେ ଅସ୍ଥାନ ଜମେଇଲେ ଅଳ୍ପ ସମୟ ପାଇଁ । ଉଦ୍ଦେଶ୍ୟ, ଦୁଇ ମାଙ୍କଡ଼ମୁହାଁ ପିଲାଙ୍କୁ ଖୁଆଇପିଆଇ ଶୋଇବା ପାଇଁ ପ୍ରସ୍ତୁତ କରିବେ । ଦୁଇ ସ୍ୱାମୀ ମଧ୍ୟ ସେମାନଙ୍କ ହସ୍ତତ ଯୋଗଦେଲେ । ଅମୁଲସ୍ପ୍ରେ, ଡବା, ଗରମ ପାଣି, ଫିଡ଼ିଂ ବଟଲ, ଚାମଚ, ତଉଲିଆ ଖୋଜାଖୋଜି କରି ଯୋଗାଇଲେ ଏକ୍‌ସପାର୍ଟ ଭଳି । ଧନୀଘର ସ୍ତ୍ରୀ ଲୋକେ ପିଲାଝିଲା ଜନ୍ମ କରିବେ; କିନ୍ତୁ ସେମାନଙ୍କ ସେବା

କରବେ ସ୍ୱାମୀମାନେ । ବାନ୍ତ କରବା ପର୍ଯ୍ୟନ୍ତ ଦୁଇ ଛୁଆଙ୍କୁ ସେମାନେ ଖୁଆଇଲେ ଏବଂ ଅଂଘଣ୍ଟାଏ ପାକେ ପିଠି ପିଠିରେ ଆପୁଡ଼ାଇ ଶୁଆଇଦେଲେ । ସେମାନଙ୍କ ଆଚରଣ, ବ୍ୟବହାର, ଭାବଭଙ୍ଗୀ, କଥାବାର୍ତ୍ତାରୁ ବୁଝିଲି ସେମାନଙ୍କ ପରସ୍ପର ସମ୍ପର୍କ । ବୁଢ଼ା ମୋର ପର ବେଷ୍ଟୀଜ । ତା' ସାଙ୍ଗରେ ଅଛନ୍ତି ପୁଅ ବୋହୂ ଓ ନାତୁଣୀ ଝିଅ ଜୋଇଁ ଓ ନାତି । ମୋ ପୁଅ ବୋହୂ ଝିଅ ଜୋଇଁ ବି ଅଛନ୍ତି ସ୍ୱିଜରଲେଣ୍ଡରେ ସେଇଁଠାକୁ ଆମେ ସମସ୍ତେ ଯାଉଛୁ । ହେଲେ, ମୁଁ ଏଠି ଏକେଲା, ସହାୟହୀନ ।

ପିଲାପିଲି ଦୁ'ଟା ଶୋଇଯିବା ପରେ ଭାବିଲି ସେବାପର୍ବ ଶେଷହେଲା । ମାତ୍ର ଏ ଆରମ୍ଭ ମାତ୍ର । ଦୁଃଖକଷ୍ଟ, ବିରକ୍ତି ଏବଂ ଉପାୟ ଶକ୍ତି ସାମର୍ଥ୍ୟହୀନତାରେ ମୋର ଆଖି ମୁଦହୋଇ ଆସୁଥିଲା । ପାଖ ବାର୍ଥର ସଙ୍ଗୀତଟି ମଧ୍ୟ ମୋର ପରି ଆଚରଣ କରୁଥିଲେ । ମାତ୍ର ହଠାତ୍ ଆମେ ଦୁହେଁ ଆଖିଫିଟାଇ ପରସ୍ପରଙ୍କୁ ଚାହିଁଲୁ । ନୂତନ ସେବାପର୍ବ ଆରମ୍ଭ ହେଲା । ପିଲାଝିଅଙ୍କୁ ବାଥ୍‌ରୁମ୍‌ରୁ ଫେରାଇଆଣି ବାକ୍‌ସପେଟ। ଧଡ଼ାଧାଡ଼ ଫିଟାଇ ନିଜ ପାଇଁ ପୁଣି ସ୍ୱେଟର, ଶାଲ, ସ୍କାର୍ଫ ଗୋଟାକ୍‌ ଗୋଟା ବାହାର କରି ଘୋଡ଼ିବାକୁ ଆରମ୍ଭ କଲେ ଏବଂ ସ୍ୱାମୀମାନଙ୍କ ଅଙ୍ଗକୁ ପୋଷାକପତ୍ର ଘୋଡ଼ଣି ଗୋଟାକୁ ଗୋଟା ଷ୍ଟାଇଲରେ ଫୋପାଡ଼ିବାକୁ ଲାଗିଲେ । "ବାପାଙ୍କୁ ଯଦି ନିଦ ହୋଇଯାଏ ବେଶ୍ ଆରାମରେ ପହଞ୍ଚିଯିବା ।" ପ୍ରତ୍ୟେକଙ୍କ ମୁହଁରେ ସେଇ କଥା । ସ୍ୱାମୀଦୁହେଁ କହିଲେ, "ତୁମେ ଦୁହେଁ ଦଣ୍ଡେ ଗଡ଼ିଯାଅ, ଆମେ ଚାହିଁଛୁ; ବାପାଙ୍କର ନିମିତ୍ତ କିଛି ଅସୁବିଧା କଷ୍ଟ ନ ହୁଏ । ଆମେ ଜଗିଛୁଁ; ଯଦିଏ ତୁମର ନିଦ ହୋଇଗଲେ ଡାକଦେବୁଁ, ପାଳିକରି ଜଗିଲେ କେହି ଉଜାଗର ରହିବା ପ୍ରଶ୍ନ ଉଠିବ ନାହିଁ । ବାପା ବି ନିରାଲମ୍ବ ଶୋଇଯିବେ ।" ପାଉଁଜରେ ଚକଚକ କରୁଥିବା ପାଦ ଯୋଡ଼ାକ କମ୍ବଳ ଭିତରକୁ ଟାଣିନେଇ ପିଲାଝିଅଙ୍କୁ ଗୁଡ଼ରେ ଜାକି ମହିଳା ଦୁ'ଜଣ ଶୋଇଗଲେ । ଆମ ଇଲାକାଟି ଦଣ୍ଡେ ପାଇଁ ଶାନ୍ତ । ନିସ୍ତବ୍ଧ ।

ତା'ପରେ ଶୁଣିଲି ପିଲୁସେବା । ଶଳାଭଣୋଇ କୁହାକୁହି ହେଲେ, "ବାସ୍ତବିକ ! ସେବା ହିଁ ରୋଗୀକି ଅରୋଗ୍ୟ କରିଥାଏ । ସେବାର ଅଭାବରେ ରୋଗୀ ଯନ୍ତ୍ରଣା ପାଏ । ଔଷଧ ନିମିତ୍ତ କିଛି ନୁହେଁ । ସାଥୀ ଅଭାବରେ ମାନସିକ ପୀଡ଼ା ବୃଦ୍ଧିହୁଏ ।"

"ବାପା !" ପୁଅ ଆରମ୍ଭ କଲେ । "ଶୋଇପଡ଼ ।" ତାପରେ ଫୁଲଭାଙ୍ଗ ବାପାଙ୍କ ମୁଣ୍ଡତଳେ ଦେଇ ଗୋଡ଼ର ଜୋତା ଛଡ଼ାଇ ଦେଲେ । ବୋହୂ କିଛି ଧରିଲେ । "ବାପା ! ଝରକା ଖୋଲି କରିଦେବି ? ନା ବନ୍ଦଥିବ ?" ବାପାଙ୍କର କୌଣସି ପ୍ରଶ୍ନର ଉତ୍ତର ନାହିଁ । ସେମାନଙ୍କ ପ୍ରତିଟି ଶରଧା ପ୍ରଶ୍ନ ତାଙ୍କ ସ୍ତବ୍ଧ କରିଦ ଦେଉଛି ପରି ମନେ ଲାଗୁଥାଏ । ଜଣେ ପରେ ଜଣେ ବୁଢ଼ାଙ୍କୁ ଆରାମ ଶାନ୍ତି ଦେବା ପାଇଁ ପଚାରୁଥାନ୍ତି, "ମଶାରି ବାନ୍ଧିବ ?" "ପାଣି ପିଇବ ?" "ଶୋଇପଡ଼ିବ ?" "ଝରକାପଟେ ମୁଣ୍ଡ କରିବ ?" "ବାଥ୍‌ରୁମ ଯିବ ?" ମୋତେ ଯଦି ମୋ ପୁଅ ବୋହୂ ଏସବୁ ପ୍ରଶ୍ନମାନ ପଚାରିଥାନ୍ତେ ତେବେ ମୁଁ କହିଥାନ୍ତି, "ତୁମେ ଶୋଇପଡ଼, ମୋର କିଛି ଲୋଡ଼ା ନାହିଁ ନିଦ ଛଡ଼ା ।" "ଭଲଲାଗୁଛି ତ ଟିକିଏ ?" ପୁଅ ପଚାରନ୍ତେ ବୋହୂ ପଚାରିଲେ, "ନିଦ ହେବଲେଟ୍ ଗୋଟାଏ ଦେବି ?" ସେବାସ୍ତବରେ ଦୁହେଁ ଯିମିତି ପ୍ରତିଯୋଗିତା କଲେ ମୁଁ ବେଶ୍ ଜାଣିପାରିଲି ବୁଢ଼ାର ଗୁଡ଼ାଏ ଜମିଜାଗା ଓ ପ୍ରଚୁର ଟଙ୍କା ପଇସା ଅଛି ଯାହା ଉପରେ ଆଖି ରଖିଛନ୍ତି ଦୁହେଁ ବୋଧହୁଏ । ମୁଁ ବେଶ୍ ଜାଣିଛି ଆଜି ରାତିଟା ବିନା ନିଦରେ କଟିବ, କାଲି ସକାଳକୁ ହାତଗୋଡ଼ stiff ହୋଇ ଯାଇଥିବ ବା ପଡ଼ିଯାଇଥିବ ପେରାଲାଇସିସ୍‌ରେ । ଲୋକ ବାର୍ଥ ରିଜର୍ଭ କରିଥାଏ ଶୋଇବା ପାଇଁ ସିନା ! ବାରଟଙ୍କା ମୋର ଅକାରଣ ଖର୍ଚ୍ଚ ହେଲା । ପୁଅ ବୋହୂ କିଛି ଦେଲେ ନାହିଁ କି ବାପା କିଛି ନେଲେ ନାହିଁ । ସବୁଥିରେ 'ନା' । ଦୁହେଁ ବିରକ୍ତ ହୋଇ ଲୁଚାଇ ଲୁଚାଇ ସିଗାରେଟ୍ ଟାଣିଲେ ଏବଂ ଇଂରାଜୀ ଶବ୍ଦ ରଖି କଥାବାର୍ତ୍ତା ହେଲେ – ଏମିତି "Obstinate old manକୁ କିଏ cure କରିପାରିବ ।" ସେବାରେ ହାରମାନି ସ୍ତ୍ରୀମାନଙ୍କୁ ଉଠାଇଲେ । ସେମାନେ ସ୍ୱାମୀମାନଙ୍କ ଉପରେ ଦାୟିତ୍ୱ ଦେଇ ବେଶ୍ ଆରାମରେ ଶୋଇପାରନ୍ତି । ଓଃ ଆଃ ଉଁ ଆଁ ଶବ୍ଦ ସହିତ ଦୁହେଁ ଅଳସ ଭାଙ୍ଗି, ହାଇମାରି ଉଠିଲେ ଏବଂ ଆରମ୍ଭ ହେଲା ସେବା ।

ଖଡ଼ଗପୁର ଷ୍ଟେସନ ପହଞ୍ଚିବାର ମୁଁ ଅନ୍ଦାଜରେ ଜାଣିପାରିଲି । ଦୁଇଘଣ୍ଟା କଟିଗଲାଣି ଦୁଇ ସଙ୍ଗାତଙ୍କ ବିନା ନିଦ୍ରାରେ । ସେବାଧର୍ମ ପାଳନ କରିବାରେ ଝିଅ ବୋହୂ-ପଣକୁ ପଡ଼ିବେ କେମିତି ? ପୁଅ ବୋହୂଙ୍କ ବୁଢ଼ାର ସମ୍ପଦ ଉପରେ ଆଖି ବୋଲି ଝିଅବୋହୂ କାହିଁକି ସେମିତି ନ କରିବେ ? ବାପା ଓ ଶ୍ୱଶୁରଙ୍କୁ ପ୍ରୀତି କରି

ପାଉଲେ ସବୁ ଦେବତା ପ୍ରୀତିଲାଭ କରନ୍ତି । ପୁରୁଷମାନେ କେବେ ସେବା କରିପାରନ୍ତି ? ତେଣୁ ଏ ଦୁହେଁ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହେଲେ ।

"ବାପା, ଡାବ ଗୋଟାଏ ଆଣିବା ?" "କୋଲଡ୍ ଡ୍ରିଙ୍କ୍ ଗୋଟାଏ ଖାଆନ୍ତୁ । ପେଟକୁ ଗୁଣ କରିବ ।" "ଆରେ ! ବାପାଙ୍କୁ ସବୁ ଔଷଧ ସେମାନେ ଦେଇଛନ୍ତି କି ନାହିଁ ?" "ବାପା ! ଗୋଟେ କାମ୍ପୋଜ ଟେବଲେଟ୍ ଖାଇ ଶୋଇ ଯାଆନ୍ତୁ ।" "ଗୋଡ଼ହାତ ଘଷିଦେବି ?" "ଏପଲ ଗୋଟାଏ କାଟିଦିଏ ?" ଏମାନେ ଯେଉଁସବୁ ଉପଯୁକ୍ତ ବ୍ୟବସ୍ଥା କଲେ ସେଥିରେ ବୁଢ଼ାବାଇର କିଛି ଉପକାର ହେଉ ନ ହେଉ ମନେ ମନେ ମୁଁ ସେଇସବୁ ଖାଇପିଇ ପରିତୃପ୍ତ ହେଲାପରି ଭାବିଲି ଏବଂ ମୋ ଆଖିପତା କଅଁଳ ଗଳାର ନରମକଥା ନିଦ ଗୀତ ପରି କାମ ଦେଉଛି ପରି ଲାଗିଲା ।

ଗାଡ଼ି ଖଡ଼ଗପୁର କେତେବେଳେ ଛାଡ଼ିଲା ମୁଁ ଜାଣିପାରିଲି ନାହିଁ । ସଙ୍ଗାତଟି ମୋର କେଡ଼େ ଭାଗ୍ୟବାନ୍ ମୁଁ କେତେ ହୀନମାନ ସେଇକଥା ଭାବିଲେ ବି, ତାଙ୍କ ମେଲା ହୋଇଥିବା ଆଖି ଦି'ଟାକୁ ନିର୍ନିମେଷ ନୟନରେ ଚାହିଁ ଚାହିଁ ମୋର ଆଖି ବନ୍ଦ ହୋଇଗଲା । ସେବାର ପାଳି ତା'ପରେ କାହାର ପଡ଼ିଲା ମୁଁ ଜାଣି-ପାରିଲି ନାହିଁ ।

ମନୋହରପୁର ଷ୍ଟେସନ ପାର ହେଲାବେଳକୁ କଡ଼ୋଡ଼ ଶବ୍ଦରୁ ମୁ ତ୍ର ପାଇ ଆଖି ମେଲାଇଲି । ଦେଖିଲି ଯିମିତି ଭଙ୍ଗୀରେ ସଙ୍ଗାତଟି ବସିଥିଲେ ସେମିତି ଜଗନ୍ନାଥ ପରି ବସିଛନ୍ତି । ଆଖିଡ଼ିମା ବେଶୀ ବିସ୍ଫାରିତ, ଗାଲ ଆହୁରି ଠକିସ୍ତ, ମୁହଁ ଏକାବେଳକେ ଶୁଖିଲା । ମୁଁ ଏକାଦଫମେ ତାଙ୍କୁ ଦଣ୍ଡେ ଚାହିଁଲା ପରେ ସେ ଦୟନୀୟ କଣ୍ଠକୁ ସଫା କରି କ୍ଷୀଣ ଭଙ୍ଗା ଭଙ୍ଗା ଗଳାରେ କହିଲେ, "ଆପଣଙ୍କର ବେଶ୍ କଡ଼େ ନିଦ ହୋଇଗଲା, କେଡ଼େ ଜୋର ଆପଣ ଘୁଙ୍ଗୁଡ଼ି ମାରୁଥିଲେ । ମୁଁ ଶୋଇବା ପାଇଁ ଯେତେ ଯେତେ ଚେଷ୍ଟା କଲେ ବି ମୋଟେ ଶୋଇପାରିଲି ନାହିଁ । ଆପଣଙ୍କୁ ଥରେ ଦି'ଥର ଡାକିଥିଲି । ବାଥ୍‌ରୁମ୍‌କୁ ଯିବା ପାଇଁ ସାହାଯ୍ୟ ଟିକିଏ ଯଦି କରି ଥାଆନ୍ତେ ।"

"ମୁଁ ସାହାଯ୍ୟ କରିଥାନ୍ତି ! ମୁଁ ଯେ ଏକାବେଳକେ ଅଥର୍ବ । ସାନପୁଅ ମୋତେ ଏଇଠି ଶୁଆଇ ଦେଇ ଯାଇଛି, ମୁଁ ଅପେକ୍ଷା କରିଛି ଷ୍ଟେସନ ପହଞ୍ଚିଲେ ବଡ଼

ପୁଅ ବୋହୂ, ଝିଅ ଜୋଇଁ ଯଦି ଆସିଥିବେ ତେବେ ମୋତେ ଧରାଧରି ଉଠାଉଠି କରି ଘରକୁ ବା ଡାକ୍ତରଖାନାକୁ ନେଇଯିବେ। ମୋର ବାତରୋଗ, ଅଣ୍ଟାବଥା ରୋଗ। ମାଡବ ନାହିଁ ପଙ୍ଗୁ କରିଦବ। ବଗ୍ରାମ ଯାହାକୁ ବେଡ୍‌ରେଷ୍ଟ କହନ୍ତି ଏ ରୋଗରେ ଏକାନ୍ତ ଲୋଡ଼ା।"

ହଙ୍ଗୋତ ଉତ୍ତର ଦେଲେ, "ଆପଣ କେଡ଼େ ଭାଗ୍ୟବାନ୍! ପୁଅ ବୋହୂ, ଝିଅ ଜୋଇଁ କେହି ପାଖରେ ନାହାନ୍ତି। ସେମାନେ ଥିଲେ ବା କ'ଣ କରି ପାରିଥାଆନ୍ତେ। ଆଠଘଣ୍ଟା ସମସ୍ତ କୌଣସି ମତେ ଆପଣ କଟାଇ ଦେଲେ। ଦୁଇ ତିନି ଘଣ୍ଟା ଆରାମରେ ଘୁଙ୍ଗୁଡ଼ିମାରି ଶୋଇଗଲେ। ମୋର ଯନ୍ତ୍ରଣାର ସୀମା ନାହିଁ। ନିଦ ଔଷଧରେ ବି ନିଦ ହେଉନି। ଯାହା ବା ହୋଇଥାନ୍ତା ମୋ ନିଜ ଲୋକ ଅର୍ଥାତ୍ ସ୍ୱଜନଙ୍କ ପାଇଁ ତାହା ହୋଇପାରିଲା ନାହିଁ। କେତେବେଳେ ଟିକିଏ ଯଦି ଆଖି ବୁଜିଆସିଲା ତ 'ବାପା' 'ବାପା' ଡାକ। ପୁଅ ନ ହେଲେ ଝିଅ, ଜୋଇଁ ନ ହେଲେ ବୋହୂ ବୁଢ଼ାକୁ ବୁଢ଼ା ଡାକଗୁଡ଼ି ନିଦ ଭାଙ୍ଗି ଦେବାକୁ ଲାଗିଲେ। ଜୀବନଯାକ ଏତେଥର ବାପା ବାପା ଡାକ ଶୁଣି ନ ଥିବି। ମୋର ଅଭାବ ଅସୁବିଧା କଥା ଏତେ ଲୋକ ଏତେ ଥର ବୁଝାବୁଝି କରିବାକୁ ବା ମୋର ସେବା ଶୁଶ୍ରୂଷା କରିବାକୁ ପ୍ରତିଯୋଗିତା କରି ନ ଥିବେ। ଯେତେବେଳେ ସେମାନେ ଥକିଯାଆନ୍ତି ସେମାନଙ୍କର ଦୁଇ ପିଲାଝିଲା କନ୍ଦାକଟା ବା ଚିତ୍କାର କରି ତାଙ୍କ ସ୍ଥାନ ପୂରଣ କରନ୍ତି। ମୁଁ ଯାହା ବୁଝିଲି ବୁଢ଼ାଲୋକର ବା ରୋଗୀର କେହି ସହାୟ ନାହିଁ। ମାନୁଛି ସେମାନଙ୍କର ସେବା ସାଥୀ ଦରକାର; କିନ୍ତୁ ଏତେ ମାତ୍ରାରେ ଦରଦ ସହାନୁଭୂତି ଓଲଟା ଫଳ ଦିଏ। ମୁଁ ଯଦି ସେମାନଙ୍କୁ ରୋକଠୋକ କହିଦିଏ ମୋର ସେବା ଶୁଶ୍ରୂଷା ଦରକାର ନାହିଁ ତେବେ ସେମାନେ ରାଗିଯିବେ ଏବଂ ଇଂରାଜୀରେ କଥାବାର୍ତ୍ତା ହେବେ ମୋର ଏକଜିଦିଆ ଅବୁଝା ଗୁଣ ବିଷୟରେ। ମୋଟ ଉପରେ ସେବାଧର୍ମ ପାଳନରେ ସିମିତି ତାଙ୍କର ବାଧା ବ୍ୟତିକ୍ରମ ନ ଉପୁଜେ।"

ଅବଶେଷରେ ରାଇଟ୍ ଟାଇମ୍‌ରେ ଟ୍ରେନ ରାଉରକେଲା ଷ୍ଟେସନ ଧଇଲା। ବାକ୍ସ ବୁକ୍ସ୍‌ପତ୍ର ପିଲାଝିଲାଙ୍କର ପ୍ଲାଟ୍‌ଫର୍ମକୁ ବାହାରିବା ପ୍ରାୟ ପ୍ରାୟ ରୁଦ୍ଧ ହୋଇଗଲା। ସ୍ତ୍ରୀ ଲୋକ ଦୁହେଁ ଇମିତି ସ୍ଥାନରେ ଛିଡ଼ାହୋଇ ରହିଲେ ଯେ ତାଙ୍କୁ

ଅତିକ୍ରମ କରି କୌଣସି ଭଦ୍ରଲୋକ ବାହାରିଯିବାର ଉପାୟ ରହିଲା ନାହିଁ । ମୁଁ ମୋ ପିଲାଛିଲିଙ୍କୁ ଦେଖୁଛି; କିନ୍ତୁ ସେମାନେ ମୋ ପାଖ ପହଞ୍ଚି ପାରୁ ନାହାନ୍ତି କି ମୁଁ ତାଙ୍କ ପାଖକୁ ପହଞ୍ଚି ପାରୁନାହିଁ । ଅନ୍ୟ ରାସ୍ତା ମୋତେ ଖୋଜିବାକୁ ପଡ଼ିଲା । ଗୁରୁଣ୍ଡି ଗୁରୁଣ୍ଡି ଦରଠିଆ ହୋଇ ଯାତ୍ରୀମାନଙ୍କ ପାଖରୁ ଗାଳିଭର୍ତ୍ସନା ଶୁଣି ଅପର ଦରଜା ପହଞ୍ଚିଲି ଏବଂ ବସି କରି ପ୍ଲାଟଫର୍ମକୁ ଧଇଲି ।

ପୁଅ ବୋହୂ ଝିଅ ଜୋଇଁ (କାହାରି ଶିଶୁ ପୁଅ ବା କନ୍ୟା ନ ଥିଲେ) ମୋତେ ପାଛୋଟି ନେବାକୁ ଧାଇଁଆସିଲେ । ଗାଡ଼ି ବାହାରେ ଥିଲି । ମୋର ଅବସ୍ଥା ଦେଖି କାନ୍ଦ କାନ୍ଦ ହୋଇ ଛଳଛଳ ଆଖିରେ ଧରାଧରି କରି ଗାଡ଼ି ପର୍ଯ୍ୟନ୍ତ ନେଇଗଲେ ।

ଆଶ୍ୱାସନା ଦେବା ଛଳରେ ଡାକ୍ତର ପୁଅ କହିଲା, "ଏ ରୋଗ କିଛି ନୁହେଁ, ନିଦ୍ରା ଓ ବିଶ୍ରାମ । ଜୀବନଯାକ ଧାଁଧପଡ଼ କରି, ରେଳ ବସ୍‌ରେ ସାଇକେଲରେ ଦିନରାତି ଚଢ଼ାଚଢ଼ି କରି ଏ ବେମାର ବାହାରିଛି । ବୁଢ଼ାକାଳରେ ଏ ରୋଗ ସାଧାରଣତଃ ବାହାରିଥାଏ । ଔଷଧ କିଛି ନୁହେଁ, ସେବା ଓ ଯତ୍ନ ଅଧିକ ଦରକାର ଯିମିତି ରୋଗୀ କେତେବେଳେ ନ ଭାବେ ଯେ ଏକୁଟିଆ ବା unwanted ଅଦରକାରୀ ଜୀବ ବୋଲି । ଟୁନୁ ତା ବୋହୂ ପିଲା ସାଙ୍ଗରେ ଆସିଥାନ୍ତେ ବା ଆମେ ସମସ୍ତେ ଯାଇ ବାପାଙ୍କୁ ଆଣିଥାନ୍ତୁ ।"

"ଯାଇନ ବା ଟୁନୁ ଓ ବୋହୂ ସାଙ୍ଗରେ ସେବା ଯତ୍ନ ପାଇଁ ଆସି ନାହାନ୍ତି, ଭଲ ହୋଇଛି ।" କହିଲି । ଅଦୂରରେ ଟେକ୍‌ସି ଅପେକ୍ଷାରେ ଛିଡ଼ା ହୋଇଥିବା ଦଳଦଳକୁ ଦେଖାଇ କହିଲି, "ବାପା ! ବେଡ଼ିଂକୁ ଆଣ୍ଠେଇ ଉପରକୁ ମୁହଁ କରି ଚିତ୍‌ପଟାଙ୍ଗ ହୋଇଥିବା ମୋ ସଙ୍ଗାତ ବୁଢ଼ାକୁ—ତା କେସ୍ ସର୍ବତୋଭାବେ ସମାନ—ପଚାରିଲେ ସେ କହିବ କିମିତି ଆରାମରେ ପୂର୍ଣ୍ଣ ବିଶ୍ରାମ ସହିତ ମୋ ସାଙ୍ଗରେ ଆସିଛି ପୁଅ ବୋହୂ ଝିଅ ଜୋଇଁ ନାତିନାତୁଣୀଙ୍କ ଗହଣରେ ସମସ୍ତଙ୍କ ସେବା ଓ ସାନ୍ନିଧ୍ୟ ଲାଭକରି । ତା'ର ମୋର ଏତିକି ଫରକ ଯେ ତା'ର ଦେବା ପାଇଁ ଅଜସ୍ର ଧନ-

ବଢ଼ଳିତ ଯାହା ଉପରେ ଦାୟାଦମାନେ ଆଖି ରଖିପାରିବେ । ସେବାଧର୍ମକୁ ଉତ୍ସାହିତ କରିବା ପାଇଁ ମୋର ଫିକ୍ସଡ଼୍ ଡିପୋଜିଟ୍ ନାହିଁ । ତେଣୁ ମୋତେ 'ଏକେଲା ଚଲୋରେ' ଗୀତ ଗାଇବାକୁ ପଡ଼ିବ । ହାତରେ ଥିବ ବଡ଼ ଏକ ଦଣ୍ଡା ଯାହାକୁ ଅଣ୍ଟା ବା ଅବଲମ୍ବ କରି ଚାଲିବ ବା ପାରିଲେ ଭଣ୍ଡ ସେବାଧର୍ମୀଙ୍କ ମୁଣ୍ଡ ଫଟାଇବ ।"



# ସୋଽହମ୍

ସକାଳର ନିତ୍ୟକର୍ମ (ଯଥା ଦାନ୍ତପଟି ଘଷି ଗିଲାସେ ବାସିପାଣି ପିଇବା, ଯୋଡ଼ାଏ ଅଲ୍‌ଟ୍ରାମିକା ବିସ୍କୁଟ ଗ୍ରେଡ଼ାଇ କପେ ଚା ପିଇବା, ଦାଢ଼ି କାଟିବା, ପାଇଖାନା ଯିବା, ଗାଧୁଆପାଧୁଆ ପରେ ମୁଣ୍ଡ କୁଣ୍ଡାଇ ଚୁଳାରେ କାନଭିତରୁ ପାଣି ବାହାର କରିବା) ପରି ମୋର ପୂଜାପଦ୍ଧତି । ସରଳ, ବସ୍ତୁରବୁଦ୍ଧି ସମ୍ମତ । ହବୋପର ସମସ୍ୟାନୁସାରୀ, ସମସ୍ୟାନୁରୂପ । ମୋଟାମୋଟି ଏକ ଗୌଣକର୍ମ । କମ୍ ସମୟ ନିଏ । ମୋତେ ସକାଳ ଟ୍ରେନ ଧରି କର୍ମକ୍ଷେତ୍ରକୁ ଯିବାକୁ ପଡ଼େ । କିନ୍ତୁ ସକାଳର ପ୍ରଥମ କାମଟି ହେଲା ଫୁଲ ସଂଗ୍ରହ କରିବା, ନିଜ ବାଡ଼ିରୁ ନୁହେଁ ପଡ଼ୋଶୀଙ୍କ ବଗିଚାରୁ ।

ବାପା ମାଆ ଜେଜେ ଜେଜଙ୍କ ପରି ଆମେ ଦୁହେଁ ଶିବଭକ୍ତ । ଲିଙ୍ଗ ରୂପରେ, ପାଷାଣ ବା ମାର୍ବଲ ମୂର୍ତ୍ତିରୂପରେ ବା ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିର ଫଟୋରୂପରେ ଖୁବ୍ ନିଷ୍ଠା ଓ ବିଶ୍ୱାସରେ ନିର୍ଜଳା ଉପବାସ କରି ଛେପ ନ ଢୋକି ମହାଦେବଙ୍କ ପୂଜାଉପାସନା କରୁଥିଲୁଁ । ଆମେ ପୁରୁଷାନୁକ୍ରମିକ ଲକ୍ଷ୍ମୀଛଡ଼ା । ତେଣୁ ଏଇ ଦରିଦ୍ର, ଲଙ୍ଗଳାଫଙ୍ଗଳା, ସାପ ଟଣି ଗଳିଣ ଦୁଦୁରା ପ୍ରିୟ ଠାକୁରଙ୍କ ଅପଣାର ମୂର୍ତ୍ତିଶିବ ପୂଜା କରୁଥିଲୁ । ତା'ର ତାଣ୍ଡବ ନାଚ ଏପରି କି ତା'ର ସ୍ତୋତ୍ର "ଜଟାକଟାହସମ୍ଭ୍ରମ···ଧଗଧଗ ଧଗୋଜ୍ଜ୍ୱଳ···" ଆମକୁ ମନ୍ତ୍ରମୁଗ୍ଧ କରୁଥିଲା । କିନ୍ତୁ ଅକାଳରେ ଏକ ଶିବମନ୍ଦିରେ ଅର୍ଦ୍ଧାଙ୍ଗିନୀର ଏବଂ ପରେ ପରେ ଅନ୍ୟ ଏକ ଶିବମନ୍ଦିରେ ପୁତ୍ରସନ୍ତାନର ବିୟୋଗ ହେବାରୁ ମୁଁ ଶିବଙ୍କୁ ଶବ ଜ୍ଞାନକଲି । ପିଲାଦିନରେ ପାଦ୍ରୀ ପ୍ରଚାରକ ମୁହଁରୁ ଶୁଣିଥିବା "ଶିବ ପଥର କଟା କାଠ, ଅଉ ଦେବତା ମାଠମାଠ"

ଫଙ୍କ୍ରି ବାରମ୍ବାର ଗାଇଲି । ନିଜେ ନିରୀଶ୍ୱରବାଦୀ ହେଲି, ଅନ୍ୟଙ୍କୁ ନାନା ଯୁକ୍ତି ବାଢ଼ି ଈଶ୍ୱରଛଡ଼ା କରିବାକୁ ଚେଷ୍ଟାକଲି, ଏପରିକି ଈଶ୍ୱରଭକ୍ତଙ୍କୁ ଧିକ୍କାର ଗାଳିଗୁଳଜ କଲି । ଲୋକେ ମୋତେ ପାଗଳ ଭାବିଲେ, ଏପରିକି ମୋ ସାଙ୍ଗ ଛାଡ଼ିବାକୁ ଲାଗିଲେ ।

ଦିନେ ମୋର ହିତାକାଂକ୍ଷୀ ପରମବନ୍ଧୁ ସତେନ୍ଦ୍ର ବାବୁ ମୋ ଘରେ ଆସି ପହଞ୍ଚିଲେ । ଘରେ ପଶିଆସି ଚମକିପଡ଼ି ପଚାରିଲେ, "ଏ କାନ୍ଥରୁ ମହାଦେବଙ୍କ ଫଟୋ ଗଲା କୁଆଡ଼େ ?" ତତ୍‌କ୍ଷଣେ ମୁହଁରୁ ଉତ୍ତର ବାହାରିଲା "ବାଡ଼ ଗାଡ଼ିଆରେ ।" ଗୁରୁ ଗୁରୁ ହୋଇ କହି ଚାଲିଲି, ସେ ଠାକୁର ପୂଜାରେ କି ଲାଭ ? ଯେଉଁ ଠାକୁର ତୁମର ଦେବୁଠାରୁ ପ୍ରିୟ ଜେକୁ ତୁମ ପାଖରୁ ଛଡ଼ାଇ ନିଏ ? ନବୀନ ବର୍ଷର ନିର୍ଲଜ ନିର୍ଦ୍ଦୟୀର ଏଇ ପରିଣତି ! ଶିବ କ'ଣ ଆଉ କୌଣସି ଠାକୁରର ଏ ଘରେ ପ୍ରବେଶ ନାହିଁ ।" ବନ୍ଧୁ ଶାନ୍ତଶିଷ୍ଟ ଗଳାରେ କହିଲେ, ବନ୍ଧୁ ! ଠାକୁରଙ୍କୁ ଏତେ ରାଗୁଛ କାହିଁକି ? ସେ ତ ତୁମକୁ ଚିହ୍ନନ୍ତି ନାହିଁ !" ଖୁବ୍ କହିଛ ଏ ଠାକୁରଟା । ନିଜ ଉଆସକୁ ଦେହରେ ରଖି ହୁନିଆଁ ଘୂରୁଛି, ପୋଡ଼ୁଛି; ହିଂସାରେ ମୋର ପାଙ୍ଗଣ୍ଟିକୁ ମୋ ପାଖରୁ ଛଡ଼ାଇ ନେଲା କାହିଁକି ? Beware of the man whose God is in the skias." ନାନାଯୁକ୍ତିତର୍କେ, ବାଦ ବିସମ୍ବାଦ ପରେ ବନ୍ଧୁବର କହିଗଲେ "ଆପଣଙ୍କ ଶିବ ବଡ଼ ମାରତ୍ମକ ଦେବତା, କଠୋର ତା'ର ପରୀକ୍ଷା, ତ୍ୟାଗର ସେ ଏକ ମୂର୍ତ୍ତିମନ୍ତ ପ୍ରତୀକ, ଭକ୍ତ ·ପାଖରୁ ସେ ଚୂଡ଼ାନ୍ତ ତ୍ୟାଗ ଚାହେଁ ।" କେତେ ଦିନ, ମାସ, ବର୍ଷ ଧରି ବନ୍ଧୁଙ୍କ ପ୍ରେରଣାରେ ମୁଁ ନିରୀଶ୍ୱରବାଦୀ ସ୍ତରରୁ 'ଅମେ କିଛି ଜାଣୁନା' ସ୍ତରକୁ (Agnostic) ଉଠିଲି । ବାସ୍ ସେତିକି ।

ମନୁଷ୍ୟର ଔଦ୍ଧତ୍ୟ, ଦର୍ପ, ଦମ୍ଭ ବେଶିଦିନ ରହେ ନାହିଁ । ମୁଁ ଯିଏ କମ୍ବଳକୁ ଛାଡ଼ିଲି କମ୍ବଳ ମୋତେ ଛାଡ଼ୁନି ବରଂ ଜୋରରେ କାମୁଡ଼ି ଧରୁଛି ଦିନ ଦିନକୁ ଦିନ ଲାଗିଲା । ମଣିଷ ଜୀବନରେ ଏତେ ଦୁଃଖ, ଏତେ ଦୈନ୍ୟ, ଏତେ ବୈଫଲ୍ୟ, ନୈରାଶ୍ୟ, ହାହାକାର ଯେ ଢେଉପରେ ଢେଉ ଆସି ପହଁଚ ଜାଣି ନପାରିବା ମଣିଷକୁ ସମୁଦ୍ର ଯେପରି ତଳେ ଦିଏ ମୋତେ ବି ସିମିତ ଅଳ୍ପାକୁ କରିଦେଲା । ଅଣ୍ଡା କାହିଁ ? ନ

ତା'ତୋ, ନ ମାତା, ନ ବନ୍ଧୁ, ନ ଭ୍ରାତା । ଗଚ୍ଛ କାହିଁ ? quo vadis ? ସ୍ୱାମିଙ୍କ ନୋକଜ କ'ଣ ଏତେ କଷ୍ଟଜନ୍ମ !

ଗଚ୍ଛନ୍ତୁ ଗଚ୍ଛନ୍ତୁ ମମୈକା ଭବାନ ! ନା, ନା ଭବାନୀ ନୁହେଁ । ଆଉ ସିଏ ହେଉ ପଛେ । ଗୀତା, ଭାଗବତ, ଶାସ୍ତ୍ରପୁରାଣ ଧରିଲି । ଖୋଲ ସୁର, ଗୀତ, କବିତା, ଫମ୍ପା ଶୁଣିଲି ଲାଗିଲା । କିନ୍ତୁ ଅବଶେଷରେ ଏତିକି ଜାଣିହେଲା ଯେ ଶିବ ଛଡ଼ା ଅନ୍ୟ ଠାକୁରମାନଙ୍କୁ ମୁଦ୍ରା ଯାଞ୍ଚ କଲାପରି ଗୋଟିକି ଗୋଟି ବଜାର ପରୀକ୍ଷାନିରୀକ୍ଷା କଲି । କେହି ମୋ ଆଗରେ ଛିଡ଼ା ହୋଇପାରିଲେନି । ଆହୁରି ଦୁଃଖର କଥା ରକ୍ତମାଂସର ମଣିଷଙ୍କୁ ବା ବସିଥିବା ଲୋକଙ୍କୁ କୌଣସି ମତେ ଈଶ୍ୱରଙ୍କ ଆସନ ଦେଇ ପାରିଲି ନାହିଁ କାରଣ ସେମାନେ ପରିପୂର୍ଣ୍ଣ ନୁହନ୍ତି, ଭକ୍ତିର ଉଦ୍ରେକ କରିପାରନ୍ତି ନାହିଁ ।

ଅଲୌକିକ ଘଟଣା ଘଟିଲା ପରି ଅତଳ ସମୁଦ୍ରରେ ବୁଡ଼ିଯାଇଥିବା ମଣିଷଟିଏ ଭାସି ଆସୁଥିବା କେ୍ୟାତଷ୍ଖାନ୍ ଦାରୁଟିଏ ପାଇଲା । ପୂର୍ବରୁ ସେ ଦାରୁଦେବତାଙ୍କୁ ପାଇଲି । ଅରୂପ ଅରେଖ ନୁହେଁ, ବରଂ କୁରୂପ, ଅଭୁତ ଉଦ୍ଭଟ ମୂର୍ତ୍ତି । ଆଖିଦୁଇଟା ଅଜଗର ଯାପରି ଅକ୍ଷିପରି ଶୀକାରକୁ ମୋହ Mesmerise କଲାପରି ମୋତେ ଟାଣିନେଲା । ନା ନା ମୁଁ ଅପେ ଅପେ ଟାଣି ହୋଇଗଲି । ପୁଣି ସ୍ୱସ୍ଥାନକୁ ଆସିଲି । ପୁଣି ବନ୍ଧୁଲତା ଆସିଲା, କାନ୍ଥବାଡ଼ ପ୍ଲେଟଡାପ୍ ବଡ଼ ଦିଆସିଲି ମଟର ଯାଇକେଲ ସବୁଠି ଝୁଲିଲେ ତା'ର ଛବି । ଆଖି ଦିଟା ଯଥେଷ୍ଟ ।

କେଉଁ ଏକ ବ୍ୟବସାୟ ପ୍ରତିଷ୍ଠାନର କେଲେଣ୍ଡରରେ ଯେଉଁ ମୂର୍ତ୍ତି ଛପିଥିଲା ତାକୁ ଚନ୍ଦନଫ୍ରେମରେ ବନ୍ଧାଇ ଆଣି ଥୋଇଲି ଏବଂ ରଖିଲି ସେଇ ସ୍ଥାନରେ କିଛି ବର୍ଷ ପୂର୍ବେ ଯେଉଁଠି ଶିବଲିଙ୍ଗ ଥାପିଥିଲି । ଏଥର ସୁରଧରି ଗାଇଲି, "ମୁଦାଭଞ୍ଜି ନାସା ବଦନ କମଳାସ୍ୱାଦ ମଧୁପ ।"

ପୂଜା ପଦ୍ଧତି ସିମିତ ସହଜ ସରଳ ଗୁମ୍ଫକ । ଫୁଲଧରି ଛିଡ଼ାହୁଏ, ଦଣ୍ଡେ ଗୁହେଁ ମୂର୍ତ୍ତିକି, ତା'ର ଦୁଇ ଆଖି ମୋ ନାକ ଆଗରେ ମିଶିଲାମାତ୍ରେ ମୋର ପୂଜା

ଶେଷ । ଆଠଦଶ ଡେକେଣ୍ଡର କଥା । ବଳରାମ ସୁଭଦ୍ରା ଆଡ଼କୁ ଗ୍ରହିବାକୁ ବେଳ ନାହିଁ । ତାଛଡ଼ା ମୁଁ କୁହିପାରେ ନାହିଁ ଏ ଦୁହେଁ କାହିଁକି ଏଡ଼େ ବଡ଼ ଲୋକପାଖରେ ବସିଛନ୍ତି । ମନ୍ଦିରରେ ଦେଖିଛୁ ଜଗା ଦଶଟଙ୍କା ପାଇଲେ, ବଳରାମ ଦୁଇଟଙ୍କା, ସୁଭଦ୍ରା ଟଙ୍କାଏ ମଷାଏ ମାତ୍ର । ସେମାନଙ୍କ ଆଡ଼କୁ ହାତ ଯାଏନି ।

ଏମନ୍ତେ କେତେଦିନ ଗଲା । ଅମ୍ଭର ତୃପ୍ତି ନାହିଁ କି ଅସ୍ମତୃପ୍ତି ନାହିଁ । ପ୍ରତିଦିନ ସେଇ ଏକା କଥା : ଜୀବନ୍ତ କିଛୁ ଦେଖିକି ନାହିଁ । ଗାଡ଼ିଆକୁ ଫୋପାଡ଼ ପାରିଲି ନାହିଁ ଯିମିତି ଆଗରୁ ଶିବଙ୍କ ଫଟୋକୁ ବିସର୍ଜନ ଦେଇଥିଲି ।

ପିଲାଦିନରେ ପଢ଼ିଥିବା କଥାଗୁଡ଼ାକ ଜୀବନସାରା ମନେରହେ, କାମକୁ ମଧ୍ୟ ଆସେ । ପିତା ଧର୍ମ ପିତା ସ୍ୱର୍ଗ; ପିତାମାତା ପରି ଆଉ କେ ଅଛୁ ସଂସାରେ; ପିତାର ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବ ଦେବତା; ବାପା ମାଆଙ୍କୁ ଅନେକ ଦିନ ଧରି ହୃଦସ୍ଥାନରୁ ତଡ଼ି ଦେଇଥିଲି । ଜଗନ୍ନାଥଙ୍କ ପ୍ରତି ଅନାସ୍ଥାଭାବ ଆସନ୍ତେ ପୁଣି ହୃଦୟରେ ଯେଉଁ ଭେକ୍ୟୁମ୍ ସୃଷ୍ଟି ହେଲା ତାକୁ ପୂରଣ କରିବା ପାଇଁ ବାପା ମାଆଙ୍କ ଫଟୋ ଯୋଗାଡ଼ କଲି । ବଞ୍ଚିଥିବା ଅବସ୍ଥାରେ ବାପା ମାଆ ଏକାଠି ବସୁ ନଥିଲେ, ଏକାଠି ଯୋଡ଼ାଯୋଡ଼ ହୋଇ କାହିଁ ବାହାରକୁ ଯାଇ ନ ଥିଲେ । ଲାଜ ଲାଗୁଥିଲା ପରସ୍ପରକୁ । ଫଟୋରେ ମଧ୍ୟ ଏକାଠି ଯୋଡ଼ିହୋଇ ବସୁ ନଥିଲେ । ଛିଃ, ଲୋକେ କ'ଣ କହିବେ ? ପୁରୁଣା ଫଟୋରୁ ପୃଥକ୍ ପୃଥକ୍ ଥିବା ବାପାମାଆଙ୍କ ଛବି କାଟି ଦୁହିଁଙ୍କି ଏକାଠି କରି ବଡ଼ ଫଟୋଟିଏ ବନାଇଲି । କ୍ଷୀଣକାୟ, କ୍ଷୀଣକାୟା ଦୁଇପ୍ରାଣୀ ମଳିନ ବଦନ ପରିହିତ ଯୋଡ଼ିଏ ଜୀବ । ତଥାପି ସେମାନେ ଜନ୍ମଦାତା, ଅନ୍ନଦାତା, ଭୟତ୍ରାତା ଆଦି ପଞ୍ଚପିତାର ଏକାଧାରରେ । କେତେ ଦୁଃଖକଷ୍ଟ ନ ସହିଛନ୍ତି ଦୁହେଁ; କେଡ଼େ ନିଃସ୍ୱାର୍ଥ ! ଯୋଡ଼ିଏ ପାରିଙ୍କ ଜୀବନ ଲକ୍ଷ୍ୟ କରନ୍ତୁ । ଦିନଯାକ ପ୍ରତି ମୂହୂର୍ତ୍ତରେ ବାପା ନ ହେଲେ ମାଆ ଲୋଡ଼ି ସନ୍ତାନ ଦୁହିଁଙ୍କି ଖୁଆଉଛନ୍ତି । ନିଜେ ନ ଖାଇ କେତେ କେତେ ବାଟ ବରଣ କରି ଏବଂ ସନ୍ଧ୍ୟାରେ ବସାକୁ ଆସିବାରୁ ଅଙ୍କଟ ଅମାନିଆ ପିଲା ଦିହେଁ ପୁଣି ମୁହଁବ୍ୟାଦାନ କରି ମାଗନ୍ତି ଯେତେବେଳେ ସେମାନେ ନିଜ ତଣ୍ଟିରୁ ବାହାର କରି ଖୁଆଇଦିଅନ୍ତି ଓ ରାତିଯାକ ଉପାସରେ ଶୁଅନ୍ତି । ବାପା ମାଆଙ୍କୁ ଦେଖିଲେ ମତେ କାନ୍ଦ ମାଡ଼େ । ଅଶ୍ରୁଧାରା ବହେ ।

ଜଗନ୍ନାଥଙ୍କ ଫଟୋ ତଳଥାକରେ ରଖିଲି ବାପା ମାଆଙ୍କ ଫଟୋକୁ । ଜଗନ୍ନାଥଙ୍କୁ ଫୁଲଟିଏ ଦେଇ ଦଣ୍ଡେ ଧାନକରି ହାତଯୋଡ଼ି ନମସ୍କାର କଲାପରେ ବାପା ମାଆଙ୍କୁ ଫୁଲଟିଏ ସହିତ ଅଶ୍ରୁଳ ନମସ୍କାର ଜଣାଏ ଏବଂ ଖୁସିଲାଗେ ଯେ ପୁଅର କର୍ତ୍ତବ୍ୟ ସମ୍ପାଦନ କରୁଛି ।

ଖୁବ୍ ଗର୍ବ ଅନୁଭବ କରେ ଯେ ମୋର ସମସ୍ତ ଅଙ୍ଗପ୍ରତ୍ୟଙ୍ଗର ପ୍ରତିଫଳନ ବାପାଙ୍କ ଦେହେସ୍ୱରେ ଏବଂ ମାଆର ମୁହଁ ଓ ଚୁଲରେ ଅବିକଳ ମୋର ମୁହଁ ଓ ଚୁଲ ଦେଖି । ଭଗବାନ ମୋର ସ୍ରଷ୍ଟା; କିନ୍ତୁ ଏ ଦୁହେଁ ମୋର ସ୍ରଷ୍ଟା ହେତୁ ତେଣୁ ନମସ୍କାର ବାରମ୍ବାର ।

ଦିନେ ବାପା ମାଆଙ୍କୁ ଫୁଲଟିଏ ଦେଇସାରି ହାତଯୋଡ଼ି ଜୁହାର କରୁଛି କିଏ ଯିମିତି ମତେ କହିଲା, "ତୁମେ କିମିତି ଲୋକ ଭଲା ! ତୁମର ପଚିଶ ବର୍ଷଯାଏ ଯେମାନେ ତୁମକୁ ପାଳିଥିଲେ, ତା'ପରେ ଆଉ ପଚିଶ ବର୍ଷ ତୁମକୁ କିଏ ପାଳିଥିଲା, ବଞ୍ଚାଇଥିଲା, ଘରଦ୍ୱାର ଗଢ଼ିଥିଲା, ଛୁଆପିଲା ଦେଇ ବଂଶ ରକ୍ଷା କରିଥିଲା ? କିଏ ତୁମର ଛାୟା ପାଖରେ ଛାଇ ହୋଇ ରହିଥିଲା ?" ମୋର ଚେତା ପଶିଲା । ବଙ୍କାସୁନ୍ଥା ଥିବା ସ୍ନାଙ୍କ ସ୍ତ୍ରୀଙ୍କ ସୁନ୍ଦର ଫଟୋଟିଏ ତୁରନ୍ତ ବନ୍ଧାଇ ଆଣି ବାପା ମାଆଙ୍କ ଫଟୋ ଥିବା ଥାକ ତଳକୁ ରଖିଦେଲି ଏବଂ ଜଗନ୍ନାଥଙ୍କ ପରେ ବାପା ମାଆଙ୍କୁ ଓ ତାପରେ ନିଜ ସ୍ୱର୍ଗତା ସ୍ତ୍ରୀଙ୍କୁ କ୍ଷମାନୁସ୍ୱରେ ଫୁଲ ଦେଇ ନମସ୍କାର କରୁଛି ରହିଗଲି ଏବଂ ନିଜକୁ ପଚାରିଲି, ନିଜ ସ୍ତ୍ରୀକୁ ଫୁଲ ଚନ୍ଦନ ଦେଉଛି କେଉଁ ନ୍ୟାୟରେ ? ମନେପଡ଼ିଲା ଅଜା ଶ୍ୱଶୁରଙ୍କ କଥା । ଦିନେ ସେ ମତେ ପଚାରିଲେ "ତୁମେ କେତେଥର ଜନ୍ମିଲଣି ?" ମୁଁ କହିଲି ମଣିଷ କେତେଥର ଜନ୍ମନ୍ତି କି ? ମୁଁ ଥରେ ଜନ୍ମିଛି । ସେ ମୁଣ୍ଡ ହଲାଇ ପୁଣି ପଚାରିଲେ, "ତୁମର ପିଲାଝିଲା କେତୋଟି ?" ମୁଁ କହିଲି, "ଦୁଇଟି" । ସେ ଅଳ୍ପ ହସି କହିଲେ, "ତୁମେ ତିନିଥର ଜନ୍ମିଲଣି, ତୁମ ଜାୟା ଗର୍ଭରେ ।" ତାହେଲେ ମୋ ସ୍ତ୍ରୀ ମୋର ମାଆ ! ରାମକୃଷ୍ଣ ସାରଦାଙ୍କ ପଦତଳେ ପଡ଼ିଥିଲେ ତେବେ ଏହି ନ୍ୟାୟରେ । ଏକାଧାରରେ ମୋର ଛୁଆମାନଙ୍କ ମାଆ ଏବଂ ମୋର ମାଆ ରୂପରେ ତାଙ୍କର ଫଟୋ ପ୍ରତିଦିନ ଜଗନ୍ନାଥ, ବାପା ମାଆଙ୍କ ସହିତ ଫୁଲ ଓ ନମସ୍କାରର ଭାଗୀଦାର ହେଲା ।

ପୂଜା କରିବା ପାଇଁ ମଣିଷ ଏତେ ବ୍ୟଗ୍ର ଅଗ୍ରସ୍ତ ହୁଏ କାହିଁକି, ଯେତେ ପୂଜା କଲେ ତା' ମନ ମାନେ ନାହିଁ କାହିଁକି ଏବଂ ନୂଆ ନୂଆ ଠାକୁର ଖୋଜେ କାହିଁକି ? କାହିଁକି କେଜାଣି କାଠପଥର ମଲା ମଣିଷକୁ ତୃପ୍ତ ('ତୃପ୍ତ କହିଲେ ଠିକ୍ ହେବନି, ମନ ମାନିଲା ନାହିଁ କହିବା ଭଲ) ଆଉ ଏକ ଠାକୁର ଥାପିଲି । ଭଗବାନଙ୍କ ମୁଖନିଃସୃତ ବାଣୀ ବୋଲି ବାଇବେଲ, ଭଗବତ୍ ଗୀତା ଥିଲା । ସେ ଦୁଇଗ୍ରନ୍ଥ ସାଙ୍ଗକୁ ମୋର ଯେତେ ଯେତେ ଛପା ଗଳ୍ପବହି ଥିଲା ତାକୁ ଥାକକରି ସ୍ୱାମୀଙ୍କ ଫଟୋ ପାଖକୁ ଥୋଇଲି ଏବଂ ସେଇ ନିଜ ଲେଖା ବହିକୁ ପୂଜାକଲି, ସେଗୁଡ଼ିକରେ ମୋର ଅଲେଖା ଦେଖିଲି । ପ୍ରଥମଥର ବହିଟିଏ ଛପାହେଲେ ଜଗନ୍ନାଥ ମନ୍ଦିରକୁ ଯାଏ, ଅଙ୍ଗଲାଗି କରାଏ, ଧାଡ଼ାଏ ଦଧାଡ଼ ପୁରୋହିତ ସେଥିରୁ ପଢ଼ି ଠାକୁରଙ୍କୁ ଶୁଣାନ୍ତି । ତୁଳସୀ ଝଣ୍ଡାମାଳ ବହି ଭିତରେ ଥୋଇ ଘରକୁ ଆଣେ । ମୋର ନିଜବାଣୀ ଠାକୁରଙ୍କ ଭାଗବତ ବାଣୀରେ ପରିଣତ ହୁଏ । ବହି ଉପରେ ଲେଖିଦିଏଁ, "ଏ ବହି ଜଗନ୍ନାଥଙ୍କ ଅଙ୍ଗ ଛୁଇଁଛି ଯେ ଏ ବହି ଛୁଇଁବ ସେ ଠାକୁରଙ୍କୁ ଛୁଇଁବ ।" କେତେଜଣଙ୍କ ପାଖେ ଭାଗବତ ଗାଦି ପରି ମୋ ବହିର ଗଦା ।

ଦିନେ ଏକ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ପାଞ୍ଚୋଟି ଫୁଲ ଆଣି ପୂଜା ଆରମ୍ଭ କରି ପ୍ରଥମଟି ଜଗନ୍ନାଥ ବଳଭଦ୍ର ସୁଭଦ୍ରାଙ୍କ ଫଟୋରେ ଦ୍ୱିତୀୟଟି ବାପା ମାଆଙ୍କ ଫଟୋରେ, ତୃତୀୟଟି ସ୍ୱାମୀଙ୍କ ଫଟୋରେ ଏବଂ ଚତୁର୍ଥଟି ମୋ ନିଜକୃତ ବହିଥାକରେ ଥୋଇ ଜଣେଜଣ କରି ଗୁଣଥର ଜୁହାର କଲି । ବାକି ଫୁଲଟି କାହାକୁ ଦେବି ସ୍ଥିର କରି ନ ପାରି ଚାହିଁଲି ସେଇ ଚାରିଙ୍କି । ଜଣାଗଲା ସେମାନେ ପ୍ରତ୍ୟେକେ ଲୋଭୀପରି ମାଗୁଛନ୍ତି ସେ ଫୁଲଟିକି । କାଳେ କାହାର ଦୋରେହା ହେବ, ଅଭିଶାପ ପାଇବି ସେଇ ଭୟରେ ସେମାନଙ୍କୁ ସମସ୍ତଙ୍କୁ ସ୍ମରଣ କରି ଆଖିବୁଜି ହନୁମାନ ପ୍ରଶ୍ନ ବିଧିରେ ଆଙ୍ଗୁଳି ବୋଲିପରି ହାତ ଟେକିଲି ଯାହାକୁ ପାଇବି ତାକୁ ଦେବି । ଶେଷରେ ହାତ ଗୋଟାଏ ଫଟୋ ଉପରେ ରହିଲା । ତାଙ୍କୁଇ ଫୁଲଟି ଦେଇ ଜୁହାର ହେଉଛି ଆଖି ଫିଟାଇଲି, ଇଏ କିଏ ? ଇଏ କାହା ଫଟୋ ? ଠାକୁରଙ୍କ ଥାକକୁ ଲାଗି କାନ୍ଥଟାରେ କେବେ କିଏ ବଡ଼ିଆ ଫଟୋଟାଏ ଆଣି ଟାଙ୍ଗି ଦେଇଛି । ଛଅ ହଜାର ଟଙ୍କା ମୂଲ୍ୟର ଜାପାନୀ କ୍ୟାମେରାରେ ନିଆଯାଇଥିବା ରଙ୍ଗୀନ ଫଟୋ । ବଡ଼ପୁଅ କେବେ ତାକୁ ଏନ୍ଲାର୍ଜ କରି ବିଦେଶୀ ବାଇଣ୍ଡିଂରେ ଝୁଲାଇ ଦେଇଛି ମୋର ଛବିଟା

ପାଖରେ । ସେମିତ ଶୋଇଲେ ମୋର ରୂପ ମୁଁ ଦେଖିପାରିବି । ଅଟୁଟ ଚେହେରା, ଜି ନାକ, କପାଳ, ଚଷମା ଏବଂ କୋର୍ଟ । ସମସ୍ତଙ୍କ ଫଟୋ ବା ରୂପକୁ ବଳି ମୋର ଅରୂପ ପୋଟ୍ରେଟ୍ । ମସ୍ତକ ନଇଁଯିବ । ବାଃ । ହାତରେ ଥିବା ବାସ ଫୁଲଟାର ଘ୍ରାଣ ଗ୍ରାହ୍ୟ । ନିଜ ପ୍ରତିମୂର୍ତ୍ତି ପୂଜା କରିବା ବା ନିଜ ବନ୍ଦନା ପଢ଼ିବାଠୁଁ ପରମ ତୃପ୍ତିକର ଆଉ କ'ଣ ଥାଇପାରେ ! ଫୁଲଟି ତାର ଉପରେ ଥୋଇ ନିଜକୁ ନିଜେ ଜୁହାର ହେଲି । ବିଶ୍ୱରୂପ ଦର୍ଶିଗଲା । ଘ୍ରାଣ ଭିତରେ ମୁଁ ହରପାର୍ବତୀଙ୍କ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି, ଜଗାବଳିଆ, ସୁଭଦ୍ରାଙ୍କ ମୂର୍ତ୍ତି, ବାପା ମାଆଙ୍କ ଯୁଗଳ ମୂର୍ତ୍ତି, ମୋର ସ୍ତ୍ରୀଙ୍କ ଏକକ ମୂର୍ତ୍ତି ଏବଂ ନିଜ ମାନସ ସନ୍ତାନ ହନୁତଙ୍କ ଛବି ଓତଃପ୍ରୋତ ହୋଇ ରହିଥିବାର ଦେଖିଲି । କି ବିଚିତ୍ର ! ଆତ୍ମାର ତୃପ୍ତି ହେଉ ନ ହେଉ ଆତ୍ମତୃପ୍ତି ହେଲା ।

ସକଳ ତୀର୍ଥ ତୋ ଚରଣେ, ବନ୍ଦି ଜା ସିନ୍ଧୁ କି କାରଣେ । ପରଦିନ ଜଗନ୍ନାଥଙ୍କ ଫଟୋ, ବାପା ମାଆଙ୍କ ଫଟୋ, ସ୍ତ୍ରୀଙ୍କ ଫଟୋ ଏପରିକି ଭାଗବତଗାଦୀକୁ ସେଠାରୁ ଉଠାଇ ନେଇ ଅନ୍ୟତ୍ର ରଖିଦେଲି । ମନେ ମନେ ଖୁସି ଯେ ଏତେଗୁଡ଼ିଏ ସାଆଁ ଦେବତାଙ୍କୁ ପୂଜା କରିବା ହେଙ୍ଗାମରୁ ବର୍ତ୍ତିଗଲି । କେବଳ ଜଣେ ହିଁ ରହିଲେ । ଏକମେବା ଦ୍ୱିତୀୟୋ ନାସ୍ତି ।

ମୋର ଭକ୍ତ ଅଧ୍ୟାତ୍ମବାଦର ପରିବେଶ ତନଖି କରିବା ପାଇଁ ବହୁଦିନ ପରେ ରାଜେନ୍ଦ୍ର ବାବୁ ମୋର ଦ୍ୱାରସ୍ଥ ହେଲେ । ବେଡ୍‌ରୁମ୍ ତଥା ଠାକୁର ଘର ଭିତରେ ଅଭାବନୀୟ ପରିବର୍ତ୍ତନ ଫଳକମାନେ ଲକ୍ଷ୍ୟ କରି କୁଞ୍ଚିତ ଚକ୍ଷୁରେ ମୋ ଆଡ଼କୁ ଚାହିଁଲେ, ଯେମିତି ସେ ଜାଣିବାକୁ ଚାହୁଁଛନ୍ତି ଫଟୋମାନଙ୍କ ବଦଳେ ସମାବେଶ ପରିବର୍ତ୍ତେ ଏ କ'ଣ ହୋଇଛି । ଚୁମ୍ବକରେ ତାଙ୍କୁ ବୁଝାଇ ଦେଲି କିପରି ମୋର ସିଦ୍ଧି ଓ ସତ୍ୟ ଉପଲବ୍ଧ ହୋଇଛି ବାରବର୍ଷର ପୂଜା ତପସ୍ୟାରେ । ମୋର ରଙ୍ଗୀନ ଫଟୋ ତଳେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥିବା ସୋଽହମ୍ ଅକ୍ଷର ତିନୋଟିକୁ ତାଙ୍କୁ ଦେଖାଇ କହିଲି, "ଯାର ଅର୍ଥ ମୁଁ ସେଇ, ସେଇ ମୁଁ । ତେଣୁ ମୁଁ ତେତିଶ କୋଟି ଦେବଦେବୀ ଓ କୋଟି କୋଟି ପରମାରାଧ୍ୟ ମହାପୁରୁଷଙ୍କ ପୂଜା ପରିତ୍ୟାଗ କରି ନୂତନ ସିଦ୍ଧି ପାଇଁ ନିଜକୁ ପୂଜା କରୁଛି । କୁହନ୍ତୁ, ପାଟିକରି ବଜ୍ର ନିର୍ଘୋଷରେ କୁହନ୍ତୁ, "ସୋଽହମ୍, ସୋଽହମ୍, ସୋଽହମ୍" । ବୋଲ ଭାଇ 'ହରିବୋଲ' ।

# ଭାଲୁ ଶିକାର

ମୁଁ ସଉଖୀନ ବା ପେଶାଦାର ଶିକାରୀ ନୁହେଁ । ଜୀବନରେ ବନ୍ଧୁକ କେବେ ଧରି ନାହିଁ । ମୋର ଶ୍ରେଷ୍ଠ ପୋଷା କୁକୁରଟିର ହୃଦସ୍ପନ୍ଦନ ତାଲପତ୍ର ଫୋଟକାରେ ଯେତେ ବଢ଼ିଯାଏ ବନ୍ଧୁକର ଆଓ୍ଵାଜ ଖଣ୍ଡେ ଦୂରରୁ ଶୁଣିଲେ ମୋର ତା'ର ଦୁଇଗୁଣ ହୁଏ ।

ବାଧ୍ୟବାଧକତାରେ ବା ମୁଖଲଜ୍ଜାରେ ପଡ଼ି ଥରେ ଦୁଇଥର ହୁଏତ ଶିକାରକୁ ଯାଇଛି; ତା' ବି ଏମିତ ଲୋକ ସାଙ୍ଗରେ, ଯେ ନିଜ ଜୀବନ ବିନିମୟରେ ବିପଦବେଳେ ମୋ ଜୀବନ ରକ୍ଷିବ । ଏମିତ ଦରଦୀ ବିଶ୍ୱସ୍ତ ଲୋକଟିଏ ଥିଲେ ମୟୂରଭଞ୍ଜର ଏସ୍. ପି., ଓଡ଼ିଶାର ଆଇ. ଜି. ସ୍ୱର୍ଗତ ରାମଚନ୍ଦ୍ର ଦାସ, ଆଇ. ପି. ଏସ୍. । ସେ ମୋର ବନ୍ଧୁ ବୋଲି ଦାବୀ କରିବି ନାହିଁ, ସେ ମୋତେ ଦବା ସାନଭାଇ ପରି ଭଲ ପାଉଥିଲେ; ତାଙ୍କ ସ୍ତ୍ରୀ ମଧ୍ୟ ମୋ ସ୍ତ୍ରୀଙ୍କୁ ସେହି ଆଖିରେ ଦେଖୁଥିଲେ । ଗସ୍ତରେ ଗଲାବେଳେ, ମାଛ ଧରିବାକୁ ଗଲାବେଳେ ଏସ୍. ପି. ମୋତେ ସାଙ୍ଗରେ ନେଇଯାଆନ୍ତି । ମୋର ଖାଇବା ପିଇବା ସୁଖସ୍ୱାଚ୍ଛନ୍ଦ୍ୟରେ କେବେ କୌଣସି ତ୍ରୁଟି ହୁଏନି । ମୋର ଗପ କଥାବାର୍ତ୍ତା ତାଙ୍କୁ ବୋଧହୁଏ ଭଲଲାଗେ । ରଜାରାଜୁଡ଼ା ବିଦୂଷକଟିଏ ତ ଫେରୁ ରଖିଥାନ୍ତି, ଜୀବନ ଜଞ୍ଜାଳରୁ କ୍ଷଣେ ମୁହୂର୍ତ୍ତେ ତ୍ରାଣ ପାଇବା ପାଇଁ ।

ତାଙ୍କ ସାଙ୍ଗରେ ଥରେ ଚଢ଼େଇ ଶିକାରରେ ଯାଇଥିଲି । ଟୁଏଲ୍ଭ୍ ବୋର ବନ୍ଧୁକରେ ଡଜନଟା ହରଡ଼ ଚଢ଼େଇ ( ଗ୍ରୀନ୍ ପିଜିଅନ୍ ) ମାରିଲେ । ସମସ୍ତେ ଚଢ଼େଇ ମାଂସ ଭଲ କହନ୍ତି, ମତେ ଭଲ ଲାଗିଲାନି । ପୁଣି ଥରେ ଯୋଡ଼ାଏ ଖଣ୍ଡହଂସରୁ

ଗୋଟାକୁ ଆକାଶରୁ ଖସାଇ ଥିଲେ ଏବଂ ଅହତ ପକ୍ଷୀଟିକୁ ଜଗିବାର ଦାୟିତ୍ୱ ମୋର ଥିଲା । ହଠାତ୍, ପରେ ଦେଖିଲି ଆହତ ପକ୍ଷୀଟି ଓମ୍ପଟିଏ ମୋର ଆଗରେ ପାଡ଼ିଲା । ମୋତେ ବହୁତ ଦୁଃଖ ଲାଗିଲା "ମା ନିଷାଦ ପ୍ରତିଷ୍ଠାଂ ତ୍ୱ...।" ଦୁଇଥର ଯାହା ଦେଖିଲି ବନ୍ଧୁକ ଫୁଟିଲେ ମୋ ଛାତି ଧଡ଼ପଡ଼ ହେଉଛି ଯିମିତ ଫାଟିଯିବ ବା ଧୁକ୍‌ଧୁକ୍ ବନ୍ଦ ହୋଇଯିବ ।

ତୃତୀୟ ଥର ସେ ମୋତେ ଡାକିଥିଲେ ଏକ ଭାଲୁ ଶିକାରକୁ । ସେ ସ୍ଥାନର ନାଆଁ ଭାଲୁପାହାଡ଼ । ପାହାନ୍ତାରେ ଗଣ୍ଡା ଗଣ୍ଡା ଭାଲୁ ଗୋଟାଏ ବଣରୁ ଅନ୍ୟ ଏକ ବଣକୁ ଚକ୍କର ଦେଇ ଅଦୂର ପାହାଡ଼ର ଗୁମ୍ଫାମାନଙ୍କୁ ଯାଆନ୍ତି । ଦୁହେଁ ସାଥ ଦୁଇଟାରୁ ଯାଇ ଦୂରରେ ଜିପ୍ ରଖି ଗୋଟାଏ ଗଛରେ ଚଢ଼ିଲୁ ଏବଂ ଥାର୍ମୋସ୍‌ରୁ ଚା' କପେ କପେ ପିଇ ଅପେକ୍ଷା କଲୁ ଜାନୁଆରଙ୍କୁ । ଗଛରୁ ତଳେ ପଡ଼ିଯିବାର ଭୟ ମୋର ପ୍ରତି ମୁହୂର୍ତ୍ତରେ ହେଉଥାଏ, ଯଦିଓ ଆମେ ଏକ ଶକ୍ତ ମଞ୍ଚାରେ ବସିଥାଉ । ଭାଗ୍ୟ ଭଲ, ଜବଜନ୍ତୁ କେହି ଆସିଲେ ନାହିଁ । ପ୍ରାୟ ସୂର୍ଯ୍ୟୋଦୟ ବେଳକୁ ଆମର ଝଲାଛିତରେ ଗୁପ ବିଲ ଦେଇ ଗୋଟାଏ ବଡ଼ ହେଟା ବଟଣ ଗଢରେ ବାହାରି ଚାଲିଗଲା । ସାହେବ ଗୁଳି ତା' ପଛକୁ ଲକ୍ଷ୍ୟ କରି ଫୁଟାଇଲେ; ଗୋଟାଏ, ଦୁଇଟା, ତିନିଟା; ସେ ରକ୍ଷା ପାଇଲା, ମୁଁ ବି ।

ଶ୍ରେଷ୍ଠ ମୋର ଗାଆଁଟି, ଭୂଗୋଳ ପୋଥିପତ୍ରରେ ତା' ନାଆଁ ପାନ୍ଦଡ଼ା, ସେକାଳର ମୟୂରଭଞ୍ଜ ଷ୍ଟେଟ ଅନ୍ତର୍ଭୁକ୍ତ । ପ୍ରଖ୍ୟାତ ପ୍ରତ୍ନତାତ୍ତ୍ୱିକ ପରମାନନ୍ଦ ଆଚାର୍ଯ୍ୟ ମୋତେ କହୁଥିଲେ, ପାନ୍ଦଡ଼ା ନାଆଁ ପହାଡ଼ରୁ । ପହାଡ଼ ମାନେ ଜଙ୍ଗଲ । ସତରେ ଆମ ଗାଁ ଜଙ୍ଗଲଘେରା ଅଞ୍ଚଳରେ । ଗାଁ ପୂର୍ବପଟେ ପାଞ୍ଚଛଅଟା ପୋଖରୀ, ପୋଖରୀ ତଳକୁ ବୁଦୁବୁଦିଆ ଏବଂ ତା'ପରେ ଘଞ୍ଚ ଶାଳ ଜଙ୍ଗଲ । ପୂର୍ବପଟେ ଯେଉଁ ଗାଁ ସେମାନଙ୍କ ନାଁ ବାଘଡ଼ମ୍ବା, କେନ୍ଦୁଆ, ଝିଙ୍କପାହାଡ଼ ଭାଲୁଡ଼ୁଙ୍ଗ୍ରି, କେନ୍ଦୁମୁଣ୍ଡି, ହାତୀଆପଥର, ବାଦୁଡ଼ିଘେରା । ସବୁ ନାଆଁର ବଣଜଙ୍ଗଲ ପାହାଡ଼ ପର୍ବତ ଜନ୍ତୁ ଜାନୁଆର ସହିତ ସମ୍ପର୍କ ରହିଛି । ଏବେ ଅବଶ୍ୟ ବଣ ନାହିଁ କି ପାହାଡ଼ ନାହିଁ, ଶିକାର ନାହାନ୍ତି କି ଶିକାରୀ ନାହାନ୍ତି ।

ବନ ଥିଲା ମୟୂରଭଞ୍ଜ, ରାଜାମହାରାଜାମାନଙ୍କର happy hunting ground ଥିଲା । ମଲଗିର, ପାରଲାଖେମୁଣ୍ଡି ରାଜାମହାରାଜାଙ୍କଠାରୁ ଆରମ୍ଭ କରି ରାଜସ୍ଥାନର ରାଜାମହାରାଜାମାନେ ବାରବାଟା ଆସୁଥିଲେ । ଆଠ ଦଶ ଦିନ ପାହାଡ଼ ପର୍ବତ ଭିତରେ ଶିକାର ହେଉଥିଲା । ବାଘ ଭାଲୁ ସଂଖ୍ୟାଗତ; ଅନ୍ୟଭକ୍ଷ ଶିକାରୀଟିଏ ବନ୍ଧୁକ ଧରିଲେ ଗୋଟାଏ ଅଧେ ମାରିପାରିବ । ରେଳବାଇ କର୍ମଚାରୀ ଦଳ ଶିକାରରେ ଅସଫଳ ହେଲେ ବୋଲି ନିଜେ ପୁଣ୍ୟଶ୍ଳୋକ ମହାରାଜା ଶ୍ରୀରାମଚନ୍ଦ୍ର ଶିକାର ଦାୟିତ୍ୱ ନେଇ ନିଜର ଶ୍ୟାଳକର ଗୁଳି ଗ୍ରେଟରେ ଆହତ ହୋଇ ଅବଶେଷରେ ମୃତ୍ୟୁବରଣ କଲେ । ହାତୀଧରା ଓ ଖେଦା ପାଇଁ ମଧ୍ୟ ମୟୂରଭଞ୍ଜର ଭାରତରେ ନାଁ ଥିଲା । ଜଙ୍ଗଲାଜୁଅର କମି ଆସିବାରୁ ଶିକାର କମିଲା ଏବଂ ଅବାଧଂସ୍ୟ ଯନ୍ତ୍ରଣା ଓ ଅତ୍ୟାଗ୍ରହ ଯୋଗୁଁ ଜନସାଧାରଣ ମଧ୍ୟ ବିଦ୍ରୋହୀ ହେଲେ । ଚହଳ ଶିକାର ମୟୂରଭଞ୍ଜ ରାଜବଂଶର ଇତିହାସରେ ଏକ କଳଙ୍କ । ଶୁଣାଯାଏ, କେତେଙ୍କ ଭାଗ୍ୟରେ ବୃଦ୍ଧଯୋଗ ମାତ୍ର ଶିକାରର ପଦସ୍ଥ କର୍ମଚାରୀ ପରିବର୍ତ୍ତ କରିଥିଲେ ।

ମୟୂରଭଞ୍ଜ ଗାନ୍ଧୀ ପ୍ରଜାମଣ୍ଡଳ ନେତା (ବର୍ତ୍ତମାନ ବାଚସ୍ପତି ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାସ ତାଙ୍କର ଏକନମ୍ବର ଚେଲା ) ସ୍ୱର୍ଗତ ଶରତ ଚନ୍ଦ୍ର ଦାସଙ୍କ ବିରୋଧ ଓ ଆନ୍ଦୋଳନ ଯୋଗୁଁ ମୟୂରଭଞ୍ଜରେ ଶିକାର ବନ୍ଦ ହେଲା । ପଲ୍ଲା ଶିକାର ଉଠିଗଲା । ବାଘ ପ୍ରବଳ ହେଲେ । କୌଣସି ବାଘ ଗୋରୁଗାଈ ମଣିଷଖିଆ ହେଲେ ମହାରାଜା ନିଜେ ବା ତାଙ୍କ ନିଯୁକ୍ତ କର୍ମଚାରୀ ତାକୁ ନିପାତ କରୁଥିଲେ । ଅନେକ ସମୟରେ ବଡ଼ କରୁଣ କାହାଣୀ ଶୁଣା ଯାଉଥିଲା ବାଘ ଉତ୍ପାତର । ତଥାପି ପଲ୍ଲାଶିକାର ନିଷେଧାଜ୍ଞା ମହାରାଜା ଉଠାଇଲେ ନାହିଁ । ଅନ୍ୟାନ୍ୟ ଜୀବଜନ୍ତୁ ଯଥା ହରିଣ, ସମ୍ବର, ଗୟଳ, ହାତୀ ସଂଖ୍ୟା ଯେତେ ବଢ଼ିଲେ ତା' ଅପେକ୍ଷା ଭାଲୁ ସଂଖ୍ୟା ବହୁଗୁଣ ବଢ଼ିଲେ । କାରଣ ଭାଲୁ ସେମିତି କିଛି କ୍ଷତି କରେ ନାହିଁ । କେହି ମାରିବାରେ ମନ ଦିଅନ୍ତିନି । ହାବୁଡ଼ରେ ପଡ଼ିଲେ ଖଣ୍ଡିଆ ଖାବରା କରେ ମାତ୍ର ।

ଓଡ଼ିଶା ସହିତ ମୟୂରଭଞ୍ଜ ମିଶ୍ରଣକୁ ଆଉ ବର୍ଷେ ଅଧେ ଥାଏ । ମାତ୍ର ଆସୁଥିବା ଦୁର୍ଯୋଗକୁ ଲଘୁ କରିବା ପାଇଁ ବା ଅବସର ବିନୋଦନ ପାଇଁ ମହାରାଜା ସସ୍ତ୍ରୀକ କାଶ୍ମୀର ଯାତ୍ରା କଲେ । କାଶ୍ମୀରରେ ମାରଖୋର ବୋଲି ବଡ଼ ବଡ଼ ଏକ

କାଢର ବଣୁଆ ବେଳ ମିଳନ୍ତ । ଶିକାରୀମାନେ ତା'ର ବଡ଼ ବଡ଼ ମୋଟା ଶିଙ୍ଗ ଥିବା ମୁଣ୍ଡକୁ ବୈଠକଖାନାରେ ଝୁଲନ୍ତ ଦର୍ଶନୀୟ ଟେକ ଆକାରରେ ବା ବୀରତ୍ୱର ଟ୍ରଫି ( ନିଦର୍ଶନ ) ଆକାରରେ । ଅନେକ ଧନ ନିଜ ରାଜ୍ୟରେ ନିଜକୁ ଶିକାରରୁ ନିବୃତ୍ତ ରଖି ହୁଏତ କାଶ୍ମୀରରେ ସେପରୁଆ ଶିକାର ମନୋବୃତ୍ତି ଚରିତାର୍ଥ କରିବା ବୋଧହୁଏ ତାଙ୍କର ଏ କାଶ୍ମୀର ଗସ୍ତର ଅଭିପ୍ରାୟ ।

ଶାସନ ଦାୟିତ୍ୱରେ ରହିଲେ ଦେବାନ୍ ମେଜର ବ. ପି. ପାଣ୍ଡେ । ପୂର୍ବତନ ଦେବାନ୍ କେ. ସି. ନିୟୋଗୀ କେନ୍ଦ୍ରର ପୁନର୍ବସତି ମନ୍ତ୍ରୀ ଓ ପରେ ପରେ ରେଳବାଇ ମନ୍ତ୍ରୀ ଅବ୍ୟାହତ ନେବାରେ ମେଜର ପାଣ୍ଡେ ଅଧିଷ୍ଠିତ ହେଲେ । ନିୟୋଗୀ ପଦ ପାଉଥିଲେ ତିନି ହଜାର, ଏ ପାଇଲେ ପନ୍ଦରଶହ । ମେଜର ପଦବୀଟି ମିଲିଟାରୀ ନୁହେଁ, କେଉଁ ଏକ ଗୋଷ୍ଠିଦ ପ୍ରମାଣ ରାଜ୍ୟର ରାଜା ସ୍ୱାଙ୍କ ବୀରତ୍ୱରେ ମୁଗ୍ଧ ହୋଇ ଏ ପଦବୀ ଅର୍ପଣ କରିଥିଲେ । ସୁନ୍ଦର ଚେହେରା, ସ୍ଥୁଳ ବପୁ, ପୋଷାକ ପରିଚ୍ଛଦ ଚେହେରା ଅନୁରୂପ । ନେପ୍ୱାର ଦେଶ୍ ମାନେ ସେ ବସିଲେ । ମହାରାଜାଙ୍କ ସହିତ ସେ ହର୍ଦ୍ଦା କରିବାକୁ ଗ୍ରହାନ୍ତ । ମହାରାଜା ଶିକାର କରିବାକୁ କାଶ୍ମୀର ଯିବେ, ସେ ଅନ୍ତତଃ ମୟୂରଭଞ୍ଜରେ କୌଣସି କ'ଣ···ହେଲେ ଶିକାର ମନା ।

ଲୋକଟି ଖୁବ୍ ଶାନ୍ତ । ଖୁବ୍ ହସ ଖୁସି ମେଜାଜର । ଯେତେବେଳେ ସେ ହସନ୍ତ ତାଙ୍କ ପେଟ ବ ହସି ହସି ଡିଆଁ ମାରେ । ଅଫିସରେ କାମ ଖୁବ୍ କମ୍ । ତାଙ୍କ ଇଂରାଜୀ ବା ହିନ୍ଦୀ ମୟୂରଭଞ୍ଜର ଲୋକେ ପ୍ରାୟ ବୁଝନ୍ତ ନାହିଁ । ପ୍ରଜାଙ୍କ ଓଡ଼ିଆ ବା ସାନ୍ତାଳୀ ସେ ବୁଝନ୍ତ ନାହିଁ । ଓଡ଼ିଆ ପଦେ ଅଧେ କହିଲେ ଭାଷାର ଲଳିତା ପରି ଲାଗେ । କେବଳ କେତୋଟି ଫାଇଲ ଟେବୁଲ ଉପରେ ଥାଏ । ଉତ୍ତରପ୍ରଦେଶର ପାନ ଖାଆନ୍ତ ମେଜାଜ ଖୁବ୍ ଥିଲେ ।

ମହାରାଜା କାଶ୍ମୀର ଚାଲିଯିବାରୁ ଏସ୍. ପିଙ୍କ କାମ ବ ହାଲୁକା ହେଲା । ଦେବାନ ଅଉ ଏସ୍. ପି. ଦୁହେଁ ରାଜ୍ୟ ସମ୍ଭାଳୁଛନ୍ତ । କମିତ କେଜାଣି ଦୁ'ଜଣ ଶିକାର ଆଡ଼କୁ ମନ ବଳେଇଲେ । ମେଜର ସାହେବଙ୍କର ଯୁଦ୍ଧ ଫ୍ରଣ୍ଟ ଦେଲାର ନାଆଁ କାହାକୁ କମିଶନରେ ଅଉ ହୋମ୍‌ଗାର୍ଡ଼ର ମାଲିକ ଆକାରରେ ଯେଉଁ ମିଲିଟାରୀ ଧରଣର ଖାକି ପୋଷାକ ଥିଲା ତାକୁ ପ୍ରାୟ ପ୍ରତିଦିନ ଯୁଦ୍ଧ ସରିଥିଲେ ବ ସେ ପିନ୍ଧି କରି

ଆସିଲେ । ଏମ୍ବାସାଡ଼ାର କାର୍ ଗ୍ଲତ୍ ମାଟିଆ ଉପରେ ଚଢ଼ିଲେ, ଏବେବି ପୋଲିସ ସାହେବଙ୍କ ଫେସନ ଅନୁକରଣରେ ଫେଲ୍ଟହେଟ୍ ଲଗାଇ ଘନେ ଘନେ ଚଢ଼େଇ ଫର ଗୃଣ୍ଡି ଅଫିସକୁ ଆସିଲେ । ଶିକାର ବନ୍ଦଥିବା'ରୁ ପୋଲିସ ସାହେବଙ୍କ ପାଖରେ ପଡ଼ି ମେଜର ପାଣ୍ଡେ ମାଛ ଶିକାରରେ ଚ ଘନେ ଧ ଘନେ ବାହାରିଲେ । କମ୍ବଲା (ଶିଶୁପାଳ) ହୋଇ ଫେରି ଷ୍ଟେନୋକୁ ଡାକିବାକୁ ଆରମ୍ଭ କରନ୍ତି—In course of his tours Major. B. P. Pande BA LLB FRCS addressed mammoth gathering…"

ସୂଜା ଭୁଟିରେ ଦୁ'ଗୁରଦିନ ପାଇଁ ଗାଁକୁ ଯାଇଥାଏ । ଯେଉଁଠି ବସିଲି, ଯେଉଁଆଡ଼େ ବୁଲବୁଲି ପାଇଁ ବାହାରିଲି ସବୁଠି ସେଇ ଏକ କଥା । ଷଣ୍ଢଙ୍କ ଉତ୍ପାତ । ଏ ଗାଁରେ ଅନ୍ଧ ରହିହେବନି । ବୋହୂ ଝିଅ ବେଲବୁଡ଼ାକୁ ପୋଖରୀ ତୁଠକୁ ଯିବାକୁ ଡରିଲେଣି । ଘଡ଼ିଏ ସ୍ଥଳକୁ ଗାଁମୁଣ୍ଡ, ଗୋବରଗଦା ସବୁଠି କଳା କଳା ଷଣ୍ଢ । ଜଗି ପାଇଁ ବଳ ହଳଡ଼ସବୁ ଛାଡ଼ିଦେଲେ, ଗଛରେ ବରକୋଳି ରହିଲା ନାହିଁ ! ଇଏ ଯାହା ହେଉଛି ସହିହେବ; କିନ୍ତୁ ଲୋକଙ୍କୁ ବେଣ୍ଟିଆ ଖାଦରି କରି ଦେଉଛନ୍ତି । ଅଇଁଠୁ ମଣ୍ଡଳର ଆଖି ଗୋଟାଏ ଉପାଡ଼ି ଦେଲା, ଗୋବରି ମୁଣ୍ଡାର ଗାଲପାଟି ଫାଲେ ନାହିଁ, ହରି ବଗାଲର ଖପୁରି ଖୋଲି ଦେଇଛି । ମାଳିଦାସ ମାଝୀର ପେଟଚିରି ଅନ୍ତବୁଜୁଳା ବାହାର କରିଦେଲା । ସେ ଦିନା ଟାଣୁଆ ଲୋକ ବୋଲି ବାଳଗୋଡ଼ି ସହିତ ବୁଜୁଳା ପେଟରେ ପୂରାଇ ଡାକ୍ତରଖାନା ଚାଲିଗଲା । ଅମର କାଳ ମୂଳିଆ କିନ୍ତୁ ତାକୁ କେଞ୍ଚି ଦେଇଛି, ସିମିତ ଷଣ୍ଢ ଆସି ତାକୁ କୁଣ୍ଡେଇବାକୁ ଯାଉଛି ବାଳ କୁଣ୍ଡପୁରି କଣ୍ଟାଳିଆ ଶିମୁଳିମୂଳ ଉଡ଼ାଇକୁ ଚାଲିଗଲା । ଷଣ୍ଢର ଦ'ହାତ ଧରି ବସି ମୁହାଁ କରି ଦେଲା ଯେ ତା'ର ଗୁଡର ଚୁଲ ସବୁ ଉପୁଡ଼ିଗଲା । ଏମିତି କେତେ ସତ, କେତେ ଗାଲୁ ଷଲୁ ଉପାଖ୍ୟାନ ।

ବାରିପଦା ଫେରି ପ୍ରଥମେ ଏସ୍. ପି.ଙ୍କୁ ଗାଁର ହାଲ ହକିକତ କହିଲି । ଷଣ୍ଢ ଉପଦ୍ରବ ବିଷୟରେ ଦୈବାତ୍ ଗାଁବାଲାଙ୍କଠାରୁ ଯେଉଁ ଲିଖିତ ଦରଖାସ୍ତ ନେଇଥିଲି, ତାକୁ ସାହେବଙ୍କୁ ଦେଲି । ସେ କହିଲେ, "ବୁଦ୍ଧିର କାମ କରିଛ ।" ସାଙ୍ଗେ ସାଙ୍ଗେ ମୋତେ ଧରି ଉପରେ ମେଜରଙ୍କ ଅଫିସକୁ ଚାଲିଲେ । ତାଙ୍କର

ଇଙ୍ଗିତ ପାଇ ଦେୱାନଙ୍କ ଆଗରେ ଗଳ୍ପ କବିତାମୟ ବର୍ଣ୍ଣନାଟିଏ ପେଶ୍ କଲି । ମୋତେ ବିଦାୟ ଦେଇ ଦୁହେଁ ଅନେକ ସମୟ କେତେ କ'ଣ ଆଲୋଚନା କଲେ । ସେଇଦିନ ସନ୍ଧ୍ୟାରେ ମୋ ବସାକୁ ଆସି ସାହେବ କହିଲେ ପ୍ରସ୍ତୁତ ଥାଅ, ବନ୍ଦୋବସ୍ତ କରୁଛି, ତୁମ ଗାଁର ଭାଲୁମାନଙ୍କୁ ଦେଖିବା ।"

ପରଦିନ ଦେୱାନ ସାହେବଙ୍କ କୋଠିରେ ଦେଖିଲି ଖାକି ହାଫ୍‌ପେଣ୍ଟ ପିନ୍ଧି ବଡ଼ ବଡ଼ ଲାଲ ଜଙ୍ଘ ଦେଖାଇ ବନ୍ଧୁକ ନଳୀ ସଫା କରୁଛନ୍ତି ଏବଂ ଥରକୁ ଥର କାଳ୍ପନିକ ଭାଲୁଆଡ଼କୁ ନଳୀ ଦେଖାଇ ଟ୍ରିଗର୍ ଟାଣିବା ଅଭ୍ୟାସ କରୁଛନ୍ତି । ମୋତେ ଦେଖି ସେ କହିଲେ, "ଶତପଥି, ଭାଲୁଗୁଡ଼ାକ ସମ୍ବନ୍ଧରେ ମନ୍ତ୍ର ନାହିଁ, ଛାତିରେ କଲିଜା ଉପରେ ଗୁଳିଟିଏ ବସିଲେ ଠାଏଁ ବସିଯିବେ । ଦକ୍ଷ କୌଶଳୀ ଶିକାରୀ ନ ହେଲେ ଭାଲୁ ଶିକାରକୁ ଯିବା ଉଚିତ ନୁହେଁ । ମୋର ଗୋଟାଏ ଭାଲୁ ଚମଡ଼ା ଦରକାର । ବୈଠକଖାନାରେ ଝୁଲାଇବି, ବାଘ ହରିଣ ଚମଡ଼ା ତ ଅଛି । ନିଜେ ଜାନୁଅର ମାରିନି, ଚମଡ଼ାସବୁ କଲିକତାରୁ କିଣିଥିଲି । ଭାଲୁ ନିଜେ ମାରିବି, ତାର ଚମଡ଼ା ଝୁଲାଇବି । ତୁମର ଗାଁର ଭାଲୁଚମଡ଼ା, ସମଜା !"

ଗେଜେଟ୍, ମେଗାଜିନ୍, ପ୍ରଜାସଙ୍ଘ ଆଦି ବିଭିନ୍ନ ଲୋକ ସମ୍ପର୍କିତ କାର୍ଯ୍ୟମାନଙ୍କର ଦାୟିତ୍ୱରେ ଥିବାରୁ ଏବଂ ମହାରାଜା, ଦେୱାନ, ଏସ୍. ପି. ଆଦି ରାଜ୍ୟର ପୁରୋଧାମାନଙ୍କ ସହିତ ବରାବର ବସାଉଠା କରିବାକୁ ପଡ଼ୁଥିବାରୁ ମୋର ବି କ୍ରମେ ଉପଲବ୍ଧି ହେଉଛି ଯେ ମୁଁ ବି ରାଜ୍ୟଶାସନ କରୁଛି । ଅଫିସରେ ବସିଛି, ଫୋନ ଆସିଲା, "ବସନ୍ତ, ମୋ ଅଫିସକୁ ଆସ, ଏସ. ପି. କହୁଛି, ସାଙ୍ଗେ ସାଙ୍ଗେ ଆସ ।"

ସାହେବଙ୍କ ଅଫିସରେ ଦେଖିଲି ଆମ ବାଙ୍ଗିରିପୋଷି ଥାନାବାବୁ ଫର୍ଦ୍ଦେ ଲମ୍ବା କାଗଜରେ ମେପ୍‌ଟିଏ ହାତରେ ଆଙ୍କି ଟେବୁଲରେ ଥୋଇ ସାହେବଙ୍କୁ ବୁଝାଇବାକୁ ଆରମ୍ଭ କରୁଛନ୍ତି, ନଇଁପଡ଼ି । ମୁଁ ବି ଚେୟାରରେ ନ ବସି ଟେବୁଲ ଆଡ଼କୁ ଝୁଙ୍କିପଡ଼ି ଯୋଗଦେଲି ସେମାନଙ୍କ ସହିତ । ଥାନାବାବୁ ବୁଝାଉଛନ୍ତି, "ସାର୍, ଏଇ ଦେଖନ୍ତୁ ସାର୍, ଏଇଟା ହେଲା ପାଞ୍ଚନମ୍ବର ହାଇୱେ, ବାରିପଦାରୁ ବମ୍ବେ

ଛକ ଅଡ଼କୁ ଯାଉଛୁ; ଏଇଟା ହାର୍‌ ଉତ୍ତର ମାଉଳି ପଥର, ପାଖ ଗାଁର ନାଆଁ ଝାଡ଼ପୋଖରିଆ । ଖାଣ୍ଟି ମାଉଳିଏ ଧରି ଏଇ ରାସ୍ତାର ଦୁଇ କଡ଼ରେ ଜଙ୍ଗଲ । ପଶ୍ଚିମଅଡ଼କୁ ଏଇ ସାର୍‌ଙ୍କ ଗାଁ ପର୍ଯ୍ୟନ୍ତ ପୋଖରିଆ ଜଙ୍ଗଲ । ଭାଲୁ ସ୍ୱାଗ ଭିତରେ ଅଛନ୍ତି, ଦୁଇ ଦିନ ହେଲା ଲୋକଙ୍କୁ ଲଗାଇ ଜଗି ଦେଇଛୁ, ଯିମିତି ସାର୍‌, ଭାଲୁ ପୂର୍ବ ପାଖକୁ ଯାଇପାରିବେ ନାହିଁ । ପାଞ୍ଚଟା ଗାଁର ଲୋକେ ଏଇପଟୁ ପନ୍ଥା ଧରି ପଶ୍ଚିମକୁ ଅର୍ଥାତ୍ ସାର୍‌ଙ୍କ ଗାଁ ଅଡ଼କୁ ଯିବେ । ଦିନ ଦଶଟା ଏଗାରଟାରେ ଲାଇନ୍‌ ଗୁଳିବ, ଗ୍ରେଟ ଜଙ୍ଗଲଟା, ଘଣ୍ଟା ବେଳକୁ ଭଡ଼ି ପାଖରେ ଜାନୁଆର ପହଞ୍ଚିବେ । ଲୋକମାନେ ପଖାଳପାଣି କରି ନେବେନି । ଘରୁ ଖାଇକରି ଆସିବେ, ସାର୍‌ । ଲୋକେ ବହୁତ ରାଗି ଯାଉଛନ୍ତି, ଯିମିତି ହେଉ ଭାଲୁବଂଶ ନିପାତ କରିବେ, ସାର୍‌ !"

ମୋଟା ପେଟା ଥାନାବାବୁ । ନିଃଶ୍ୱାସ ପୁଣି ସଂଗ୍ରହ କରି ପୁଣି ଖିଅ ଧରିଲେ "ଏଇ ପଟେ, ପୋଦ୍ଦଲାମୁଣ୍ଡା ପଟେ, ଜଙ୍ଗଲ ସରିଛି । ପତଳା ଜଙ୍ଗଲର ପ୍ରାୟ ଶହେଗଜ ଭିତରକୁ ଘଣ୍ଟା ମଞ୍ଚା କରେଇଛୁ । ଭାଲୁ ନିଶ୍ଚୟ ମରିବେ, ସାର୍‌ ! ଶନିବାର ଦିନ ବାରଟାବେଳକୁ ପହଞ୍ଚି ଯିବେ ସାର୍‌, ଚହଳିଆ ରାସ୍ତା ଦେଖାଇ ଦେବେ, ମୁଁ ଛୁଡ଼ା କରେଇଛୁ, ସାର୍‌ । ବନ୍ଦୋବସ୍ତ ପକ୍କା । ଥାନ ସିଆଡ଼େ ତୁଳାମଣ୍ଡଳ ଚର୍ମୀ କେହି ନାହାନ୍ତି, ସାର୍‌ ! ଅନେ କ'ଣ ପନ୍ଥା ଶିକାର କରୁଛୁ ?"

ସାହେବ କହିଲେ, "ବସନ୍ତ ! ଶୁଣିଲ ତ । ଶନିବାରକୁ ପ୍ରସ୍ତୁତ ହୁଅ !" ହିନ୍ଦିଏ ରୋମାଣ୍ଟିକ ହୋଇ କହିଲେ, "ତୁମ ମିସେସ୍‌କୁ କୁହ ସେ ଦୁଇଦିନ ଆଗରୁ ଗାଁକୁ ଯାଆନ୍ତୁ । ଯେଉଁପ୍ରକାର ତାଳପିଠା ସେ କରି ଆମକୁ ଖୁଆଇବେ ସେଇ ପ୍ରକାର ତାଙ୍କର ଫିଲ୍‌ମିଲ ହେବେ ।" (ସାହେବଙ୍କ ଆଶୀର୍ବାଦରୁ ମୋର ଆଟୋହି ହେଲେ; ମିସେସ୍ କ'ଣ ଆଠପ୍ରକାର ତାଳପିଠା ଅଡଥିଲେ ପରଶି ଥିଲେ ? ହାସ୍ୟ ହାସ୍ୟ ! ସାହେବ ନାହାନ୍ତି କି ମୋ ସାହାବାଣୀ ନାହିଁ । ) ବହୁଦିନ ପୂର୍ବେ ମହାମତି ଟଲଷ୍ଟୟଙ୍କ The Bear Hunt ପଢ଼ିଥିଲି । ଆଜି, ତାକୁ ମନେପକାଇ ଦ୍ୱିଗୁଣିତ ହେଲା ମୋର ।

ଶିକାରୀମାନଙ୍କ ବହୁ ପ୍ରଶଂସିତ, ଘଣ୍ଟଶାବନ୍ଧୁକ, ସ୍ୱର୍ଗୀ ପର୍ଯ୍ୟନ୍ତ ହେଇ ନେବାର ବନ୍ଦୁକ ଅସିଗଲ ଏବଂ ଯଥା ସମୟରେ ଦୁଇଟି ଗେରୁଆ ରଙ୍ଗର ଜିପ୍ ଏବଂ ଗୋଟିଏ ପ୍ଲାଇମାଉଥ ଷ୍ଟେସନ ୱାଗନ ପୋଇଲାମୁଣ୍ଡା ଗାଁ ମୁଣ୍ଡରେ ଛନ୍ଦ ସେଠାରୁ ପ୍ରାୟ ଦେଢ଼ଶହ ଦୂରରେ ଛାଡ଼ିଦେଲେ ।

ମେଜର ପାଣ୍ଡେଙ୍କ ସବୁ grand, pompous ଏବଂ bombastic କଥା, କାମ, ଚାଲିଚଳନ ଏପରିକି ଲେଖାଶୈଳୀ । ତାଙ୍କ ଲେଖାପଢ଼ି ମହାରାଜା ମନ୍ତବ୍ୟ କରିଥିଲେ high falutin untranslatable nonsense. ତାଙ୍କ ଗାଡ଼ିରେ ଡ୍ରାଇଭର ଓ ତାଙ୍କ ଚପରାଶି ଓ ସେ ଡ୍ରାଇଭରର ବାଁ ପାଖ ଦୁଇଜଣଙ୍କ ସିଟ୍ ମାତ୍ର ବସିଥିଲେ । ଗାଡ଼ିରେ ଏତେ ଅସବାବପତ୍ର ସାଜସରଞ୍ଜାମ ଯେ ଯଦି ଭାଲୁ ମରେ ବା ସେ ନିଜେ ମାତ୍ର ପାରନ୍ତି ତେବେ କେଉଁଠି ରଖାଯିବ ତାହା ଚେଷ୍ଟାକଲେ ଏକ ସମସ୍ୟା ହେବ । ଦୁଇ ନମ୍ବର ଜିପ୍‌ରେ ଏସ୍. ପି., ତାଙ୍କ ଅର୍ଦ୍ଦଳୀ ଓ ଡ୍ରାଇଭର-cum-ଚପରାଶି । ଅନ୍ତିମରେ ରାଜବଂଶୀୟ ବଡ଼ବାବୁ ଏବଂ ମୁଁ । ଗାଡ଼ିରୁ ସମସ୍ତେ ଓହ୍ଲାଇ ପଡ଼ି ଅର୍ମୋହରୁ ଗ୍ଲ'କଫି ପରେ ଖାଡ଼ି ବା ମଞ୍ଚାଅଡ଼କୁ ଅଗ୍ରସର ହେଲୁଁ ।

ଏସ୍. ପି· ଟଙ୍କା କାଠି ଧରି ପ୍ରଥମେ ଦେବାନ ସାହେବଙ୍କୁ ପୁଚ୍ଛି କହିଲେ "ନମ୍ବର ଗୋଟାଏ" । ହସହସ ବଦନରେ ସେ ଧଇଲେ । "Sir, yours is number one" ସେଇଟା ସେ ଜାଣିଥିଲେ, ବ ନମ୍ବର ଓ୍ୱାନ୍ ତାଙ୍କର ପଡ଼ିଥାନ୍ତା, କାରଣ ତାଙ୍କର ମଞ୍ଚାଟି ଏମିତ ଟାଣୁଆ ଯେ ସହଜରେ ଓଜନରେ ଭାଙ୍ଗିବ ନାହିଁ । ଦୁଇ ନମ୍ବର ଅର୍ଥାତ୍ ମହଁଭାଡ଼ିଟି ସାହେବ ଓ ତାଙ୍କ ଦୁଇ କଲେଜ ପଢ଼ନ୍ତା ସାଆଁଳା ପୁଅ, ତୃତୀୟଟି ବଡ଼ବାବୁଙ୍କର ।

ଜିପ୍‌ରୁ ମୋଟା ମୋଟା ଚମତ୍କାର ଗଦି ମଞ୍ଚା ଉପରେ ପଡ଼ିଲା । ଦୁ'ଜଣ ଲୋକଙ୍କ ସାହାଯ୍ୟରେ ମେଜର ପାଣ୍ଡେ ମଞ୍ଚ ଉପରକୁ ବଜେ କଲେ । ମଞ୍ଚଟା ଦୁ'ଚାରିଥର ଏପଟ ସେପଟ ଦୋହଲିଲା । ଗଦି ଉପରେ ଚକାପକାଇ ବସିଲାବେଳକୁ କର୍ କର୍ କଟ୍, କେଁ, ଅଦ ନାନା ସୁର ବାହାରିଲା । ତାଳପତ୍ର ଭିତରେ ଅନୁରୂପ

ରଙ୍ଗର ଖାକି ପୋଷାକ ପିନ୍ଧି ବନ୍ଧୁକ ଧରି ସେ ବସିପଡ଼ିଲେ । ଘିଅ ଖାକି ରଙ୍ଗର ଜାନୁଆର ଶିକାର କରିବାର ଥାଆନ୍ତି। ତେବେ ମେଜର ସାହେବଙ୍କ ଯେ କେଉଁ ଶିକାରୀ ଜାନୁଆର ଭ୍ରମରେ ଗୁଳି ଚଳାନ୍ତି । ଯିମିତି ଏକଦା ମହାରାଜାଙ୍କ ଭାଲୁ ଭ୍ରମରେ ଗୁଳି ଲାଗି ଯାଇଥିଲା । ମୁଁ ଧଳା ପଞ୍ଜାବୀ ଓ ଧୋତି ପିନ୍ଧି ତାଙ୍କ ପାଖରେ ଥିବାରୁ ସେ ଭୟ ସାହେବଙ୍କର ବୋଧହୁଏ ନ ଥିଲା । ମନେ ମନେ ମେଜର ମୋତେ ରାଗୁଥିଲେ କାରଣ ମୋର ଧଳା ପୋଷାକ ଦେଖିଲେ ଜାନୁଆର ଆସିବେ ନାହିଁ ଆମ ଅଡ଼କୁ । ମୋର ବି ଦେବାନସାହେବଙ୍କ ପାଖରେ ବସିବାର ଇଚ୍ଛା ନ ଥିଲା, କାରଣ ମୁଁ ବଡ଼ ଟାଣିପାରିବି ନାହିଁ । ଭୟ ଥିଲା, ଭାଲୁ ନୁଆଣିଆ ମଞ୍ଚା ଉପରକୁ ଚଢ଼ି ଆସିବ ଏବଂ ମେଜର ପାଣ୍ଡେ ମତେ ରକ୍ଷା କରିପାରିବେ ନାହିଁ ।

ହେମନ୍ତ ଅପରାହ୍ଣର ସୂର୍ଯ୍ୟ ଦିଗରୁ କିରଣ ଦେଇ ତରଳ ସୁବର୍ଣ୍ଣ ଝରିଆସୁଛି । ତେଣେ ପନ୍ତା କମି କମି ମରି ଆସିଲାଣି । ଦୂରରୁ ବେଶ୍ ଜାଣିହେଉଛି, ଲୋକମାନେ କ୍ରମେ ପାଖେଇ ଆସୁଛନ୍ତି । ଯଦିଓ ବାଜା, ଢୋଲ୍, କଂସାଳ ସେମାନେ ବ୍ୟବହାର ନ କରି ବାଡ଼ି ଖଣ୍ଡେ ଖଣ୍ଡେ ଧରି ହାତ୍ ହେଇ୍ ଶବ୍ଦ କରି ଚାଲିଛନ୍ତି, ଭାଲୁ ଯେ ଅଛି ସନ୍ଦେହ ନାହିଁ । ଥରେ ଥରେ ଜୋର ସମବେତ୍ ହଇହାଲ୍ଲା ହେଉଛି ଯେଉଁଥିରୁ ଜାଣୁଛୁ ଭାଲୁ ସେମାନେ ଘରକୁ ଘର ହାବୁଡ଼ାଉଛନ୍ତି ।

ଆମର ସମ୍ମୁଖ ଦେଇ ପ୍ରଥମେ ଆସିଲା ବଡ଼ ବଣୁଆ ନେଉଳଟାଏ, ମାଟିଆ କଦଳି ରଙ୍ଗ, ଓଧ ସାଇଜ୍ ହେଇଛି । ମେଜରଙ୍କ କାନ ପାଖରେ କହିଲି, "Sir, that's a good sign. ସେ ଓଠରେ ତର୍ଜନୀ ଆଙ୍ଗୁଠି ଥୋଇ ମୋତେ ଚୁପ୍ ରହିବାକୁ କହିଲେ । ତା'ପରେ କୋକଶିଆଳଟାଏ । ଏଇଟା ବି good sign. କିନ୍ତୁ ମୁଁ ଚୁପ୍ ରହିଲି । ଶିଆଳ ବି ପଛରେ ଆସୁଥିବା କୁକୁର ଭୟରେ ବଣ ଛାଡ଼ି ଗାଁର ପୋଖରୀ ଗାଡ଼ିଆ ଅଡ଼କୁ ଚାଲିଗଲା ହଂସ କୁକୁଡ଼ା ସନ୍ଧାନରେ । ଆମ ଅଡ଼କୁ ଟିକିଏ ହସି ଦେଇ ଦୂବାଳିଆ ଭଳିଆକୁ ପାର ହୋଇ ଗାଁ ପଡ଼ିଆ ପହଞ୍ଚିଛି କି ନାହିଁ ଆମ ସାମନା ଫାଙ୍କା ବାଲିଆ ଜଗାରେ ଶିଙ୍ଗାଳ ହରିଣୀଟିଏ ଧାଇଁ ପାର ହୋଇଗଲା । ସାଙ୍ଗେ ସାଙ୍ଗେ ସ୍ଥାନଟା କବିତାମୟ ହୋଇଗଲା "ବଣ ହରିଣୀ, ଧାମନ୍ତେ ସୁନ୍ଦର ଧରଣୀ ।" "ମାରନା ମାରନା, ଆଶ୍ରମ ମୃଗ ଏ, ବଧ ନୁହେଁ ଗ୍ରାମ୍ୟଙ୍କର" ଅପେ

ଅପେ ମୋ ମନକୁ ଆସିଗଲା । ଦେବାନ ସାହେବ ବନ୍ଧୁକ ଉଠେଇବେ କି ନାହିଁ ଭାବୁଛନ୍ତି ସେ ଠିକ୍ ଆମର ମଞ୍ଚା ତଳେ ଛୁଡ଼ା ହୋଇ ଆମ ଆଡ଼କୁ ଚାହିଁଲା । ମୁଁ ଇଚ୍ଛା କରିଥିଲେ ନିଶ୍ଚୟ ତା' ଶିଙ୍ଗ ଧରି ପାରିଥାନ୍ତି । ହରିଣ ଅବଧ୍ୟ । ମହାରାଜା କାଶ୍ମୀରରୁ ଫେରି ଯେବେ ଶୁଣିବେ ! ଭାଲୁ ବଧ୍ୟ । ସଫେଇ ଦେଇହେବ । ଶିଙ୍ଗାଳ ହରିଣୀକୁ ମୁଁ ଏବେ ବି ଦେଖିପାରୁଛି, ଜିପ୍ ପାଖ ଦେଇ ପୁଣି ବୁଲି ବଣ ଭିତରକୁ ପଶିଯାଉଛି ।

ସବୁ ଜନ୍ତୁଗୁଡ଼ାକ ଆମ ପାଖ ଦେଇ ଆସୁଛନ୍ତି ବୋଲି ମୋର ଛାତି ଦୁକ୍ ଦୁକ୍ ହେଉଥାଏ । ବନ୍ଧୁକ ମୋର କାନ ପାଖରେ ଫୁଟିବ ! ହେଇ ତ ପ୍ରାୟ ଶହେ ଗଜ ଦୂରରେ ଲୋକଗୁଡ଼ାକ ଦିଶୁଛନ୍ତି, ଜାନୁଆର ନାହାନ୍ତି 'ବୋଲୁଛୁଏ କହୁଁ କହୁଁ ଧପାସ୍ ଧପାସ୍ ହୋଇ ଏକ ଅତିକାୟ ଭାଲୁ ମୁହଁକୁ ପ୍ରାୟ ବାଲି ସହିତ ମିଶାଇ ଧାଇଁଛି । ଏଥିନ ବେଳେ ଦେବାନ ସାହେବ ଅପ୍ରସ୍ତୁତ ଥିଲେ । ଧଡ଼ପଡ଼୍ ହୋଇ ବନ୍ଧୁକ ଟେକି ଜାନୁଆର ଅଡ଼କୁ ମୁହାଁଇଲେ । ଭାରି ଜୋର୍‌ରେ ଦୋହଲିଲା, ସାହେବଙ୍କ ଅଙ୍ଗ ଭରରେ । 'ଏଇ ଫୁଟିଲା ଏଇ ଫୁଟିଲା' ଭାବି ମୁଁ କାନ ଦୁଇଟାରେ ଅଙ୍ଗୁଳି ପୁରାଇ ଆଖି ବନ୍ଦ କରି ରହିଛି । ଖଟ୍ ଖାଟ୍ ଶବ୍ଦ ହେଲା । କାହିଁ ଶବ୍ଦ ନାହିଁ, ଧୂଆଁ ବି ନାହିଁ । ମେଜର ଉଁ ଆଁ ହୋଇ "misfire." ଏ ଶବ୍ଦର ଅର୍ଥ ବୁଝିଲି ନାହିଁ । ଆଉ ଗୁଳିଟାଏ ପୁରାଉ ପୁରାଉ ଭାଲୁ ପଳାଇ ଯିବାର ଚେଷ୍ଟା ନ କରି ଚତୁଷ୍ପଟାଙ୍ଗ ହୋଇ ଆମ ଆଡ଼କୁ ଚାହିଁଲା । ଛାତିର ଧଳା ଦାଗ ମନ୍ତ୍ରୀ ଜାମ୍ବେବ ଗଳାରେ ବଗାଟ ଟଗର ଫୁଲର ମୋଟା ହାର ପରି ଦିଶୁଛି । ଯେହେତୁ ସାହେବ ତାକୁ ଅବହେଳା ପ୍ରଦର୍ଶନ କଲେ ଅଶିଷ୍ଟ ଭାଲୁଟି ଲଜ୍ଜିତ ହୋଇ ଉଠିବସିଲା ଏବଂ ଖାଡ଼ିଛିଡ଼ା ହୋଇ ଧାଇଁଲା ସିଧା ଲୋକମାନଙ୍କ ଅଡ଼କୁ । 'ଯଃ ପଳାୟତି ସଃ ଜୀବତି' ଶ୍ଳୋକଟି ଜାଣିଥିଲା ପରି ଏକନିଶ୍ୱାସ ଏକମୁହାଁ ହୋଇ ଲୋକଙ୍କ ଧାଡ଼ି ବା ଅର୍ଦ୍ଧଚନ୍ଦ୍ରବ୍ୟୂହ କାଟିବାର ଯିମିତି ଉପକ୍ରମ କରିଛି ଲୋକେ ପ୍ରାଣ ବିକଳରେ ଜଣେ ଉପରେ ଜଣେ ଛୁଡ଼ା ହୋଇ ମୁଣ୍ଡର ଠିକ୍ ହାତ ଉପରେ ଥିବା କେନ୍ଦୁ ଡାଳକୁ ଧରି ଝୁଲି ରହିଲେ । ବେଁଚୁ ଉର୍ଦ୍ଧ୍ୱ ରାସ୍ତା ଅବଲମ୍ବନରେ ଅତିକ୍ରମ କରି ସେ ପୁଣି ଯେଉଁଆଡ଼ୁ ଆସିଥିଲା ସେ ଆଡ଼କୁ ଚାଲିଗଲା । ଦେବାନ ସାହେବ ମୁରୁମୁରୁ ହୋଇ ଇଂରାଜୀରେ କହିଲେ "ମୁଁ ଜାଣିଥିଲି ଭାଲୁ ସେଇବାଟେ ଖସିଯିବ । ପଛପଟୁ ଗୁଳି ମାଇଲେ ତାକୁ ବାଜିବ ନାହିଁ, ସେଥିପାଇଁ

ମୁଁ ନରସ୍ତ ହେଲି ।" ଭଲ ହେଲା; ସେ ଦୁର୍ନାମରୁ ରକ୍ଷା ପାଇଲେ; ମଣିଷ, ଷଣ୍ଢ, ସମସ୍ତେ ବଞ୍ଚିଲେ; ମୁଁ ବି ଗୁଳି ଶବ୍ଦରୁ ରକ୍ଷା ପାଇଲି ।

ଏ ଅଭିନବ ଭୟାବହ ଶିକାର ଅଭିଜ୍ଞତା ଯଥାର୍ଥରୂପେ ଉପଲବ୍ଧି କରିବାକୁ ଯାଉଛ ମହି ମଞ୍ଚାରୁ ଠୋ କରି ଥ୍ରି ନଟ୍ ଥ୍ରି ବନ୍ଧୁକରୁ ଗୁଳି ଫୁଟିଲା; ଗୁଳି ଶବ୍ଦର ପ୍ରତିଧ୍ୱନି ଆକାଶ ପବନ ଗଛ ପତ୍ରରୁ ପ୍ରତିଧ୍ୱନିତ; ହେବା ସଙ୍ଗେ ସଙ୍ଗେ 'ଢ଼ଃ ଢ଼ଃ' ଶବ୍ଦ ସେଇ ପ୍ରତିଧ୍ୱନି ସହିତ ମିଶି ଏମିତି ଜୋର ତଥା କରୁଣ ବୁକ୍‌ଫଟା ଆର୍ତ୍ତନାଦ ସୃଷ୍ଟି କଲା ଯାହା ଶୁଣିବା ପାଇଁ ଦେବଦାନବଗଣ ମଧ୍ୟ ଉପରୁ ଆମଅଡ଼କୁ ପ୍ରଶ୍ନବାଚୀ ଭଙ୍ଗୀରେ ନିସ୍ତବ୍ଧ ଅନାଇ ଥିବେ । ଆକାଶ ମେଦିନୀକୁ ସଂଯୁକ୍ତ କରୁଥିବା ନିନାଦ ମୋର କଳ୍ପନା ଅଟକାଇ ଦେଲା, ମୋର ଦେହାଙ୍ଗ ହିମାଳ କରିଦେଲା । ସେ ଚିତ୍କାରର ଅନ୍ତ ନାହିଁ ଯିମିତି । ଢ଼ଃ, ଢ଼ଃ, ଢ଼ଃ, ଢ଼ଃ । ତଳ ଦୁଦା ଭିତରେ ଦେଇ ଦେଖିଲି, ମାଆ ପଡ଼ି ଛଟପଟ ହେଉଛି; ଖଣ୍ଡେ ଜାଗାରେ ଗଡ଼ୁଛି, ଡାଳ ପତ୍ର ଛିନ୍ନ ଭିନ୍ନ କରି ଦେଉଛି, ରକ୍ତରଞ୍ଜିତ ମାଟି ନଖରେ ବିଦାରି ଦେଉଛି । ମୁମୂର୍ଷୁର ଆର୍ତ୍ତନାଦ (କ'ଣ ସେ କହିବାକୁ ଚାହୁଁଛି ମୃତ୍ୟୁକାଳୀନ ବିବୃତ୍ତି ଆକାରରେ ?) ଗଛ ଉପର ତଳ ଦେଇ ଭାସି ଆସୁଛି ।

ତା' ପରେ କରୁଣରୁ କରୁଣତର ଦୃଶ୍ୟ । ଶିକାରର ଯୋଡ଼ାଏ ଛୁଆ ଚିତ ହୋଇ ପଡ଼ିଥିବା ମାଆର କଅଣ ହୋଇଛି କିଛି ନ ବୁଝି, ଦୁଧ ଶୋଷିବା ସୁବିଧା ପାଇଲେ ଭାବି, ଧାଇଁ ଆସି ଅଧୀର ଆଗ୍ରହରେ ମୁହଁ ଦୁଧ ବେଣ୍ଟିରେ ଲଗାଇବାକୁ ଯାଉଛନ୍ତି, ଭାଲୁକାଣୀ ଗୋଟାଏ ଗୋଟାଏ କରି ଏମିତି ଦନ୍ତ ବିହ୍ବଳ ଚାପୁଡ଼ା ବଜାଇ, ଦେଲା—ଯିମିତି କହି ଦେଲା "ପଳାଅ ଧନ, ଏଠି ଅଛି ମୃତ୍ୟୁ, ନିର୍ଦ୍ଦୟ ମୃତ୍ୟୁ, ମୁଁ ଯାଉଛି, ତୁମେ କୁଳକୁ ବଞ୍ଚାଅ ।" ପିଲା ଦିହେଁ ମାଆ କଥା ବୁଝି ପାରି ତିନି ମାସିଆ ପୁଷୁରିଛୁଆ ପରି ଲୁଙ୍ଗୁରୁ ଲୁଙ୍ଗୁ ହୋଇ ପଳାଉଥାନ୍ତି ଅନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳକୁ ହେତୁକବେଳେ ଲଗେ ଲଗେ କେତେକ ଗୁଳି ମାଆକୁ ବାଜିଲା । ତା'ର କ୍ରନ୍ଦନ ମୁହୂର୍ତ୍ତକେ ବନ୍ଦ ହୋଇଗଲା, ଦଣ୍ଡେ କମ୍ପି କମ୍ପି ସ୍ଥିର ହୋଇଗଲା । ପଛକୁ ନ ଚାହିଁ ଚାଲିଯାଉଥାନ୍ତି, ସେଇ ମହି ମଞ୍ଚରୁ ପ୍ରାୟ ଏକା ସମୟରେ ଯୋଡ଼ାଏ ଗୁଳି ବାଜିଲା ଦୁଇ ଛୁଆଙ୍କ ପଛରେ । ତଥାପି ସେମାନେ ଅଟେଇ ଅଟେଇ ବୁଦା ଅନ୍ତରାଳକୁ

ଗୁଳି ଗଲେ । ପୋଲିସ ସାହେବଙ୍କ ଦୁଇ ପୁଅ ଲବ କୁଶଙ୍କ ପ୍ରାକ୍‌ଟିସ୍ ଗୁଳି ସେ ଦୁଇଟା । ଅନେକ ସମସ୍ତ ପର୍ଯ୍ୟନ୍ତ ସେମାନେ ବି କୁଁ କୁଁ ହେଉଥିଲେ; ମାଆକୁ ନ ପାଇ, ବା ଗୁଳି ଖାଇ କହି ହେବନି । ବାପା ବଞ୍ଚିଗଲା । ପିଲା ଦଟ୍ଟେ ଦେଶାନ୍ତରୀ ହେଲେ । ପଡ଼ି ରହିଲା କେବଳ ବୃଦ୍ଧିଣୀ ମାଆ ଆକାଶକୁ ଚାହିଁ ।

ଶିକାର ଶେଷ ହେଲା । ସୂର୍ଯ୍ୟଦେବ ମାନଗଡ଼ ପାହାଡ଼ ପଛରେ ଲୁଚିଗଲେ । ଶିକାରୀମାନେ ମଞ୍ଚାରୁ ଓହ୍ଲାଇଲେ । ଅନ୍ୟ ଯେଉଁ ଶହେ ଦୁଇଶ ଲୋକ ଶିକାରରେ ଭାଗ ନେଇଥିଲେ ସେମାନେ ବି ଆନନ୍ଦରେ ମଞ୍ଚଆଡ଼କୁ ମାଡ଼ିଆସିଲେ ଏବଂ "ଏଇଠି ପଡ଼ିଛି" କହି ଘେରିଗଲେ ଭାଲୁ ଚାରିପଟେ । ସାହସୀ ଜଣେ ଦି'ଜଣ ପାଖକୁ ଯାଇ ମଲା ଭାଲୁକୁ ବାଧା ଗୋଇଠା ପ୍ରହାର କରୁଥାନ୍ତି, କହୁଥାନ୍ତି "ଶାଳି ! ହେଇଛୁ ଏଥର, ଆମକୁ କମ୍ ହଇରାଣ କରିଛୁ ?" କେହି କେହି ମେଞ୍ଚା ମେଞ୍ଚା ଚୁଟି ଉପାଡ଼ି ନେଲେ, ଗୁଣିଗାରେଡ଼ିର ତେଉଁରିଆ କରିବାକୁ । ଲୋକଙ୍କ ଭିତରକୁ ଯାଇ ଜୟଧ୍ୱନି ଆରମ୍ଭ କଲି "ଜୟ ! ମେଜର ପାଣ୍ଡେଙ୍କ ଜୟ !" ସମବେତ ଜୟଧ୍ୱନି ପୋଟଫ୍ଲିଆ ବଣରୁ ସାହେବଙ୍କ କୋଠି ପର୍ଯ୍ୟନ୍ତ ଶୁଭିଥିବ । ମୁରୁକି ହସି ସାହେବ କହିଲେ, "ମୁଁ ବି ତାକୁ ମାରି ପାରିଥାନ୍ତି, ସେଟା ମୋ ରେଞ୍ଜରୁ ଚାଲିଯାଇ ଏସ୍ ପି. ଙ୍କ ଇଲାକାକୁ ଚାଲିଗଲା, ଅନ୍ୟର ଶିକାର ମାରିବା ଶିକାରୀର ଧର୍ମ ନୁହେଁ ବୋଲି ବନ୍ଧୁକ ଫୁଟାଇଲି ନାହିଁ ।" ଭାଗ୍ୟ ଭଲ; ତାଙ୍କୁ ଗୁଳି ଫୁଟାଇବାକୁ ପଡ଼ିନି; ନହେଲେ କାଶ୍ମୀରରୁ ଫେରି ମହାରାଜା ଭର୍ତ୍ସନା କରିଥାନ୍ତେ ।

ମେଜର ସାହେବଙ୍କ ଜିପ୍ ପଛରେ ଭାଲୁ ଥୁଅହେଲା । ଦେଢ଼ ମାଇଲ ଦୂର ଆମ ଗାଁକୁ ଗଲୁ । ଖଟିଅରେ ବସି ଦେବାନ ସାହେବ ୫୦ ରକମର (ସାହେବଙ୍କ କଥା ଅନୁସାରେ ଆଠୋଟି ପିଲାଝିଲା ମୋ ସ୍ତ୍ରୀ ମୋତେ ଦେଇଯାଇଛନ୍ତି) ତାଲପିଠା ମୋ ରାଣୀ ଶାଳପତ୍ର ଥାଳରେ ପରଶିଲେ । ଗାଁର ଲୋକେ ଅଜାଡ଼ି ହୋଇପଡ଼ିଲେ । ମୋର ପରି ଗାଁ ଲୋକେ ଖୋସାମଦିଆ ଥିବାରୁ କୁହାକୁହି ହେଲେ, "ଦେବାନ ସାହେବ, ସାକ୍ଷାତ୍ ଭଗବାନ, ତାଙ୍କ ଛଡ଼ା ଆମକୁ ଏ ଅସୁରୁଣୀ ହାବୁଡ଼ରୁ କିଏ ରକ୍ଷା କରିଥାନ୍ତା !"

ଭାଲୁର ଲାଶ୍ ଦେବାନ ସାହେବଙ୍କ କୋଠିକୁ ଗଲା । ମେଜରଙ୍କ ସ୍ତ୍ରୀ ପଚାରିଲେ "ଭାଲୁକୁ ମାରିଲା କିଏ ? ତୁମେ ନା ତୁମ ପୋଲିସ ସାହେବ ?" ଉତ୍ତରରେ ସ୍ୱାମୀ

ସ୍ତ୍ରୀଙ୍କ ଅଡ଼କୁ କଟମଟ ଚାହିଁଲେ । କଲିକତାକୁ କାଳକ୍ରମେ stuffed ହୋଇ ଭାଲୁ ଆସିଥିଲା । ଅତିଥିଙ୍କୁ ଅଙ୍ଗୁଳି ଦେଖାଇ ପାଣ୍ଡେ ସାହେବ କେବେ କହିବାକୁ ଭୁଲନ୍ତି ନାହିଁ, "ଏଇଟାକୁ ପ୍ରାୟେ ମାଇଲେ ଦୂରରୁ ମାରି ଏକା ଗୁଳିକେ ଠାଏଁ ଶୁଆଇ ଦେଇଛି; ଉଁ ନାହିଁ ଚୁଁ ନାହିଁ ।"

ମହାରାଜା କାଶ୍ମୀରରୁ ଫେରିଲେ । ଯୋଡ଼ାଏ ଉନଟା ବଡ଼ ବଡ଼ ମାରଖୋର (ବଡ଼ ବଡ଼ ଦାଢ଼ିଆ ବଡ଼ ଶିଙ୍ଗିଆ ହିଂସ୍ର ଛେଳି) ମୁଣ୍ଡ କାନ୍ଥରେ ମରାହୋଇଥାନ୍ତି । ଆମେ ତାରିଫ୍ କରୁଥାଉଁ । ମହାରାଜା ଗୁରୁଗମ୍ଭୀର ସ୍ୱରରେ ଦବୁ ଜାଣିଶୁଣି ପଚାରିଲେ, "ଭାଲୁଟା କାହା ଗୁଳିରେ ମଲା ?" ଆମେ ନୀରବ ହେଲୁଁ । ସେ ଶ୍ଳେଷ ରଖି ମନ୍ତବ୍ୟ କଲେ, "ଆଇ ଏସ୍. ପି. ଆଉ ପ୍ରଭୃର ଅଫିସର ପରି କର୍ମଚାରୀ ଯେଉଁ ଗଡ଼ଜାତରେ ଥିବେ ସେଠି ରଜା ରହିବେ ନାହିଁ କି ରାଜ୍ୟ ବି ରହିବ ନାହିଁ ।"



# ରକ୍ତ ମନ୍ଦାର

ମୁଁ ବସ୍କୁଟ ଖାଇସାରି କୁକୁରଟାକୁ ବୁଲାଇବାକୁ ନେଉଛି ଫାଟକ ପାଖ ମନ୍ଦାର ଗଛ ଉପରେ ଆଖିପଡ଼ିଲା । ଆରେ, ଆହୁରି ଆଠ ଦଶଟା ଫୁଲ ଏଠିସେଠି ଲୁଚିଛପି ରହିଯାଇଛି । ଅଟକି ଗଲି । ରହ ରହ ବୋଲି କୁକୁରଟାକୁ କହି ପୁଣି ଫୁଲ ସଂଗ୍ରହ କରିବାକୁ ଆରମ୍ଭ କଲି ।

ସଦ୍ୟ ପ୍ରସ୍ଫୁଟିତ ଫୁଲରେ ଜନ୍ଦା ପିମ୍ପୁଡ଼ି ମହୁମାଛିଠାରୁ ଆରମ୍ଭ କରି ମଣିଷ ଭଗବାନ ପର୍ଯ୍ୟନ୍ତ ସମସ୍ତଙ୍କ ଲୋଭ । ଏଇ ଫୁଲ ପାଇଁ କଳିଗୋଳ, ମାରପିଟ, ଛଡ଼ାକଟା ।

ମୁଁ ଯେଉଁ ଫ୍ଲାଟରେ ଥାଏଁ ତା'ର ତଳେ ବଗିଚାରେ ଅନ୍ୟାନ୍ୟ ଫୁଲ ମଧ୍ୟରେ ମନ୍ଦାର ଫୁଲ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ । ବଡ଼ ବଡ଼, ନାଲି ନାଲି, ଝଅରି ମନ୍ଦାର । ଛ'ଘଣ୍ଟା ପାଞ୍ଚଟାରେ ବାଜିବା ସଙ୍ଗେ ସଙ୍ଗେ ବା ପୂର୍ବେ ଫୁଲ-ପ୍ରେମୀ (ଚୋର) ସବୁ ଜଣକ ପରେ ଜଣେ ଆସିଯାଆନ୍ତି । ଯେ ପ୍ରଥମେ ଆସେ ସେ ଚେଷ୍ଟା କରି ନିଃଶେଷ କରି ସବୁ ତୋଳି ନେବ ଯିମିତି ପରେ ଆସିବା ଭକ୍ତ ବା ପ୍ରେମିକ ଆଉ କିଛି ପାଇବ ନାହିଁ ।

ଫୁଲଗୁଡ଼ାକ ବଳାତ୍କାର ବା ଧର୍ଷଣକୁ ଖୁବ ଡରନ୍ତି ବୋଧହୁଏ । କାରଣ ସେମାନେ ଫୁଟିବାକୁ ସହଜେ ଚାହାନ୍ତି ନାହିଁ । ଝିପିଝିପି ବର୍ଷା ହେଉଥିବ, ଅନ୍ଧାର ଥିବ ସେମାନେ ଓଢ଼ଣା ଖୋଲି ଚାହିଁବେ ନାହିଁ ବା ଦୋକୁ ବାହାରିବେ ନାହିଁ, ଦୁର୍ବୃତ୍ତମାନଙ୍କ ଭୟରେ ।

ଏଇ ଦୁବୃତ୍ତିମାନଙ୍କ ମଧ୍ୟରୁ ମୁଁ ବି ଜଣେ । ଏଠିକ ବୁଢ଼ା; ରାତରେ ଭଲ ନିଦ ହୁଏନି, ବଡ଼ଭୋରରୁ ନିଦ ଭାଙ୍ଗିଯାଏ, ଦୁଇଟି ଲାଲ ଲାଲ ମନ୍ଦାରରେ ଲୋଭ, ଠାକୁର ନାଁରେ ସଂଗ୍ରହ କରେଁ । ଚଷମା ନ ହେଲେ ଫୁଲମାନେ ଭଲ ଦିଶନ୍ତି ନାହିଁ । ରାସ୍ତାର ବାତ୍ତିଲାଇଟ୍‌ରେ ସବୁଫୁଲ ଏକାକାର ହୋଇଯାଆନ୍ତି । ଅନ୍ଦାଜବାକୁ ପଡ଼େ ।

ବଗିଚାର ବାଡ଼କରକୁ ଲାଗି ଜଗନ୍ନାଥ ବଳଭଦ୍ର ସୁଭଦ୍ରା ସବୁ ଛଅଟି ବୁଦାଳିଆ ମନ୍ଦାର ଗଛ । ଛୋଟ ଗୋରୁଙ୍କ ଦୌରାତ୍ମ୍ୟରେ ଝଙ୍କାଳିଆ ହୋଇପାରନ୍ତି ନାହିଁ । ତଥାପି ବୁଢ଼ା ଗଛରୁ ରକ୍ତ ବାହାର କରି ଫୁଲ କିଛୁ କିଛୁ ଫୁଟାନ୍ତି । ବାସନା ନାହିଁ, ଫଳ ହୁଏନି । ତଥାପି ଫୁଲ ଫୁଟାନ୍ତି ଚାହିଁକି, ଭଗବାନ ନା ମଣିଷ କାହାର ବସ୍ତବା ଇଙ୍ଗିତ ଏ ପ୍ରତିଶ୍ରୁତି ପଛରେ ।

ଫୁଲ ସଂଗ୍ରହ ଅଭିଯାନରେ ମୁଁ ବି ଜଣେ ପ୍ରତିଯୋଗୀ । ଠାକୁର ଭକ୍ତ ଯେମିତି ସେମିତି । କେତୋଟି ଫଟୋ । ଶୋଇବା ଘର ଆଡରେ ଥୁଆ ହୋଇ-ଛନ୍ତି । ଜଗନ୍ନାଥ କୁଆଡ଼େ ଲାଲଫୁଲ ବିଶେଷତଃ ମନ୍ଦାର ଭଲପାଆନ୍ତି ନାହିଁ । ରକ୍ତଜବା ମାଆ କାଳୀଙ୍କର ଫୁଲ । ମୋର ପାଞ୍ଚୋଟି ଫୁଲ ଦରକାର, ଗୋଟିଏ ଜଗନ୍ନାଥ ପାଇଁ, ଗୋଟିଏ ସ୍ୱର୍ଗତ ବାପା ମାଆଙ୍କ ପାଇଁ, ଆଉ ଗୋଟିଏ ସ୍ୱର୍ଗତା ସ୍ତ୍ରୀଙ୍କ ପାଇଁ, ଗୋଟିଏ ମୋ ନିଜ ଲେଖା ବହିଆକ ପାଇଁ ଏବଂ ଅନ୍ୟଟି ନିଜ ଫଟୋ (ନ ମରିଥିଲେ ବି) ପାଇଁ ।

ଆଶ୍ଚର୍ଯ୍ୟ କଥା, ନିଜ ଘରତଳ ବଗିଚାରେ ଏତେ ଫୁଲ ଫୁଟୁଥିଲେ ବି ଦିନେ ଦିନେ ଗୋଟିଏ ବି ଫୁଲ ମିଳେ ନାହିଁ । ଲୋକଗୁଡ଼ା ଏତେ ପାଜି । ଅନ୍ୟ ପାଇଁ ଗୋଟିଏ ବି ରଖିବେ ନାହିଁ । ପୂଜା କରନ୍ତି, ନା ପରୁଆ ପୋଡ଼ି ଖାଆନ୍ତି, ନା ବାନ୍ଧି କରି ବଡ଼ ସିଗାରେଟ୍ ଟାଣନ୍ତି ।

ପ୍ରଥମେ ଆସେ ସ୍ତ୍ରୀ ଲୋକଟାଏ । ସ୍ୱାମୀଛଡ଼ା, ଚା' ଦୋକାନ ଗୁମୁଟି ପକାଇ କରିଛି । ସାପ କଣ୍ଟା, ଜଦା ପିମ୍ପୁଡ଼ି ତା'ର ଭୟ ନାହିଁ । ଲେଣି ହୋଇ ବାଡ଼ ଉପରେ ଭର ଦେଇ ହାତ ପହଞ୍ଚି ନଥିବା ଡାଳରୁ ତୋଳିନେବ । ମାଛ ଅନ୍ଧାରୁଆ

ସକାଳରେ ଦଳେ ଏ ପାଖରୁ ଫୁଲ ତୋଳୁତୋଳୁ ତା' ଉଦ୍ୟରେ ହାତ ବାଜ ଯାଇଥିଲା । ସେ ଏ ପଟରୁ ତୋଳିଲା ବେଳେ ଅନ୍ୟପଟୁ ଅସେ ଜଣେ ବଙ୍ଗାଳୀ ଲୋକ । ପେଣ୍ଟଲୁନ୍ ପିନ୍ଧା, ଚଷମାବାଲା ଭଦ୍ରଲୋକ । ମାଷ୍ଟେର ପୂଜା ପାଇଁ ସାଗଳ । ହାତରେ ବଂଶୀଝଡ଼ା ପର ଶ୍ରେଷ୍ଠ ଲଠିଟିଏ । ସେ ବ ଫୁଲ ତୋଳିବାରେ ଏକ୍ସପାର୍ଟ । ସେମାନଙ୍କ ପରେ ଆସନ୍ତି ଖୁଦୁରୁକୁଣୀ ଓଷା କରୁଥିବା କଣୋଇ ଦଳେ, ସେମାନଙ୍କ ପରେ ଗୁଡ଼ାଏ ଅନାଦନା ମାଙ୍କଡ଼ିଆ ପିଲ । କିଛି ପାଆନ୍ତି ନାହିଁ । ଅଧାଫୁଟା କଢ଼ିଟିରୁ ଭଡ଼ିଓଟାର ନେଇଯାଆନ୍ତି ।

ଆଚରଣବିଧି ପାଳିଲା ପରେ ମୁଁ ବାଡ଼ ବାହାରପଟୁ ଫୁଲ ତୋଳେ ନାହିଁ; ସେମାନେ ଫାଟକ ଭିତରକୁ ପଶି ମୋ ପଟୁ ଫୁଲ ନେବାକୁ ସାହସ କରିପାରନ୍ତି ନାହିଁ । କୁକୁରକୁ ସାବଧାନ ପଟାଖଣ୍ଡିକୁ ଡରନ୍ତି ।

ଅଜି ପାଞ୍ଚଟା ବାଜିବା ପୂର୍ବରୁ, ଯେତେବେଳେ ଫୁଲଗୁଡ଼ାକ ସୂର୍ଯ୍ୟୋଦୟକୁ ବ୍ୟାକୁଳ ହୋଇ ଗୁହିଁଥାନ୍ତି, ମୁଁ ଗୁଡ଼ାଏ ଫୁଲ ସଂଗ୍ରହ କରିଥାଏଁ । ଆଚରଣବିଧି ଉଲ୍ଲଙ୍ଘନ କରି ବାହାର ବାଡ଼ପାଖର ଫୁଲ ମଧ୍ୟ ଯଥା ସମ୍ଭବ ନିଃଶେଷ କରି । ହୁଂସାରେ; ଯିମିତ ଅନ୍ୟ କେହି ଆଜି ନ ପାଆନ୍ତୁ ।

ଦେଖିଲି ପାଞ୍ଚ ଛଅଟା ଫୁଲ ରହିଯାଇଛି, ନଦବାଉଳା ଆଖି ହାବୁଡ଼ରୁ ବର୍ତ୍ତିଯାଇଛି । ପୂର୍ବ ଫୁଟିଛି, ଲାଲ ଟକଟକ ସବୁଜ ଶାଢ଼ୀ ଯୋଗୁଁ ବୈପରୀତ୍ୟରେ ପାଗଳକରି ଦେହେବ । ଗୋଟି ଗୋଟି ତୋଳିଲି ।

ଉପରକୁ ଯାଇ ଠାକୁରଘର ଫୁଲଗୁଙ୍ଗୁଡ଼ିରେ ଥୋଇଦେଇ ଆସିବି ଭାବୁଥିଲି; କୁକୁରଟାର ପ୍ରେସର ବୋଧହୁଏ ବେଶୀ ହୋଇଲା; କାଇଁ କାଇଁ ହୋଇ ଏପରି କି ମୋ ହାତକୁ ଆମ୍ପୁଡ଼ା ଆମ୍ପୁଡ଼ି କଲା । ଫାଟକକୁ ଲଗି ପାଚେରି ଡେଇଁବା ପାଇଁ ଯେଉଁ ଗ୍ରାନଟା ପାହୁଚ ତାର କଣରେ ଫୁଲ ପାଞ୍ଚଟାକୁ ଥୋଇଦେଲି ଏବଂ come come କହି କୁକୁରକୁ ଡାକିଲି । ଫୁଲଗୁଡ଼ାକ କେହି ଦେଖି ପାରିବେନି ବା ତଳେ ପଡ଼ିଛି ବୋଲି ପୂଜା ପାଇଁ ନେବେନି ଭାବି ଗ୍ଲଲଗଲି । ଲୁଙ୍ଗି ଗେଞ୍ଜି ପିନ୍ଧି ଦୂରକୁ ଯିବି ନାହିଁ । ସାଙ୍ଗେ ସାଙ୍ଗେ ଫେରିଅସିବା । ଫୁଲ ଫେରିଲାବେଳେ ଧରି ଗ୍ଲଲ-ଯିବି । ମନେପଡ଼ିଲେ ହେଲା । ମନେ ନ ପଡ଼ିଲେ, ନା ଠାକୁରର, ନା କୁକୁରର ।

ଏବେ ଏବେ ବହୁତ ଭ୍ରମ ହେଉଛି, ବାରମ୍ବାର ବହୁତ କଥା ଭୁଲିଯାଉଛି ଏବଂ କାଳେ ଫୁଲ କଥା ଭୁଲିଯିବ ବୋଲି ମନ୍ଦାର ଡାଳଟିଏ ହାତରେ ଧରି କୁକୁର ସାଙ୍ଗରେ ଗଲି । ଏ ବୁଦ୍ଧି କାମ ଦେଲା । ଫେରି ଆସୁଛି ଦେଖୁଛି ମନ୍ଦାର ଡାଳ ମନେପକାଇ ଦେଲା ଫୁଲ କଥା । ମାତ୍ର ଫୁଲ କାହିଁ ?

ସୀତା ବା ହେଲେନ୍‌ଙ୍କୁ ଦୁର୍ବୃତ୍ତମାନେ ଚୋରିକରି ନେଲା ପରେ ସେମାନଙ୍କ ସ୍ୱାମୀମାନେ ଯିମିତି ପ୍ରତିହିଂସା ନିଆଁରେ ଜଳୁଥିଲେ ମୁଁ ସିମିତି ହେଲି । ଆଉ ରକ୍ଷା ନାହିଁ । ଟ୍ରୟ ବା ଲଙ୍କାଗଡ଼ ସବୁ ଭସ୍ମୀଭୂତ କରିଦେବି । କିଏ ଫୁଲ ନେଇଛି ? ସେ 'ଖାନକୀ' ଗୁ'ବାଲାଟା, ସେ ଅଯୋଡ଼ା ବଙ୍ଗାଳୀ ପେନ୍‌ସନ୍ ପିନ୍ଧା ଭଦ୍ରଲୋକ ନା ସେ ଛଟକୀ କଣେଇଥି ଦ'ଟା, ନା ସେ ମାଙ୍କଡ଼ଟୋକା । "ମେଞ୍ଚଡ଼ ଟୋକା ଧ'ଙ୍କଣ୍ଡ କଲ କେଡ଼େ କାଣ୍ଡରେ, ଏକା ଗୃପ୍ତଡ଼ାକେ ତୋର ଛୁଞ୍ଚେଇବି ମୁଣ୍ଡରେ ।" ସୀତା ଚାଲିଗଲା ପରେ ଅଶ୍ରମ କୁଡ଼ିଆ ଯିମିତି ଅଶୋଭା ଦିଶୁଥିଲା ପାହାଚ ତଳ ସ୍ଥାନଟା ସିମିତି ଟାଙ୍ଗରା ଦିଶୁଥାଏ । କେବଳ ଶେରଲକ୍ ହୋମ୍ସ ପରି ଗୋଏନ୍ଦା ହେଲେ ହେଲା । ଏତେ ବିଦ୍ୟାବୁଦ୍ଧି ଚତୁରତା କୌଶଳ ମୋର ଆସିବ କୁଆଡ଼ୁ ? ସେ ଗୋଟାଏ trap ବା ଜାଲ ବା ଯନ୍ତା ପାତିପାରିବ ?

ଦୁଇବର୍ଷ ତଳେ ଯେତେବେଳେ ବାଡ଼ ଘେର ଦେଉଥିଲି ବୁଢ଼ା ମଜୁରିଆ ମୋତେ ବୁଦ୍ଧିବାଟ ଦେଖାଇଲା ଦୁର୍ବୃତ୍ତ ନିବାରଣ ପାଇଁ । ତକ୍ଷକ ହାତୁଡ଼ରୁ ପରୀକ୍ଷିତ ମହାରାଜାଙ୍କ ଜୀବନ ରକ୍ଷା ପାଇଁ ଯେତେବେଳେ ଲୁହା କାନ୍ଥବାଡ଼ ନେଇଥିଲ ଘର ରଖାଯାଇଥିଲା ତାହା ବି ଅକାମୀ ହେଲା ।

ବୁଢ଼ା କହିଲା, "ବାବୁ ! ବାଡ଼, ଲୁହାତାର ଯାହା ଦେଲେ ବି ଫୁଲ ରହିବ ନାହିଁ, ଚୋରି ହୋଇଯିବ, ମୁଁ ଗୋଟାଏ ବୁଦ୍ଧି ପାଞ୍ଚୁଛି । କହିବେ ତ କରିବି ।" ମୁଁ ଖିଆଲରେ ହଁ କରିଦେଲି । ଦେଖିଲି ଦିନେ ସେ ଦ' ଗଡ଼ ନାଗଫେଣୀକଣ୍ଟା ଆଣି ବାଡ଼ କଡ଼େ କଡ଼େ ପୋତିଚାଲିଛି । ସାତ ଆଠ ବର୍ଷର ଗାଉଁଲି ଝିଅଟିଏ ବାଟ ଦେଇ ଯାଉଥିଲା । ତା'ର ମନ ହେଲା ମୂଲିଆକୁ କହିଲା "ଏ ବୁଢ଼ା, ସିଜୁ କଣ୍ଟାରେ ବାଡ଼ ଘେରୁଛୁ ! ସିଜୁ କଣ୍ଟାରେ ବାଡ଼ ଘେରନ୍ତି ନା । କୁଷ୍ଠ ହୁଏ । ସିଜୁ କଣ୍ଟା ବଡ଼ ବିଷକଣ୍ଟା ।"

ବାଟଚଲା ଝିଅ ବିକଟେ କଥା ମୋର ବିଶ୍ୱସ୍ତ ମୂଳିଆ କାହିଁକି ଶୁଣିବ ? ସେ ତା' କାମ କଲା । କାଳେ ଗଛ ମରିଯିବ ବୋଲି ଖରା ଦିନରେ ସିଜୁ ବାଡ଼ରେ ପାଇପରେ ପାଣିଦେଇ ମଡ଼ାଇଲା । ସିମିତ ଦେଖୁଡ଼ା ସିଜୁ ନୁହେଁ ମନ୍ଦାର ବା ଗୋଲାପ । ବୁଢ଼ାର ଆଦର ଯତ୍ନରେ ସିଜୁ ଗଛ ଠିକ୍ ନାଗଫେଣି ପରି ଶୋଭା ପାଇଲା ।

ସେ ବିଶ୍ୱସ୍ତ ମଜୁରିଆଟି ମରିଗଲାଣି । ତାରି ପୋତା ସିଜୁ ଗଛଟା ଆଖିରେ ସିମିତ ପଡ଼ୁଛି ମୋର ବୁଢ଼ିର ସିଜୁ ଯାଙ୍କେ ଯାଙ୍କେ ଗଜୁରି ଉଠିଲା ।

ଶ୍ରୀକୃଷ୍ଣଙ୍କୁ ମାରିବାର ଫନ୍ଦିଟିଏ ବାହାର କରି କଂସ ବି ଏତେ ଖୁସି ହୋଇ ନଥିବ । ଯୋଡ଼ାଏ ଛନୋଟି ଫଣା ବାଡ଼ରୁ କାଟିଆଣି ଯେଉଁଠି ଫୁଲ ଭାସ୍ ଯାଉଥିଲା ସେଇଠି ଥୋଇଲି । ଅସ୍ଥିକଙ୍କାଳରେ ମାଂସ ଲଗାଇ ଗାଲ୍ଭିକ ସିମିତ ଜୀବନ୍ତ ରଚନାଟିଏ ସୃଷ୍ଟି କରେ ମୁଁ ବି ସିମିତ ବାଲିମାଟି ଦେଇ ସମସ୍ତ କଳା କୌଶଳ ପ୍ରୟୋଗ କରି ଅନୁଚ ପିଣ୍ଡିଟିଏ କଲି । କେବଳ ଶତସହସ୍ର କଣ୍ଟା ବାଳ ରଙ୍ଗ ସହିତ ମିଶି ଉପରକୁ ଫୁଟିଥାଏ ।

ପରଦିନ ସକାଳ । କୁକୁରକୁ ବୁଲାଇ ନେବା ବେଳ । କୁକୁର ଗଲା ନାହିଁ । ମେଘୁଆ ପାଗ, କାଦୁଅ ରାସ୍ତା । ପାଦରେ କାଦୁଅ ଲାଗିବ ବୋଲି ଗଲା ନାହିଁ ।

ତା' ଜାଗାରେ ସାଙ୍ଗରେ ବାହାରିଲା ନାତି । ଚାରି ପାଞ୍ଚ ବର୍ଷ ବୟସ । ଗ୍ରୀକ୍ କାମଦେବ କ୍ୟୁପିଡ଼ର ପେଣ୍ଟିଂ ଛବି ପରି ତା'ର ରୂପ । ଗାଲ ଲାଲ୍ ଲାଲ୍ । ଭାରି ଗୁଲୁଗୁଲିଆ ପିଲାଟି । ଧରିନିଅନ୍ତୁ, ଏଇ ନାତିପିଲାଟି ମୋର ସିମିତ ପ୍ରିୟ, କୁକୁର ପିଲାଟି ବି ମୋର ନାତୁଣି ପରି ଅତି ପ୍ରିୟ । ଦୁହିଁଙ୍କ ମଧ୍ୟରେ ସେମାନଙ୍କ ଅଭେଦ ପ୍ରୀତି, ସଦ୍‌ଭାବ । ନାତିକୁ ଆ ବୋଲି ଡାକିଲି । ସେ ମୋ ପଛେ ପଛେ ଚାଲିଲା ।

ଘରେ ଆଉ କେହି ନ ଥିଲେ । ପୁଅ ରାତିରେ ଘରକୁ ଫେରି ନ ଥିଲା । କୁକୁର କାଳେ ମୋ ଅନୁପସ୍ଥିତିରେ ଘରୁ ବାହାରି ଆସି ଭୋ ଭୋ ହୋଇ ଅତିଥି

ଅଗନ୍ତୁକଙ୍କୁ ଘଉଡ଼ାଇବ ବୋଲି ତାକୁ ବସ୍ତ୍ରଟିଏ ଦେଇ ବାହାରପଟୁ ଜଞ୍ଜିରଟା ଲଗାଇଦେଇ ଚାଲିକି ଗଲି ।

ପୋଷ୍ଟଅଫିସ ବାରଣ୍ଡାରେ ଯେଉଁ ବେଞ୍ଚଟା ପଡ଼ିଥିଲା ସେଇଠି ବସିବା ପାଇଁ ନାଉକୁ କହିଲି । ନା ନା, କହି କହି ଶେଷରେ ବସିଲା । ମୁଁ ମନ୍ଦାର ଗଛ ପାଖକୁ ଗଲି । ଦୈବକୁ ତିନି ଚାରିଟା ଫୁଲ ମୋ ହାତୁଡ଼ୁ ବଞ୍ଚି ଯାଇଥିଲା । ସେଗୁଡ଼ାକୁ ତୋଳିଲି ଏବଂ ପତ୍ରାରେ ଥୋଇଲି । ବେଞ୍ଚରେ ଅଧିକ ବସି ବୋଧହୁଏ ନାଉ-ଟୋକା ଦେଖୁଥିଲା ମୋ ଫୁଲତୋଳା । ଶୁଣପଟେ କଣ୍ଡାଥିବା ଗ୍ରେଟ ବେଦୀରେ ଫୁଲତକ ଥୋଇଦେଇ ଏପଟ ସେପଟ ଚାହିଁଲି । କେହି ନାହିଁ । "ଆଜି ଯିବୁ କୁଆଡ଼େ ?" ମନେ ମନେ କହିଲି । ଉପରକୁ ନାଉକ ଧରି ଉଠିଯିବ ଭାବୁଛି ମନେପଡ଼ିଲା କୁକୁର ଶୁଣପାଞ୍ଚ ଦିନ ହେଲା ମାଂସ ଖାଇନି । ପ୍ରାୟ ଶହେ ହାତ ଦୂରରେ ମାଂସ ଦୋକାନ । "ହେଇଠି ବସିଥିବୁ, ଚାଲିକୁ ଓହ୍ଲାଇବୁ ନାହିଁ । ମୁଁ କ୍ଲାକ ପାଇଁ ମାଂସ ଆଣିବାକୁ ଯାଉଛି, ତୁ ମୋତେ ଚାହିଁଥା, ମୁଁ ଯାଉଁ ଯାଉଁ ଫେରିଆସୁଛି । ଏଇ ତିନିଟା ପାହାଚ ଡେଇଁବୁ ନାହିଁ ।" କହି ମୁଁ ଚାଲିଗଲି । ତ୍ରେତାଯୁଗରେ ସୀତା ତ ମାନି ନଥିଲେ । କଳିଯୁଗର ନାଉ କ'ଣ ବାରଣ ମାନିବ ?

ମାଂସ ଦୋକାନରେ ପହଞ୍ଚି ଦେଖିଲି ବଡ଼ ଗଛଡାଉପରେ ଛେଳିକୁ ଶୁଆଇ ସୁଲେମାନ ଜବେ କରୁଛି । ଛଟପଟ ଯାଉଁକୁ ପିଚ୍ ପିଚ୍ ହୋଇ କଞ୍ଚାରକ୍ତ ପିଚ୍ ଗଛଡାରେ ବହିଯାଉଛି । କ୍ରୁର, ନୃଶଂସ ଦୃଶ୍ୟ ଉପଭୋଗ କରିବାର ପ୍ରବୃତ୍ତି ରୋଧ କରି କୁକୁର ବରଂ ଓପାସେ ରହୁ ମନେ ମନେ ଭାବି ଫେରିବାକୁ ଯାଉଛି ଗୋଟାଏ ବୁକୁଫଟା ଶିଶୁକଣ୍ଠର ଆର୍ତ୍ତନାଦ 'ମାଆଲେ ମରିଗଲି' ଯାଉଁକୁ କରୁଣ ଚିତ୍କାର 'ବାପାଲେ ମରିଗଲି ଓଃ ଓଃ' ଶୁଭିଲା । ଖୁଣ୍ଟୀ ଧରିପଡ଼ିଲେ ଭିଟେକ୍ଟିଭ ଯିମିତି ଉଲ୍ଲସିତ ହୋଇ ଅଟ୍ଟହାସ୍ୟ କରିବାକୁ ମୁହଁ ଖୋଲିଦିଏ ମୁଁ ସିମିତି "ଚାଲିର ଫୁଲ ଚୋର ଧରାପଡ଼ିଛି" ଭାବି ଦ୍ରୁତ ବେଗରେ ଫେରୁଛି । ମନକୁ ପାପ ଛୁଇଁଲା । 'ନାଉ' ପତ୍ରାରେ ପଡ଼ିନାହିଁ ତ ।" ଶିଶୁର ଆର୍ତ୍ତନାଦର ପ୍ରତିଧ୍ୱନି ଯୁଗପତ୍ ଶୁଣାଗଲା । ଅକାଶ ମେଦିନୀ ଯେ ଆର୍ତ୍ତନାଦର ପ୍ରତିଧ୍ୱନି ଦେଲେ । କମ୍ପି ଉଠିଲେ ବସୁନ୍ଧରା ଜନନୀ । ଗାଈ, ଛେଳି, ପୁଷ୍ପଣ୍ଡ, ସମସ୍ତେ ସ୍ତମ୍ଭୀତ ହୋଇ ଆକାଶକୁ ଚାହିଁ ସ୍ତମ୍ଭୀଭୂତ ହେଲେ । ବାରମ୍ବାର ସେଇ ଏକ ସ୍ୱର "ମାଆଲେ ମରିଗଲି, ବାପାଲେ

ମଗଲା ।" ବାଟରେ ଯାଉଥିବା ଲୋକେ ସେ ଆଡ଼କୁ ଧାଇଁଲେ । ମୁଁ କଦମ୍ ଜୋରେ ବଢ଼ାଇଲି, ଗ୍ରୁଡ ଉପ୍‌ଡ଼ପ୍ କରୁଥାଏ । କୁକୁରର ଅନୁରୂପ ଆର୍ତ୍ତନାଦ ଉପରତାଲାରୁ ଆସୁଥାଏ ।

ଦେଖଣାହାରୀଙ୍କୁ ଠେଲପେଲ ଦେଇ ପୁହିଁଲି । ଗୋଟା ଡକଡକ ପିଲାଟାଏ ! ଫୁଲଗ୍ରେର । ମୋର ନାତି ସିଦ୍ଧାର୍ଥ । ମୋତେ ଦେଖିଦେଲା ମାତ୍ରେ ସେ ଅଦ୍ଭୁତ ଜୋର୍ ଚିତ୍କାର କଲା । ଛଟପଟ ହେଲା, ଏଇମାତ୍ର ଜନ୍ମ ହୋଇଥିବା ଛେଳିପରି । ପାଦରେ ହାତରେ ଆଣ୍ଠୁରେ ଖଣ୍ଡେ ଖଣ୍ଡେ ନାଗଫେଣୀ ଲଟି ରହିଛି; କଣ୍ଟାବିଦ୍ଧ କଏ ଦୁର୍ମତି କରିଛି ତାକୁ । ନାଗଫେଣୀର ବିଷ ଯନ୍ତ୍ରଣାରେ ଜର୍ଜରିତ ଶିଶୁଟି ଫିକା ଓ ମ୍ରିୟମାଣ ହୋଇଯାଇଛି । କଣ୍ଟାସବୁ କାଢ଼ିଦେଲା ମାତ୍ରେ ପିଚ୍ ପିଚ୍ ରକ୍ତର ଧାର ବନ୍ଧ ଭୂଇଁକୁ ରଞ୍ଜିତ କରୁଛି । ମନ୍ଦାର ଫୁଲ କ ମଣିଷ ରକ୍ତ ବାଟ ହେଉନାହିଁ ।

କାର୍‌ରେ ଯାଉଥିବା କେହି ଜଣେ ଉଦ୍ଧାରକର୍ତ୍ତା ହେଉଥିବେଲେ ଅସିଗଲେ ଏବଂ ସିଦ୍ଧାର୍ଥକୁ ବସାଇ ଡାକ୍ତରଖାନା ନେଇଗଲେ । ମୁଁ ଅପ୍ରସ୍ତୁତ ଥିଲି । କହିଗଲେ; "ଆପଣ ଆସନ୍ତୁ ଡାକ୍ତରଖାନାକୁ ।"

ଉପରକୁ ଗଲି । ଘରେ ଭୌତିକକାଣ୍ଡ । ମଣିଷର ପ୍ରତିହିଂସା ଅପେକ୍ଷା କୁକୁରର କୁକୁରର ପ୍ରତିଶୋଧ ବର୍ଣ୍ଣନାତୀତ । ଘର ଫିଟାଇ ଦେଖିଲି ଶେଯପଟା, ବହିପତ୍ର, ରେଡ଼ିଓ, ଫିଲଟର, କାଗଜ କଲମ, ଏପରିକି କାନ୍ଥର ଫଟୋସବୁ ଷଣ୍ଢରୁଜ ଏକାକାର । ଲାଲକାଳି ବୋତଲର କାଳିରେ ଚଟାଣ ଲାଲ୍‌ଲାଲ୍ । ପ୍ରତିକାରରେ ପ୍ରତିଶୋଧ ନଥ ନାହିଁ । ଯେଉଁମାନଙ୍କ ପାଇଁ ପ୍ରତିଦିନ ମୁଁ ମନ୍ଦାରଫୁଲ ସଂଗ୍ରହ କରୁଥିଲି ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହୋଇ ସେମାନେ ସମସ୍ତେ ଖଟୁଲିରୁ ତଳକୁ ଗଡ଼ୁଛନ୍ତି । ଫଟୋର ଭଙ୍ଗାକାଚ ସେମାନଙ୍କ ଆଖି ମୁହଁରେ ପଶି ଦେବଙ୍କୁ ଦାନବର ଚେହେରା ଦେଇଛି ।

ଡାକ୍ତରଖାନାକୁ ଯିବା ଆଗରୁ ହେଲିକନ୍‌ରୁ ଦେଖିଦେଲି ଜାଲଯନ୍ତ୍ରା ପାଉଥିବା ଦେବାଟିକୁ । ଅସ୍ତ୍ରିକା ମନ୍ଦିର ସମ୍ମୁଖରେ ରକ୍ତରଞ୍ଜିତ ମନ୍ଦାରମାଳା ଖଚିତ ଯୂପଦେବୀ ପରି ଦିଶୁଛି ।

କାଳିର ଫୁଲଗ୍ରେର କଏ ?



# ତାକୁ କାହିଁକି ?

କାଲିକା କଥା । ଘଟଣା ସାମାନ୍ୟ । କିନ୍ତୁ ସାମାନ୍ୟ ବିସ୍ତାର ଯେ ଏତେ ଜୋର ପ୍ରତିକ୍ରିୟା ହୋଇପାରେ ତା ବିଶ୍ୱାସ କରିପାରୁ ନ । ଯିମିତି, ବିଶ୍ୱାସ କର ହୁଏ ନ ଟିକେ ତାତି ବଢ଼ିଗଲେ କଳା ଲୁହାଟା ଲାଲ ହୋଇଯାଏ କିମିତି ।

ଯଦି କଥାଟା କହି ନ ଦଏଁ, ତେବେ ଅସ୍ୱସ୍ତି ବଢ଼ିବଢ଼ି ଚାଲିଥିବ । ମୁଣ୍ଡ ଭିତରଟା, ଗ୍ରୀବ କଣଟା ଏମିତି ମନ୍ଥି ଚକଟି ହେଉଛି ଯିମିତି ଦନ୍ତାଯାକ ଏକ ପରେ ଏକ ବା ଏକା ସାଙ୍ଗରେ ଫାଟିଯିବେ । ହାର୍ଟ ଫେଲ୍ୟୁର ହୋଇଯିବ । ପ୍ରେସର ରିଲିଜ କରିବାର ସାହିତ୍ୟିକ ପକ୍ଷରେ ଯେଉଁ ଗୋଟିକ ଉପାୟ କହିଦେବା ବା ଲେଖି ପକାଇବା – ସେଇଟି ଅବଲମ୍ବନ କରିବାକୁ ବାଧ୍ୟ ହେଉଛି ।

କାଲି ସକାଳର କଥା । ମଲମାସଟାଏ ପଡ଼ି ପୂଜାଗୁଡ଼ିକ ଦୂରେଇ ଯାଇଛି ଯିମିତି, ବର୍ଷାଦିନ ବି ସିମିତି ଲମ୍ବିଲମ୍ବି ଚାଲିଛି । ମହାଳୟ ସରିଗଲାଣି ଅଥଚ ଦୁର୍ଗାପୂଜା ଦଶହରା ପରିବେଶ, ବାୟୁମଣ୍ଡଳ ସୃଷ୍ଟି ହୋଇନ । କାଶତଣ୍ଡୀ ଫୁଲ ବିଲଙ୍କ ପଠାରେ ଫୁଟିଛି ଅଥଚ ମଣ୍ଡପରେ ଦୁର୍ଗାମେଢ଼ର ଦେଖା ନାହିଁ । ରୁହାକୁ ରୁହା ମେଘ ବର୍ଷାରେ ଲୁଗାପଟା ବି ଶୁଖିବାକୁ ନାହିଁ ଚବିଶ ଘଣ୍ଟାରେ ।

କାଲି ସକାଳୁ କିନ୍ତୁ ଆକସ୍ମିକ ପାଗଟା ରେତଡାଲିଆ ହୋଇଥିଲା । ଅଭ୍ୟାସବଶତଃ, ନିତ୍ୟନୈମିତ୍ତିକତାରେ ମୁଁ ଦାନ୍ତପଜ ଘଷିସାରି ପୂର୍ବପଟ ବାରଣ୍ଡାରେ ବସି ସୂର୍ଯ୍ୟୋଦୟ ଉପଭୋଗ କରେଁ । କାଲି ସହଳ ନିଦ ଭାଙ୍ଗିଗଲା । ଚେୟାରରେ ବସିଛି ଏବଂ ଦେବାବରଣ ହେବା ଭଳି ପ୍ରାତଃଶୋଭାର ଏକ ଅଙ୍ଗରୂପେ ନିଜକୁ ଭାବ

ମଧୁବାବୁଙ୍କ ପିଲାଦିନର ପାଠ ଆବୃତ୍ତି କରୁଛୁ, ଗୁଣୁଗୁଣୁ ହୋଇ 'ପୂର୍ବଦିଗ ଦେଖ ଏବେ ଟଳଇ, ଉଷାଇଯାଉଛି ତାରାଟି ଚହିଁ ; ପୂର୍ବେ ଧରା ଯହିଁ ଆକାଶେ ମିଶେ, ସିନ୍ଦୂର ବୋଳିଲା ପରାଏ ଦିଶେ ; ···ସଜଫୁଲ ପରି ବାଳକେ ହେବ, ସକଳ ମନରେ ଆନନ୍ଦ ଦେବ ।''

କବତା ଉଭେଇ ଯାଉଛି କ ନାହିଁ କୁକୁର ଭ୍ଲାକ ମୋତେ ଟଣାଟଣି କଲା, ଲୁଙ୍ଗି ର କାନଟାକୁ ଟେଣ । ସେ ପ୍ରତିଦିନ ମୋ ସହିତ କଲେମିଟରଟିଏ ବୁଲିବାକୁ ଯାଏ ସାମନା ଓଭରବ୍ରିଜ୍ / ଫ୍ଲାଇ ଓଭର ଦେଇ । ତାର ବ ତ ନିତ୍ୟକର୍ମ ଅଛି ! ପ୍ରେସର ଅଛି ମଣିଷ ପରି ।

ଘୋଡାଙ୍କ ପରେ ଘୋଡାଏ ଲେ-ପେହର ପରେ ଆଜି ହୁଏ ତ ଝଡ ଆସିବ ଭାବି ମନଟା ଉତ୍ଫୁଲ୍ଲ ଥାଏ । ଯଥା ସମୟରେ ପୂର୍ବଦିଗର ଠିକ୍ ମଝାମଝି ସ୍ଥାନରେ ବାହାର ଗ୍ୟରଦିନ ପରେ ସୂର୍ଯ୍ୟଦେବ ଧରଣୀରାଣୀର ମୁହଁକୁ ଗ୍ୟହିଁଲେ । ସକାଳ ବସ୍ ସବୁ ଭଦ୍ରକ, କଟକ, ରାଜଧାନୀ, ବାରିପଦା ଗ୍ରୁପ ନେଇ ଦଣ୍ଡେ ଦଣ୍ଡେ ବ୍ୟବଧାନରେ ଗଡ଼ିଗ୍ୟଲିଲେ ଅଦୂର ବସ୍‌ଷ୍ଟେଣ୍ଡ ଅଡ଼କୁ ।

ମାଆ ସୂଅରଟିଏ ଅଟ୍ଟା ଛଅଦିନର ଛୁଆ ନେଇ ସଡ଼କ ପାର ହେଲା । ଆଠ ଦଶଟା ବୁଲା କୁତାକୁତୀ ଅଶିଣିଆ ଖେଳ ଖେଳ ଖେଳ ସାମନା ଓସାରିଆ ପିଚୁରାସ୍ତାରେ ବୁଲିଲେ । ରାସ୍ତା ଆରପାଖର କାଠବାଲାର ଗୃହଟା ଛେଳି ଅଠ୍ଟା କଳା କଳା ତେଉଁଥିବା ଛୁଆଙ୍କୁ ହଠାତ୍ କ୍ଷୀରଦେବା ପାଇଁ ଏକାବେଳକେ ଧୀରସ୍ଥିର ହୋଇ ଠିଆ ହେଲେ । ଲଡ଼ୁଆ ଗଣ୍ଡାକୁ ଲୁଗାକାନିରେ ଢାଙ୍କି ଶାମ ବ ରେମୁଣା ହାଟ ଆଡ଼କୁ ଟୃପ୍‌ଟ୍ୟପ୍ ଗ୍ୟଲିଲା । ବାଲେଶ୍ୱର ସହରତଳିର ସକାଳ ଆରମ୍ଭ ହେଲା, ବାଘା ଯତୀନ୍ ଏକ୍‌ସପ୍ରେସ ଗାଡ଼ିର ଲମ୍ବା କୁହୁଉଉଉ ଧ୍ୱନିରେ ।

ଗ୍ୟ' କାପ୍‌ରୁ ଶେଷ ଚୁମୁକ ଦେଉଁ ଦେଉଁ ଦେଖିଲି ଫ୍ଲାଇଓଭର ଗଡ଼ାଣିଆ ରାସ୍ତାଟା ଯେଉଁଠି ମୋଡ଼ ଦେଇ ବଙ୍କେଇ ହୋଇ ନୂଆ ବସ୍‌ଷ୍ଟେଣ୍ଡ ମୁହାଁ ହୋଇଛି, ତାର ଅପରପାର୍ଶ୍ୱରୁ, ଫୁଟ୍‌ପାଥ୍ ପଟୁ, ସଡ଼କ ଉପରେ ଫିକ୍‌କା ଲାଲରଙ୍ଗର ଶବନବନ୍ଧା ଗ୍ରେଟ ଜଟଟିଏ । କମେ ପୁରାମୁଣ୍ଡଟି ଦିଶିଲା, ପସ୍ତାଶ ଗ୍ରେଟପୁଅର ମୁଣ୍ଡ

ହୋଇପାରେ । ନା, ନା । ହାତେ ଗ୍ଭୁଖଣ୍ଡେ ଜନ୍ ହିଁଥିବ । ଏକା କବ୍ଜାରେ ଦଫାଣି ଅଫକମ କଲ । ପିନ୍ଧିଛି ଛୁଞ୍ଚା, ମଇଁଆ ଛୁଟ ଫ୍ରକ । ପଛପଟେ ବୋତାମ ନାହିଁ । ଦଳଗୋଡ଼ଯାଏ ଲମ୍ବିଛି । ତା' ବଡ଼ଭଉଣୀର ପରିତ୍ୟକ୍ତ ପୋଷାକଟି ଅଥବା ତା' ମାଆର ପୁରୁଣା ଓଢ଼ଣୀ ବ୍ଲାଉଜର ନୂତନ ରୂପଟି ହୁଏ ତ । ତା' ଦେହକୁ ଖୁବ୍ ଢିଲା ହୋଇଛି ଏବଂ ତାକୁ ଅଡ଼ୁଆ ଲାଗୁଛି । ପେଣ୍ଟ ପିନ୍ଧିଛି କି ନାହିଁ ଜାଣି ହେଉ ନ । ହାତରେ ଦେଢ଼ବ୍ୟୁଖଣ୍ଡେ ଲମ୍ବ ଗ୍ରଞ୍ଚୁଣି/ଖରକାର ମୁଣ୍ଡି । ନାଗ୍ରିକଜୀବନର ସର୍ବପ୍ରଥମ ସର୍ବପ୍ରଧାନ କର୍ମ କଏ ବୋଧହୁଏ ବରାଦ କରି ତାକୁ ଶିଖାଦେବା ପ୍ରଚେଷ୍ଟାରେ ଅଛି । ହିଁଅଟି ବ ଖୁବ୍ ଦମ୍ଭ ଓ ଆସ୍ଥା ସହିତ ଚେଲେଞ୍ଜ ଗ୍ରହଣ କରିଛି ଯେପରି !

ଅଦୌ ଫିଟ୍ କରୁ ନ ଥିବା ଫ୍ରକ୍‌କୁ ସମ୍ଭାଳି ସେ ପିଚ୍‌ରାସ୍ତାର ଦାହପାଖର ଫଣ୍ଡେ ଜାଗାକୁ ଝରକବାକୁ ଲାଗିଲା । କେତେବେଳେ ଦରଠିଆ ହୋଇ, ଆଉ କେତେବେଳେ ବସିପଡ଼ି । କୁଆଡ଼କୁ ନଜର ନାହିଁ, ଗୋଟାଏ ଅଧେ ଟ୍ରକ୍ ପର୍ବତ-ପ୍ରମାଣ ବୋଝ ନେଇ, ପୁଣି ଗୋଟାଏ ଅଧେ ବଡ଼ ବଡ଼ ନାଲି ବସ୍‌ଗୁଡ଼ିଏ କଟକ-ଭୁବନେଶ୍ୱର ପାହେନ୍ତର ଧରି ବଙ୍କେଇ ହୋଇ ପାଖକୁ ଦଉଡ଼ି ଯାଉଛନ୍ତି ; ତାଙ୍କ ତଳେ ପେଷି ହୋଇଯିବାର ଭୟ ତାର ନାହିଁ । ସେ ଲାଗିଛି ଝରକାଝରକ କରୁଥିବା ସ୍ଥାନକୁ ଏକଦମ ସଫା କରିବା ପାଇଁ । ଯିମିତି ମୁହଁ ଦଣିବ ବା ଯିମିତି ଦଣ୍ଡେ ପରେ ସେଇଠି ଝଲପଟ ପଡ଼ି ଭୋଜନର ବ୍ୟବସ୍ଥା ହେବ । ଏ ସମାର୍ଜନୀ କର୍ମର ପ୍ରମ୍ଭାବ୍ୟ କାରଣ କ'ଣ ହୋଇପାରେ ଭାବି ସ୍ଥିରକଲି ବୋଧହୁଏ ତା ମାଆ ବା ଅଉ କେହି ମୁରବୀ ସ୍ଥାନୀୟ ବ୍ୟକ୍ତି ସେ ସ୍ଥାନରେ କେଷୁ ମାନଅଁ ଶୁଖେଇବ, ଯିମିତି ଛତଅ କଲେଜ-ପାଖ ରାସ୍ତାରେ ମାଇକିଏ ଧରି ସ୍ତ୍ରୀଲୋକଗୁଡ଼ାଏ ଧାନ ମେଲଇ ଶୁଖାଇଥାନ୍ତି । କେଉଁ ବାହାକୁ ଦ'ଗୋଡ଼ ଅଳତା ପରି କେଉଁ କୁଆଁକୁ କେତେ କାମ ବରାଦ ଖଞ୍ଚିଲି । ଦେଖାଯାଉ କେଉଁ ପାଣି କୁଆଡ଼କୁ ଯାଉଛି ? ଆଠଫୁଟରେ ଅଠଫୁଟ ହେବ ଜାଗା ସଫା କରିସାରି ମୁଣ୍ଡି ଗ୍ରଞ୍ଚୁଣି ଧରି ହିଁଅଟି ରାସ୍ତା ତଳକୁ ଓହ୍ଲାଇ ଗଲା । ସନ୍ତୁଷ୍ଟିର ଦୃଷ୍ଟିପାତ କରି ଭଲିକା ଉପରେ ଯିମିତି ସେ ଜାଣେ 'well begun is half done' କଥାଟି । ମୋର କୁତୂହଳ ଜାଗ୍ରତ କରି ପାଞ୍ଚ ମିନିଟ୍ ପାଇଁ ସେ ଅନ୍ତର୍ଦ୍ଧାନ ହେଲା ।

ସେ ପୁଣି ଆସିଲା । ପ୍ରଥମେ ପୂର୍ବପରି କାଲ୍‌ଫିତାବନ୍ଧା କଣ୍ଟ ବଖିଲା । ତା'ପରେ ଛୁଣ୍ଣା ଅଖାପଟ ଏବଂ ତା ଭିତରେ କ'ଣଗୁଡ଼ାଏ । କେତେବେଳେ ଅଣ୍ଟାରେ, କେତେବେଳେ ପେଟରେ, କେତେବେଳେ ଅଧାପିଠି ଅଧା ଗ୍ରିଦରେ ସୁବିଧା ମୁତାବକ ସ୍ଥାନରେ ରଖି, ଅସ୍ପୃଷ୍ଟ କରି ହେବନ୍ତ ନ ଥିବା ବୋଝଟିକୁ ଆଣି ପୂର୍ବରୁ ଫମ୍ପା କରିଯାଇଥିବା ଜାଗାର ମଝାମଝି ଜାଗାରେ ରଖିଲା । ଅପେ ଅପେ ଅଖାପଟର ଗଣ୍ଠି ବା ବନ୍ଧନ ଫିଟିଗଲା, ଗୋଡ଼ାଏ ଧନଟା ତାବର କଣ୍ଟା ଖୋଲପା, ଗେପା ଭୁଣି ହୋଇଗଲା । ଅଧବେଙ୍ଗି ହେଲେ କଲେ ଓଜନର ସାମଗ୍ରୀ । ଛୁଣ୍ଣା ଅଖାକୁ ମୋଡ଼ମାଡ଼ି ଧରି ପୁଣି ସୁଆଡ଼ୁ ଅସିଥିଲା ସେ ଅଡ଼କୁ ଚାଲିଗଲା । କବ୍ରାଠ ଗଦ୍ୟମୟ କାମଟାରେ ଅଉ କୁତୁହଳୀ ନ ହୋଇ ମୁଁ ଘର ଭିତରକୁ ଚାଲିଆସିଲି । କିନ୍ତୁ ସିମିତ କିଛୁ କାମ ନ ଥିବାରୁ ବା ଲେଖାଲେଖି ପାଇଁ ମୁଡ୍ ନ ଥିବାରୁ କଣ୍ଟୋଏ ଖାଇଦେଇ ବା ପିଇଦେଇ ବା ଟାଣିଦେଇ ମଝିରେ ମଝିରେ ଘର ଭିତର ବାହାର ହେଉଥାଏଁ । ପୁଣିଥରେ ଆଖି ପଡ଼ିଗଲା ଦେଇ କୁନିନ୍ଥିଅ ଆଉ ତାର କାରବାର ଉପରେ । ଅଧ-କମ୍‌ରେ ବଣଟା ତାବର କଞ୍ଚା ଛୁନ୍ନାଂଶ କୁଢ଼ ହେଲାଣି । ଯଦ୍ଧ ସେ ବସିପଡ଼ନ୍ତା ତେବେ ଅର୍ଦ୍ଧନା ଗଦା ଓ ତାର ଉଚ୍ଚତା ସମାନ ହୁଅନ୍ତା । କିନ୍ତୁ ତାର ବ୍ୟସ୍ତତାର ଅନ୍ତ ନାହିଁ, ନାକ ପୋଛିବାର ତର ନାହିଁ, ବସିପାରୁଛି କେଉଁଠି !

ଏଥର ବୋଧହୁଏ ଶେଷଥର । କାରଣ ଗଣ୍ଠିଲିରେ କେବଳ ଗ୍ଲେଟ ଗ୍ଲେଟ, ପତଳା ଟ୍ରଙ୍କୁଲ୍ ସବୁ ଆସିଛି । କୁଢ଼ରେ ତାକୁ ବି ଅଜାଡ଼ି ମିଶାଇଦେଲା । ବୋଗିଟା ସଡ଼କର ନୁଆଁଣିଆ କଡ଼କୁ ରଖିଲା, ଗ୍ଲେଟ ପାଖୁଲି ଦ'ଟାକୁ ଝାଡ଼ିଝୁଡ଼ି ଧୂଳିବାଲି ଫମ୍ପା କରିଦେଲା ଏବଂ ବସିପଡ଼ି ପରବର୍ତ୍ତୀ ପର୍ଯ୍ୟାୟର କାମ ଆରମ୍ଭ କରିଦେଲା । ଗୋଟି ଗୋଟି କରି ଖୋଲପା, ଗେପା ସବୁକୁ (ସେ ଅଦୌ ତରବର ନୁହେଁ କାମରେ) ଭୁଣିଲା, ଖେଳାଇଲା, ମେଲାଇଲା; ଯିମିତ ସେଗୁଡ଼ା କଅଁଳ ଅମୂଲ୍ୟ ଦରବ, କଡ଼ା ବ୍ୟବହାର ତାଙ୍କ ପ୍ରତି ସମୀଚୀନ ନୁହେଁ । ହୁଏ ତ ସେଗୁଡ଼ା ଖାଇବା ଟଙ୍କ ବା ପରିଶ୍ରମଲବ୍ଧ ନୋଟ ବା ଖୁଚୁରା ପଇସା; ଖୁବ୍ ସତର୍କତା ଦରକାର । ଭୁଷ୍ଟାଚାରରେ ଝଣ୍ଡେ ଜାଗାରେ ମେଲାଇ ଦେଇ ଆତ୍ମପ୍ରସାଦରେ ନେପୋଲିଅନ ପରି ଅଣ୍ଟାରେ ହାତଦେଇ ସୈନ୍ୟ ତଦାରଖ କଲା ଏବଂ ଶେଷଥର ପାଇଁ ଦେଖି "ଠିକ୍

ଅଛି" ଏଇ ଦୃଷ୍ଟି ନେଇ ଛୁଣ୍ଡା ବୋଷ୍ଟ ଧର ବୋଧହୁଏ ଭୁକା, ପଂଗାଳ ତୋରଣି ବା ଖାଲି ପାଣି ପାଇଁ ଘରଆଡ଼େ ଗ୍ଭଲଗଲା ।

ସୂର୍ଯ୍ୟ ଉଠି ଉଠି ଗ୍ଭଲଛନ୍ତି । ଅରେ ଅଧେ ମୁଁ ବାହାର ଦେଖିଲି ଯେ "no man's land" ବା "no man's sea"କୁ ଓଲନ୍ଦେଜମାନେ ଦଖଲ କରଗଲା ପର ପ୍ରତଯୋଗୀମାନେ ତତ୍ପର ସେଇ କାମ ପାଇଁ ଦଖଲ କରବାରେ ଲଗିଛନ୍ତି । ପନ୍ଦର-କୋଡ଼ଏ ମିନଟରେ ଶଗଡ଼ ପ୍ରମାଣ ଗ୍ଭେପା ଖଣ୍ଡେ ଖଣ୍ଡେ ଦ୍ୱୀପ ପର ଭୂମିକମ୍ପରେ ଅକସ୍ମାତ ବାହାର ପଡ଼ୁଛନ୍ତି । ଅନ୍ୟମାନେ ଯଦ ହେଲେ ବସ୍ତୀର୍ଣ୍ଣ ସାମ୍ରାଜ୍ୟର ଏକଦା ଅଧିକାରୀ ଇଂରେଜଙ୍କ ପର ଆମ କୁନ ଟିଅର ପ୍ରାପ୍ତି ହେଲା ଗୋଆ, ଦାମନ-ଡିୟୁ । ପ୍ରଥମ ପ୍ରବେଶକାରୀ ହୋଇ ମଧ୍ୟ ବେଶୀ ଆସ୍ଥାନ ପର୍ତ୍ତୁଗାଲ ପାଇଲା ନାହିଁ । ଗ୍ରେଟିଆ ଦେଖଁତି ତ !

ମୁଁ ହିକଏ ସମାଜବାଦୀ ଦାର୍ଶନିକ ହୋଇ ଉଠିଲି । ଦୂର ପାହାଡ଼ ଆଡ଼କୁ ଗ୍ଭହିଁଲି । ବର୍ଷାଦିନ ପାଇଁ ସବୁଜ ଘଞ୍ଚୁଚୁ ପିନା, ଖରାବେଳକୁ ଖାଲି ପଥର, କଳାକଳା ପଥର । ଗଛବୃରୁଛର ସତ୍ତା ନାହିଁ । ଅଳ କାଟିକାଠର ଅଶ୍ୱାନ ସାଙ୍ଗକୁ ପାର୍ବନ ଧର ବର୍ଷା କେତେ ଅସ୍ୱସୀ ଲୋକଙ୍କ ଭୋଜ ଓପାସରେ ରଖିଦେଇ ନ ଥିବ ! ଖରା ହେବ, ପଇଡ଼ ଗ୍ଭେପା ଖୋଲପା ଶୁଖିବ, ଚୂଲ୍ଲିକୁ ହାଣ୍ଡି ଯିବ ! ଛୁଆ ଏତେକଥା ବୁଝେ ନା । ତାକୁ କାମ ଦଆ ହୋଇଛି; ସେ କାମ କରୁଛି । କନ୍ତୁ ସେ କ ଜାଣିଛି ଯେ ଅନ୍ୟମାନେ ବ ତାଙ୍କ କାମରେ ବ୍ୟସ୍ତ ଅଛନ୍ତି !

ବାସିପ୍ରାମ ବା ବ୍ରେକ୍‌ଫାଷ୍ଟ ସାର ସେ ଫେରଲା । ଗାଧୋଇଛି ମଧ୍ୟ । ପୋଷାକ ବଦଳ କରଛି । ଛୁଣ୍ଡା ବେଧାଇକ୍ ଫ୍ରକ୍ ବଦଳରେ ପିନ୍ଧିଛି ପେଣ୍ଟି । ମା'ର ଶାଢ଼ୀର କନାଟକୁରିକ୍ ଗଣ୍ଠି ଦେଇ କଏ ପେଣ୍ଟି ବନେଇ ଦେଇଛୁ । ପେଟଟି ବୁକୂଳା ଦଶୁଛି, ପେଟେ ତୋରଣି ପିଇଛି ପର ଲାଗୁଛି ।

ସେ ଅସି ଦେଖେ ତ ଦୁନଆଁ ଛଣକେ ବଦଳି ହୋଇ ଯାଇଛି, ମସ୍ଥାଥାନ ହୋଇଯାଇଛି । ଅଉ କେତେ କେତେ ବଡ଼ ବଡ ସଉଦାଗର ତାଙ୍କ ବିରାଟ ସାମ୍ରାଜ୍ୟ

ସ୍ଥାପନ କରିଛନ୍ତି ତାର କ୍ଷୁଦ୍ର ଦ୍ୱୀପ ପରି ଉପନିବେଶଟି ପାଖରେ । ସେମାନଙ୍କ ରାଜ୍ୟରେ ସୁଖ, ଦୁଃଖ, ସମୃଦ୍ଧିର ଲକ୍ଷଣ ରହିଛି । ସେମାନଙ୍କ ଜାଲେଣି କଲାରଙ୍ଗ ଧରିଲାଣି, ହାଲୁକା ମୋଡ଼ାମୋଡ଼ା ଦିଶୁଛି, ଦିନେ ଅଧେ ଖରା ପାଇଲେ ହୁଏତ ତୃପ୍ତିଯୋଗ୍ୟ ହୋଇପାରେ । କିନ୍ତୁ ବୈପରୀତ୍ୟରେ ତାର ଗ୍ରୈପା ସବୁ ଅଦ୍ୟୋଁକଟା, ଧଲାଧଲା, ଓଜନଦାର, ପାଣି ଝରିଲା ପରି ଦିଶୁଛି । ସେ ଈର୍ଷାରେ ବଶବର୍ତ୍ତୀ ନ ହୋଇ ପୁଣି ଦମ୍ ସଂଗ୍ରହ କରି ଲାଗିଗଲା ତା କାମରେ ।

ଗୋଟିକ ଗୋଟି ଗ୍ରେପା ଓଲଟପାଲଟ କଲା । ଫଳରେ ଶାଗୁଆ ଢଲା ହେଉଥାଏ । ସବୁ ଅଲଗା ଅଲଗା; କାହା ଉପରେ କେହି ନାହିଁ । କିଛି ସମୟ ପରେ କଲା ପିଚୁରାସ୍ତାରେ ଧଲା ଗୋଲେଇର ଆବିର୍ଭାବ ହେଲା । ସେ ଯେତେବେଳେ ରାସ୍ତାଆଡ଼କୁ ପଛକରି କାମ କରୁଥାଏ, ସାଏଁ ସାଏଁ ଘଡ଼ଘଡ଼ ହୋଇ ଗାଡ଼ିଙ୍କ ବାସ୍ ଗୋଟାକୁ ଗୋଟା ଯା'ଆସ କରୁଥାନ୍ତି । ତାକୁ କିଏ ମନାଇବ ? ତାକୁ କିଏ ମନାଇବ ? ତାକୁ କେହି ମାରିବେ ନାହିଁ, ମାଡ଼ିଦଳି ଚାଲିଯିବେ ନାହିଁ । ଏତିକ ଗ୍ରେଟଛୁଆ, ପାଞ୍ଚବର୍ଷ ହୁଏ ନ ହୁଏ । ସିଏ କମିତି ଅବା ବୁଝିବ, ଏବର ଦୁନିଆରେ ଧର୍ଷଣ ଏଠାର କି ଗଣଧର୍ଷଣ ପାଇଁ ଝିଅ କଣ ପଶୁ ମଧ୍ୟ ଉପଯୁକ୍ତ ?

ସାମାନ୍ୟ ଓଲଟପାଲଟ କାମ ମଧ୍ୟ ସେ ଟିକିଝିଅ ପକ୍ଷରେ ଖୁବ୍ ଭାରି । ରାସ୍ତାକଡ଼ରେ ଜମା ହୋଇଥିବା ଚିମାପଥରରୁ ଗୋଟିକ ଉପରେ ସେ ଯାଇ ବସିଲା ଏବଂ ଆକାଶଆଡ଼କୁ ଚାହିଁଲା, ବଳବଢ଼ାଇବାର ଗତିଶୀଳ କଳିବା ପାଇଁ । ସେ ଯଦି ମହାଭାରତ ଯୁଗର ବଗ ହୋଇଥାନ୍ତା ବା ଇଜିପ୍ଟର ପ୍ରହେଳିକାମୟୀ ଷ୍ଫିଙ୍କସ ହୋଇଥାନ୍ତା ତେବେ ଆଧୁନିକ ଯୁଗର ଯୁଧିଷ୍ଠିର ଓ ଓଡ଼ିପସ୍‌ମାନଙ୍କୁ ପଚାରିଥାନ୍ତା— "ମୁଁ ଝିଅହୋଇ ଜନ୍ମିଲି କାହିଁକ ?" "ଅନ୍ୟମାନେ ଖେଳାଖେଳି କରିବେ, ମୁଁ ଗ୍ରେପା ଶୁଖାଇବି କାହିଁକ ?" "ଯଦି ଖରା ନ ହେଲା, ଗ୍ରେପା ନ ଶୁଖିଲା, ତେବେ ମୋତେ ଖାଇବାକୁ ଦେବେ ନାହିଁ କାହିଁକ ?"

ସେ ଝିଅର ପ୍ରଥମ ଧର୍ଷଣକାରୀ ସୂର୍ଯ୍ୟ । ଧୂର୍ତ୍ତ ତୃଳକର ରୂପ ! ଆଠୋଟି ହସ୍ତାକଥା ଛୁଆଧର ମାଥା ପୃଷ୍ଠର ସିଁ ସିଁ ସଡ଼୍ ସଡ଼୍ ହୋଇ ସଡ଼କ ପାର ହେଉଥିଲେ ।

ନଡ଼ିଆ ବା ପଇଡ଼ ଗ୍ରେପା ତାଙ୍କ ଖାଦ୍ୟ ନୁହେଁ, ତଥାପି ଅଭ୍ୟାସବଶତଃ ଭୁଲ୍‌ରେ ବଡ଼ାଣବା ପର ପଇଡ଼ ଗ୍ରେପାକୁ ସବୁ ବିପର୍ଯ୍ୟସ୍ତ କରଦେଲେ ସମସ୍ତେ ମିଳିମିଶି । ହିଁଅଟି ତା' ଟିକ୍ନ ହାତ ହଲାଇ ଯାଃ ଯାଃ ହାତ୍ ହାତ୍ ଚେତେ କଲେ ସେମାନେ କାହିଁକି ଶୁଣନ୍ତେ ଅବା ! ବରଂ ଆକ୍ରମଣାତ୍ମକ ମନୋଭାବ ଦେଖାଇ ମୁହଁ ବକ୍ରିତ କର ତା' ଆଡ଼କୁ ମାଡ଼ିଗଲେ । ଆତ୍ମରକ୍ଷା ପାଇଁ ହିଁଅଟି ପଳାଇ ଯାଇଁ ଯାଇଁ ଗଡ଼ି ଗଡ଼ି ସଡ଼କ ତଳେ ପଡ଼ିଗଲା ।

ଜୀବନର ପ୍ରଥମ ସ୍ଖଳନରୁ ବର୍ତ୍ତିଯାଇ ହିଁଅଟି ଝାଡ଼ିଝୁଡ଼ି ହୋଇ ପୁଣି ତା ଦୁନିଆକୁ ଫେରାଡ଼ିନେଲା ।

ପ୍ରଚଣ୍ଡ ଖରା ପଇଡ଼ଗ୍ରେପା, କଡ଼ା ଉପରେ ପଡ଼ିଛୁ, ପିଚୁ ତାତିଯାଉଛୁ । ଗୋଡ଼ ଫୋଟକା ହୋଇଯିବ । ହିଁଅ ଭାବି ଖୁସି, ଶୀଘ୍ର ଶୁଖିଯିବ; ଚଳା ବାଦଲଟାଏ ଆସିଲେ ହିଁଅର ମୁହଁରେ ଗ୍ଲାଇ ଆସିଯାଏ, ବିମର୍ଷ ହୁଏ ସେ ।

ଏଥର କାଠବାଳ୍ପର ହେଲ । ବର୍ଷେ ଦୁ'ବର୍ଷ ତଳେ ବାଠବେପାର ବନ୍ଦକରି ବଜାରୁଣୀଟି କେଉଁଠା ହେଲ ପୋଡ଼ିଥିଲା । ତାଙ୍କ ସଂଖ୍ୟା ବଢ଼ି ବଢ଼ି ଏବେ ବାଇଶ । ସ୍ଲେଟ କୁଡ଼ିଅରେ ଦେଇ ହେଲ ରହନ୍ତି, ମାଲିକାଣୀ ବାହାରେ ଶୁଏ । ଖାଦ୍ୟ ଅଖାଦ୍ୟ ତାଙ୍କର ବାଛବିଚାର ନାହିଁ । ହେଲ ଦୁମ୍ପୁରିକୁ, ଖାଇବାରେ, ଛୁଆ ଜନ୍ମେଇ-ବାରେ, ବଳିଯିବ କଏ ? ବଜାରିଆ ହେଲ, କାଗଜପତ୍ର କାଠିକୁଟା ସବୁ ଚରିଯିବେ । ଫିଟାଇଦେବା ମାତ୍ରେ ପଲଟାଯାକ ବାହାର ଆସିଲେ ଛୁଆପିଲା ସହିତ । ପ୍ରଥମେ ମୁହଁମାରଲେ ଶୁଖିଲା କଳା କଳା ଦିଶୁଥିବା ଗ୍ରେପାରେ । ତା'ପରେ ଆସିଲେ ଲୁନ୍ନିଅର ଗନ୍ଧ୍ୟକୁ । ଶାଗୁଆ ଗ୍ରେପାଗୁଡ଼ା ମଲ ମଲ କର ଗ୍ରେବାଇଗଲେ, ଗିଳି ଗଲେ । ମା'କ୍ଷୀର ପେଟେ ପେଟେ ପିଇ ବଳୁଆ ହୋଇଥିବା ଛୁଆଗୁଡ଼ାକୁ ନାଚକୁଦ ଯଥାପୂର୍ବ ତଥା ପରଂ କରଦେଲେ ଗ୍ରେପାକୁ । ପୁଣି ମୁଖପର ହାତ୍ ହାତ୍ ଯା ଯା କର ହିଁଅ ସେମାନଙ୍କ ଆଡ଼କୁ ମାଡ଼ିଆସିଲା । ସେମାନେ ଡରିବେ କାହିଁକି ? ଥରେ ଏମିତି ଭିରୁଆ ଆକ୍ରମଣ ପ୍ରତିହତ କର ବାଢ଼ିଅ ବୁଢ଼ୀହେଲେଟା ଏତେ ଜୋର ହିଁଅଟାକୁ ମୁଣ୍ଡେଇଦେଲା ଯେ, ସେ ଚିତ୍ତ ହୋଇ ତଳେ ପଡ଼ିଗଲା । ପ୍ରଭୁ ଅନ୍ତର୍ଜନ୍ମ କରଯାଇଥିବା ଲକ୍ଷ୍ୟ ବାଟଟାଏ ତାକୁ କେଉଁ କର ଦେଇଥାନ୍ତା ।

ଟେଳିପଲ ଗୃଳପାଆନ୍ତେ ଝିଅଟା ଦଣ୍ଡେ ଥକା ମେଣ୍ଟାଳିଲ ପୁଣି ପଥରଖଣ୍ଡ ଉପରେ ବସି । ସୂର୍ଯ୍ୟ ସ୍ୱର୍ଣ୍ଣଚୂଡ଼ ପାହାଡ଼ର ଅଗ ଛୁଇଁବାକୁ ଯାଉଥାନ୍ତି । ଝିଅଟା ତା'ର ଯମ୍ପତ୍ତିକୁ ଏଥର ଠୁଳ କରିବାକୁ ଆରମ୍ଭ କଲା । କାରଣ ଗ୍ରୋପାସବୁ ଗ୍ରେର ହୋଇଯାଇପାରେ । ଏଇ ଭୟରେ ସେସବୁକୁ ପୁଣି ଘରକୁ ବୋହିନେବାକୁ ପଡ଼ିବ । କାରଣ ଯେଉଁଠି ସୀମା ସରହଦ ନାହିଁ, ସେଠି ଅନୁପ୍ରବେଶକାରୀ କାହାକୁ କହିବା ?

ଏତିକିବେଳେ ଆଉ ଦଳେ ଦୁର୍ବୃତ୍ତ ମାଡ଼ିଆସିଲେ ତା' ଆଡ଼କୁ । ପାଖ ହୋଟେଲ ବାସଷ୍ଟେଣ୍ଡରେ ଯେତେ ଯେତେ ରୁଗ୍ଣ, କୌନହୀନ, ଲଜ୍ଜାହୀନ କୁତା ଥିଲେ ସମସ୍ତେ ନାଟକୀର୍ତ୍ତନ ଆରମ୍ଭ କରି ଭଉଁକୋ ନାଚ ନାଚ, ପଡ଼ିଗଲେ ଝିଅର ଖୋଳପା ଗ୍ରୋପା ଗାଦ ଉପରେ ଏବଂ ଭଣାଭଣି କରି ସବୁ ଏକାକାର କରିଦେଲେ; ପଛଗୋଡ଼ ଦୁଇଟାକୁ ପଛଆଡ଼କୁ ଛଟାଛଟି କରି । ଝିଅଟି ଦଣ୍ଡେ ତଟସ୍ଥ ହୋଇ ଛିଡ଼ା ରହିଲା । କୁକୁର କୁତାଗୁଡ଼ାକର ଏତିକି ଦୁର୍ଗୁଣ ଯେ, ଯେଉଁଠି କି ଯିବେ ଚିହ୍ନ ରଖିଦେଇ ଯିବେ ପରବର୍ତ୍ତୀ ବଂଶଧରଙ୍କ ପାଇଁ, ସାଙ୍ଗସାଥୀ ପାଇଁ । ଭୂଇଁ ଓଦା, ଖୋଳପା ଓଦା । ସେ ଝିଅର କ'ଣ କେହି ନାହିଁ ? ଷାରୁଆ ଏଁ । କାହିଁ ବନସାସ ତ ସେ ଏକା । ଜଣେ ତ କେତେବେଳେ ଆସି ତାକୁ କିଛି ପଚାରେ ନାହିଁ, 'ଖାଇବୁ ଆ' ବୋଲି ଡାକନାହିଁ । ସେ ଝିଅ ବିପଦ ଆପଦରେ ବି 'ଏ ମାଆ' 'ଏ ବାପା' 'ଏ ଆଈ' 'ଏ ଅଜା' ବୋଲି ଡାକ ନାହିଁ କାହାକୁ । ବୋଧହୁଏ ମାଡ଼, ଗାଳି, ଅନାହାର ଉପାସ ଭୟରେ ଏ ସବୁ ଅକାମ କରିବାକୁ ସେ ବାଧ୍ୟ ହୋଇଛି ? କିନ୍ତୁ କାମରେ ତ ଶ୍ରଦ୍ଧା ଅଛି, ଆଗ୍ରହ ଅଛି । ନିଶ୍ଚିତ କଲି, କିଏ ଜଣେ ତା'ର ଥିବ, ଯେ କି ଉପାର୍ଜନ ପାଇଁ ଗ୍ରୀଷ୍ମକାଳ ବନରେ ବଲ ବାଛିବାକୁ ଯାଇଥିବ ଏବଂ ସନ୍ଧ୍ୟାରେ ଗୃହକୁ ଆଣିଲା-ବେଳକୁ ନିମିତ୍ତ ଏ ଝିଅଟି ଜାଳେଣିର ବ୍ୟବସ୍ଥା କରିଥାଏ ।

ସୂର୍ଯ୍ୟ ମେଘ ଆଢ଼ୁଆଳରେ ଅସ୍ତଗଲେ । ଦେଖିଲି ଅନ୍ୟସବୁ ଅଞ୍ଚଳର ଗ୍ରୋପା କଡା ଉଠିଗଲା । କେବଳ ପଡ଼ିରହିଲା ସ୍ଥାନ । ହଠାତ୍ ଅନ୍ଧାର ଆସିଗଲା ବୋଲି ଡରଭୟରେ ସେସବୁ ଘରକୁ ନେଲା ନାହିଁ । ଗୁଡ଼ ଦେଇ ଗ୍ରଳିଗଲା ।

ପ୍ରଥମଦିନର ଆଉଟିଂର ଅଭିଜ୍ଞତା ଝିଅଟି ପକ୍ଷରେ ଖୁବ୍ ତିକ୍ତ ହୋଇଥିବ ବୋଧହୁଏ । ତଥାପି ସେ ଆଜି ଆସିଛି । ସେଇ ଫିକ୍କା ଧୂଳିଆ ଶରୀର; ସେଇ

ଜଟ । କିନ୍ତୁ କିଛୁ ଲୁଗାପଟା କନାକପଟା ଉଦ୍ଧାରରେ ନାହିଁ । ସମ୍ପୂର୍ଣ୍ଣ ଲଙ୍ଗଳା । ତା' ମାଆ ଯିମିତ ତାକୁ ଜନ୍ମ କରିଥିଲା । ଆଜି କିନ୍ତୁ ତା'ର ସାହସ ବଢ଼ିଯାଇଛି । ପ୍ରଥମ ଦିନର ଅହେତୁକୀ ଆଶଙ୍କା ଓ ଭୟ ନାହିଁ । ଛେଳି, କୁକୁର, ଘୁଷୁରି ଯେତେ ସଂଖ୍ୟାରେ ଆସନ୍ତୁ, ଆଜି ଜୀବନ ବିନିମୟରେ ସେମାନଙ୍କୁ ଘଉଡ଼ାଇ ଦେବ । ଶହୀଦ୍ ହେବ ବରଂ ତା' ଦୁନିଆକୁ ବିପର୍ଯ୍ୟସ୍ତ ଧ୍ୱସ୍ତବିଧ୍ୱସ୍ତ କରିବାକୁ ଦେବ ନି । ରାତି ଜଏ ତାକୁ କ'ଣ କଲା, କହିଲା ?

କାମରେ ଯୋଗ ଏକା ପ୍ରଚେଷ୍ଟା, ଧାରା, ଜମ । ରାତିର ଶୀଶିରରେ ଗ୍ଲେପାସବୁ ବେଶି କଷା ଓଦାଳିଆ ହୋଇଛି । ଆଜି ଅଖାଛିଣ୍ଡା ବଦଳରେ ହାଇଦ୍ରାବାଦ ଅଙ୍ଗୁର ଆସୁଥିବା ବଙ୍କାଟଙ୍କା ପୁରୁଣା ବାଉଁଶ ପାଚିଆର ଝୁଡ଼ିଟିଏ ଆଣିଛି । ହେଲେ ଅଙ୍ଗୁରବୋଝ ବହିଯାଉଥିବା ଝୁଡ଼ି କ'ଣ କଷାପଇଡ଼ ଖୋଳପା ବୋହିପାରିବ ? ଭ୍ରମରର ଘର ସହିଲା ବୋଲି ଚଢ଼େଇର ଘର ଫୁଲଟିଏ ସହିବ କିମିତି ? ହେଲେ କାମ ଚଳେଲେ ହେଲା ।

ଗ୍ଲେପାସବୁ ପୁଣି ମେଲାଇ ଓଲଟାଇ ନୂଆ ଗ୍ଲେପାକୁ ଅଲଗା ଯାଗାରେ ରଖିଲା । ବୋଧହୁଏ ଘରୁ ଆସିଲାବେଳେ ଆତ୍ମରକ୍ଷା ପାଇଁ ଗ୍ରେଟ ବାଡ଼ିଟାଏ ଆଣିଛି । ଦେଖିଥିଲା, ଗାଈଟାଏ ଚରି ଚରି ତା'ର ଇଲାକାଆଡ଼କୁ ଆସୁଥିଲା । ଯିମିତି ଗାଈ ତା' ସାମ୍ରାଜ୍ୟରେ ପ୍ରବେଶ କରିବାକୁ ଆରମ୍ଭ କରି ଶୁଙ୍ଘାଶୁଙ୍ଘି ଆରମ୍ଭ କରିଛି, ଝିଅଟି ତା' ବାଡ଼ିଟା ବୁଲାଇ ବୁଲାଇ ହାତ୍ ହାତ୍ କଲା । ମଶା-ମାଛି-ଡାଆଁଶ ଅଡ଼ାଇବା ଭଙ୍ଗୀରେ ଗାଈଟା ମୁଣ୍ଡ ହଲାଇଲା । ଝିଅକୁ ଡରାଇବା ପାଇଁ ସେତିକି ଯଥେଷ୍ଟ । ଝିଅ ଘରମୁହାଁ ହେଉଥିଲା; ଗାଈ ଅପେ ଅପେ ଦେଖାଚରରେ ଚାଲିଯାଆନ୍ତେ ସେ ଅଟକିଗଲା ।

ଯେତେ ସତର୍କ ସାବଧାନ ହେଲେ ବି ଧର୍ଷଣ ଏକାପରି ଚାଲିଛି । ଗୋରୁଗାଈ ଘୁଷୁରି, ଛେଳି, କୁକୁଡ଼ା, ଟ୍ରକ୍-ମଟର ସମସ୍ତେ ସେଇ ଓଦା ଡାବ ଖୋଳପା ଉପରେ ଅତ୍ୟାଚାର କରି ଚାଲିଛନ୍ତି, ଝିଅର ବିରାମ ବା ବିଶ୍ରାମ ନାହିଁ ।

ଏଥର ଗଣଧର୍ଷଣ । ପଶୁପକ୍ଷୀ ପରେ ମଣିଷଦ୍ୱାରା । କେତେଗୁଡ଼ାଏ ସାତଆଠ ବର୍ଷର ଘୁଷୁରିସାହିର ପିଲା ଚୋଲୁଡ଼ଡ଼ୁଙ୍ଗର ଟିଣଟିପି ନେଇ କ'ଣ ଖେଳଟାଏ

ପଥରଗଦା ପାଖରେ ଖେଳୁଥିଲେ । ଯିମିତ ସେମାନେ ଖେଳ ଶେଷ କରିଦେଲେ ଦେଖି ପକାଇଲେ ଏକେଲା ବସିଥିବା ଲଙ୍ଗୁଳୀ ଝିଅଟିକି । ଆନନ୍ଦରେ ଡେଇଁ ଡେଇଁ ଡସ୍କୋ ନାଚ ତା ସାମ୍ନାରେ ବସିପଡ଼ିଲେ ଏବଂ ଟିଣଟିପିକୁ ଗୋଟାକୁ ଗୋଟା ଫୋପାଡ଼ିଲେ ଜାନୁଚକ୍ଷିକ ଲକ୍ଷ୍ୟରଖି । ଝିଅଟା ସେମାନଙ୍କ ସଂଖ୍ୟା ଦେଖି ଭେଁ ଭେଁ ରଡ଼ଗୁଡ଼ କାନ୍ଦିଲା । ଖେଳଗୁଡ଼ ଗ୍ୱେପାଗୁଡ଼ାକ ଉପରେ ବସିଲେ, ଫୋପଡ଼ା ଫୋପଡ଼ି କଲେ । ଏଥର ସେ ଡାକ ଛାଡ଼ିଲା "ଏ ଅଉ ଦେଖନା ।" ଅଉ ଫାଇ କାହାରି ଦେଖାନାହିଁ । କୋଟିବସ୍ତ୍ର ଦେବା ପାଇଁ ଶ୍ରୀକୃଷ୍ଣ ମଧ୍ୟ ଆସିଲେ ନାହିଁ ।

ମୁଁ ଡନ୍ କୁଇକ୍‌ଜୋଟ୍ ସାଜି ବାହାରି ପଡ଼ିଲି । ସକାଳେ କୁକୁରକୁ ବୁଲାଇ ନେଇ ନ ଥିଲି । ପିଲାଗୁଡ଼ାକ, ଅଟ୍ଟହାସ୍ୟ କରି ବ୍ୟଙ୍ଗାତ୍ମକ 'ଏ ଆଉ ଦେଖନା, ଏ ଅଉ ଦେଖନା' କହି କହି ଚାଲିଗଲେ । ପାଖ ପହଞ୍ଚି ତା' ଅଡ଼କୁ ଓ ତା'ର ଜମେଣ୍ଟିଆଡ଼କୁ ଚାହିଁଲି । ତା' ମୁହଁଟି ଫିକ୍‌କା ଦିଶୁଥାଏ, ଆଖି କୋଟରଗତ, ପେଟଭୁକୁଲା ବାହାରି ପଡ଼ିଛି । ଘୋର ଏନମିଆ, ରକ୍ତହୀନତା । ପଚାରିଲି—"କିରେ ଝିଅ ! କି କରୁଛୁ ?" ସେ କଥା କହିଲା ନାହିଁ । ଭାବିଲି ମୁଁ ବି ଏକ ଶତ୍ରୁ, ଧର୍ଷକ । ଛେଳି, ଘୁଷୁରି, କୁକୁଡ଼ା ଆଉ ଦେଇ କଳାକଳା ଚରି ଛଅଟା ଦୁଷ୍ଟୁରପାଇର ପିଲାପରି । କୁକୁରଟା ବି ତା' ଅଡ଼କୁ ଚାଲିଯାଇ ଶୁଙ୍ଘାଶୁଙ୍ଘି କଲା ସ୍ଥାନ ଅସ୍ଥାନଗୁଡ଼ାକୁ ।

କୁକୁରକୁ ଫ୍ଲାଇଓଭରରେ ଖଣ୍ଡେଦୂର ନେଇ ଫେରିଆସିଲି । ଅସଭ୍ୟ, ବଜାରୀ ମଣିଷ ହାତରେ ରହି ରହି ଏ କୁକୁରଗୁଡ଼ାକର ବି ଚରିତ୍ର ବଦଳି ଗଲାଣି ବୋଧହୁଏ । ଯିମିତ ସେ ପଇଡ଼କତାର ଗଦାଠି ପହଞ୍ଚିଛି, ହଠାତ୍ ସେ ଗୋଡ଼ଟେକି ଅପକର୍ମଗୁଡ଼ାକ ତା'ରି ଉପରେ ଶେଷ କରିଦେଲା ମନ ମନାଇ । ଝିଅଟି ଛୁଡ଼ାହୋଇ ଦେଖୁଥାଏ, ହାନ୍ ହାତ୍ କରୁଥାଏ । ଏତିକବେଳେ ଧାଇଁ ଧାଇଁ, ନଇଁ ନଇଁ ଅଥବ ବୁଢ଼ୀଟିଏ ଆସି ପହଞ୍ଚିଲା । ମୁଁ ସେମାନଙ୍କୁ ଅତିକ୍ରମ କରି ଆସୁଥାଏଁ, ଶୁଣିଲି ବୁଢ଼ୀଟା କହୁଛି, କି କୁକରରେ ବାବା ! ଏତେ ବାଟ ଗେଲ୍ ଆଇଲା ହଗିମୂତି ପାରିଲା ନ । ଯାହାଟିକେ ଶୁଖିଥିଲା ଓଦା କରିଦେଲା । ବଜାରିଆ କୁକର ପରି !" ଦଣ୍ଡେ ନିଃଶ୍ୱାସ ନେଇ ମୋ ଆଡ଼କୁ ଚାହିଁ କହିଲା—'କି ଭଦର ନୁକରେ ବାବା ! ଏତେ ଦୂରିଆ

କୁକରଟା କେ ନେଇଗଲା ହଟଗର ମୂଢେଇ ପାରିଲା ନ । ଶୁଝିଲା କାଠ୍ ତା'ର ଘରେ ଅଛୁ; ଗାବନା କ ତା'ର ।' ଝିଅଟା ପିଠିରେ ଦୁଇଗୁପୁଡ଼ା ବଥାଇଦେଇ କହିଲା— "ସନ୍ତୁରେ କଥାଁ ପାଉଁଶ ଖାଇବୁ ! କାଠି ନାହିଁ କ କୁଟା ନାହିଁ, ପତର ନାହିଁ କ ଗ୍ଲେପା ବ ନାହିଁ ! କୁକରଟାକେ ଏମିତ ଗୁଟେ ଗୁଣ୍ଡେଠା ପକେଇଥିଲେ···" କହୁଁ କହୁଁ ଗୁଣ୍ଡେଠାଟା ଝିଅଟା ଉପରେ ପକେଇ ଦେଲା । ଛନ ମାଙ୍କଡ଼ଙ୍କ ପର ଅଚରଣ କର ମୁଁ ସିଆଡ଼େ ଆଉ ଗୁହିଁ ନାହିଁ, କଛୁ କହ ନାହିଁ, କଛୁ ଶୁଣି ବ ନାହିଁ ।



# ସୀମାରେଖା

ସୀମାରେଖା ! କାହାର ? ଦାରିଦ୍ର୍ୟର ? ସ୍ୱାସ୍ଥ୍ୟର ? ନୈତିକତାର ? ମନୁଷ୍ୟତାର ?

ସୀମାରେଖା ତଳେ ? କେତେ ତଳେ ? କିଏ କହିପାରିବ ?

ଭୋର ସକାଳୁ । କେତେ ସକାଳୁ କେଜାଣି । ନିଦ ଭାଙ୍ଗିଗଲା । ଦୁଃସ୍ୱପ୍ନରେ । ଖୁବ୍ ଖରାପ ଭୀଷଣ ଦୁଃସ୍ୱପ୍ନରେ । ମୁଣ୍ଡଟା ଏବେବି ବୁଲୁଛି । ନରକ କୁଣ୍ଡରେ ପଡ଼ିଥିଲି ନା କ'ଣ ! ଦେହରେ ବିଷ୍ଠାର ଏତେ ଦୁର୍ଗନ୍ଧ । ମୋର ଆଉ ବେଶୀଦିନ ନାହିଁ । ଆଉ ରକ୍ଷା ନାହିଁ । ଓଃ ଦେହ ମୁଣ୍ଡ ଉତ୍ତପ୍ତ ।

ଜାଣିଛି ସକାଳ ସ୍ୱପ୍ନ, ଶେଷ, ଶେଷ ଯାମିନୀ ପ୍ରହରର ସ୍ୱପ୍ନ । ଶାସ୍ତ୍ର କହେ ନିରର୍ଥକ ସ୍ୱପ୍ନ । କିନ୍ତୁ କେଡ଼େ ବାସ୍ତବ ! କେଡ଼େ କଦର୍ଯ୍ୟ !

ସ୍ୱପ୍ନର ଝରାପ ପ୍ରଭାବ ଏଡ଼େଇବା ପାଇଁ କେତେକେତେ ଭଲ ଚିଜ, ଶୁଭ ସଙ୍କେତ ଦେଖିଲିଣି । ଦିନଟା ନିମିଷ ଭଲରେ କଟିବ । ସୁନ୍ଦର ଯୁବକ ଯୁବତୀ; ଯୋଡ଼ାଯୋଡ଼ା ବଣି, ପାରା, କପୋତ; କେତେ କେତେ ରଙ୍ଗ ଫୁଲ; ଏପରିକି ଜବାକୁସୁମସଙ୍କାଶ ସୂର୍ଯ୍ୟଦେବ । ଗାୟତ୍ରୀ ମନ୍ତ୍ର ଓଁ ଭୂର୍ଭୁବ'ସ୍ୱସ୍ତତସବିତୋର୍ବରେଣ୍ୟମ୍ ଶହେ ଆଠଥର ଜପିଲିଣି । ତଥାପି କାହିଁ କିଛି ଉପଚାର ହେଲାପରି ଲାଗୁନି । ଶୋଇଥିବାବେଳେ ଦିନ ବେଳରେ ମଧ୍ୟ ମୁଣ୍ଡ ଭିତରେ ସେଇ ସେଇ ଚିଜ ପଶିଯାଉଛି । ଆଉ ରକ୍ଷା ନାହିଁ ମୋର ।

ହେଉ ଫେର ଦଶିଲି । ସେତାଶୁଣୀର ପୁଟୁଳା । କେତେବେଳେ ପିଠିରେ କେତେବେଳେ କାନ୍ଧରେ ମୁଣ୍ଡରେ । ସେ ପୁଟୁଳାରେ କ'ଣ ବା ଥାଇ ନେଇ ଅଛି ଚପୋଡି କେତେ କଷ୍ଟ । ନିଜ ସବୁ ଏହାପରେ । ବଙ୍କାଟଙ୍କା ଏଲୁମିନିୟମ୍ ବେଲ । ପାଞ୍ଚ ଦଶପଇସି ଗୋଟାଏ ଦୁଇଟା, ଛୁଟ ଶାଢ଼ୀର ଟୁକୁରା ଖଣ୍ଡେ, ଗ୍ରେଟଷ୍ଟିଅ ଫେକୁଥିବା ଭଙ୍ଗା ରେଶମୀ କାଚ, ଭଙ୍ଗା ପ୍ଲାଷ୍ଟିକ୍ ପାନିଆ, ଭଙ୍ଗା ଅରସି କାଚ ଟୁକୁରାଏ (ପ୍ରସାଧନ ସାମଗ୍ରୀ !) ବେ ଗୋଟାଏ ମୁମୂର୍ଷୁ ଲୋମହୀନ କଳା ଦେଶୀ କୁକୁର ଅଉ ଗୃଣ ପାଞ୍ଚ ବର୍ଷର ବୁଢ଼ୁଲା ପେଟ ଓ କୋଟରଗତ ଆଖିର ଝିଅଟିଏ ଆଛିଏ—ଏଇଟା ପତଲା ଝୁଆ ପଟରେ ଗୋଡ଼ାଇ ସେତାଶୁଣୀ ବୁଢ଼ୀଟା ମୋ ଦେହରେ ପିଠିରେ ଝୁଲେଇ ଦେଉଛି । ମୁଁ ଯେତେଥର ଦୂରକୁ ସେ ବୋଝ ଫୋପାଡ଼ି ଗୀତ ଗାଇ ଗାଇ ଉଶ୍ୱାସରେ ଘରକୁ ଯିବବୋଲି ଗୃହୁଁଛି ସେ ବୋଝ ବେତାଳପରି ପୁଣି ଲାଗିଯାଉଛି । ମୁଁ ପାଗଳ ହୋଇଯିବି; ତା' ପରେ ଶୁଙ୍ଖିଶୁଙ୍ଖି ମରିଯିବି ।

ହେଉ ଫେର୍ ମନେପଡ଼ିଲା । ଜଳଜଳ ଦଶିଲା । କି ବୀଭତ୍ସ ! କି କରୁଣ ! ବାପୁ ଠିକ୍ କହୁଥିଲେ । ଧନ ମାଙ୍କଡ଼ପରି ହୁଅ, ଖରାପ ଦେଖନା, ଶୁଣନା, କୁହନା । ନହେଲେ ବଇ ପାଗଳ ହୋଇଯିବ । ଯନ୍ଦରଟି ଦିନ ପୂର୍ବେ ନଦେଖିବା ଛବିଟି ଦେଖିଥିଲି । ଏଇଠି, ମୋ ଘର ପାଖରୁ ଶହେ ଦେଢ଼ଶ ଗଜ ଦୂରରେ । ଏଇ ଓଭର-ବ୍ରିଜ୍ ତଳେ, ଫ୍ଲାଇଓଭର ବା ଉଡ଼ନ୍ତା ପୋଲ ତଳେ ।

ବଜାର ସଉଦା ଯୋଡ଼ାଏ ଝୋଲରେ ଧରି ତଳ ରାସ୍ତାର କଡ଼ଦେଇ ଧୀର ପଦକ୍ଷେପରେ ଫେରୁଥାଏଁ, ସାବଧାନରେ ବଜୁଲି ଅଲୁଅ ନଥିବା ବେଳେ । କେମିତି କେଜାଣି ପୋଲତଳେ ଗୁମ୍ଫାଭଳି ଗୋଟାଏ ସ୍ଥାନରେ ମୁଁ ମଣିଷର ବାସନା ପାଇଲି, ଅବସ୍ଥିତ ଅନୁଭବ କଲି କାହାର 'ଏ ମାଆ ! ଏ ବାପା !' କ୍ଷୀଣ ଅସ୍ପଷ୍ଟ ଗଳା ସ୍ୱରରୁ ।

ପରଦିନ ସକାଳେ ସେଇ ରାସ୍ତା ଧରି (ସେଇଟି ମୋର ଏକମାତ୍ର ରାସ୍ତା ଅଫିସକୁ, ସିନେମାକୁ, ବଜାରକୁ, କୋର୍ଟ କଚେରୀକୁ, ରେଲ ଷ୍ଟେସନକୁ ଏପରିକି ଆନନ୍ଦ ବଜାରକୁ ) ଯାଉଁ ଯାଉଁ ସେଇ ଜାଗାରେ ତାହାଙ୍କୁ ଆଖି ପକାଇଲି, ଜାଣିବା ପାଇଁ କାଲି ରାତି ଏଠାରେ କିଏ ଥିଲା ।

ଦେଖିଲି ଦେଇ ଯେଉଁ ଅଳମାଳକା ଚଳ ଯାହା ମୋତେ ସ୍ୱପ୍ନରେ ଡାକିଥିଲା ଏବଂ ଯାହାର ଅଖାଟଳି ଏଯାକେ ମୋ କାନ୍ଧରେ ପିଠିରେ ଝୁଲି ରହିଛି । ଦେଖିଲି ମଣିଷ କୁହାଯାଉଥିବା ଏକ ପ୍ରାଣୀକି । ରାସ୍ତାକଡ଼ରେ ଛିଣ୍ଡା ଟୁକୁରା ଛିଟ ଶାଢ଼ୀ ଟାଣିକରି ଦିଅଲ କାନ୍ଥ କଡ଼କୁ ଲାଗି ଶୋଇଛି । ତା'ର ବି କ'ଣ ଦର୍ପଣକୁ ଦେଖିବାକୁ ଭୟ ଅଛି । ପାଖରେ ବସିଛି ନଙ୍ଗୁଳି ଝିଅଟାଏ ଏବଂ ବାଲିଘର ବନାଉଛି, ଭାଙ୍ଗୁଛି ।

ମୁଁ ସେମାନଙ୍କ ଆଗରେ ଛିଡ଼ାହେବାରୁ ଦୁହେଁଯାକ ମୋ ଆଡ଼କୁ ଅନାଇଲେ । କାଳେ ପାଞ୍ଚ ଦଶପଇସି ଗୋଟାଏ ମୁଁ ସେ ବିଛା ହୋଇଥିବା କନା ଉପରକୁ ଫୋପାଡ଼ିଦେବି । ମୋ ପାଖରେ ଏମିତି ଶସ୍ତା ବଦାନ୍ୟତାର ଲକ୍ଷଣ କିଛି ନପାଇ ସେମାନେ ଆଖି ଫେରାଇନେଲେ । ଲୋମ ନଥିବା କଳା ଦେଶୀ କୁକୁରଟା ବେକକୁ ଅଣ୍ଟା ବାଲି ଉପରେ ଲମ୍ବାଇଦେଇ ମୋ ଆଡ଼କୁ ଚାହିଁଥାଏ ଏମିତି ଭଙ୍ଗୀରେ ଯାହାର ଅର୍ଥ "ଏଇଟା କି ଲୋକ, ଦୟାମାୟା କିଛିନାହିଁ ।" ମୁଁ ଛିଡ଼ାହୋଇ ଘରର ପ୍ରତିଟି ଅସବାବ୍ ପତ୍ର ଓ ସେମାନଙ୍କ ଉପକାରିତା ଓ ବ୍ୟବହାର ଅନୁଧ୍ୟାନ କରୁଥାଏ ।

ବାଲିବନ୍ତ ସ୍କେଚ୍‌ରେ ହିଟ୍‌ଲରଙ୍କୁ ଦେଖିଲି । ବୁଦ୍ଧଦେବ ! ଆପଣ ଯଦି ଏଇଠି ମୋ ପାଖରେ ଛିଡ଼ା ହୁଅନ୍ତେ ଏକାଧାରରେ ରୋଗ ଜରାମୃତ୍ୟୁର ଜୀବନ୍ତ ପ୍ରତି-ମୂର୍ତ୍ତି ଦେଖି ଏକା ମୁହୂର୍ତ୍ତରେ ରାଜବାଟୀ, ଗୋପା, ରାହୁଲକୁ ଛାଡ଼ି ସଂସାର ବିରାଗୀ ହୋଇଥାଆନ୍ତେ । ଥରକଥର ଯିବା ଜାଗାରେ ଯିବା ମୂର୍ତ୍ତିକୁ ଦେଖିବାର ଆବଶ୍ୟକତା ପଡ଼ି ନଥାନ୍ତା । ମୋ ଆଗରେ ଶୋଇବା ଅବସ୍ଥାରୁ ହାତ ଉପରେ ଭରାଦେଇ ଅବର୍ଣ୍ଣନୀୟ ଦୃଷ୍ଟି ମୋ ଆଡ଼କୁ ପକାଇଥିବା ସ୍ତ୍ରୀଲୋକଟି ଏଇପରି ।

ବୟସ କହି ହେବନି । ନଅ ହୋଇପାରେ, ନବେ ବି ହୋଇପାରେ । ଗୁହ୍ୟରେ ଲୁଗା ନାହିଁ । ରହିବାର ଆବଶ୍ୟକତା ନାହିଁ । ଯୋଡ଼ିଏ ଗୋଲ ଗୋଲ ନୀଳ ଆଖିରୁ କେବଳ ବାରିହେବ ସେ ପୁରୁଷ କି ସ୍ତ୍ରୀ । ଆଗ୍ରର ବ୍ୟବହାର ଓ ମାଆର ଆଖି ଉଭୟ ସୌସାଦୃଶ୍ୟ ଥିବାରୁ ଜାଣିହେବ ଶ୍ରେଷ୍ଠ ଝିଅଟି ତା'ର ଝିଅ । କୁକୁରଟା ତାଙ୍କର ହୋଇ ନଥିବ, କାରଣ କୁକୁର ଖାଇବାକୁ ମିଳୁଥିବା ସ୍ଥାନ ଛଡ଼ା ଅନ୍ୟତ୍ର ରହିବେ ନାହିଁ । ସ୍ୱାର ଏତେ ଦରଦ କାହିଁକି ଏ ସ୍ଥାନ ପ୍ରତି । ସ୍ତ୍ରୀଲୋକଟା କେବେ ମଲେ ଖାଇବ ବୋଲି ଜଗିଛି !

ପାଖ କେବିନ୍ ( ଜନୈମିଟର ଲମ୍ବ ଅଜଗର ଡ୍ରେଗନ ପରି ପୋଲାଉଲରେ ଏମିତି ଶବ୍ଦେ ଝଟେ ରୋଗୀ-ରୋଗିଣୀ ବିନା ପଇସାରେ ଯେତେବେଳେ ଇଚ୍ଛା ସେତେବେଳେ ଯେତେଦିନ ଇଚ୍ଛା ସେତେ ଦିନ ମରିବା ପର୍ଯ୍ୟନ୍ତ ରହି ପାରିବେ )ରେ ଯେଉଁ ସ୍ତ୍ରୀଲୋକଟି ଶୁଖୁଆ ହାଣ୍ଡିଟିଏ ମେଲ କରିଥାଏ ତା'ର ହାତପାପୁଲିରେ ଯେତିକି ମାଂସ ଅଛି ଏତି ସ୍ତ୍ରୀଲୋକର ସମଗ୍ର ଶରୀରରେ ସେତିକି ମାଂସ ନାହିଁ । ସ୍ୱାକୁ ଫଟୋ ନେଇ କେଉଁଠି ଟାଙ୍ଗିଦେଲେ ଯଠଦିନରେ ଡାକ୍ତରଖାନାମାନଙ୍କରେ ଝୁଲୁଥିବା ନରକଙ୍କାଳ ହୋଇଯିବ ବିନା ଦୁର୍ଗନ୍ଧରେ ।

ଶୁଖୁଆବାଲିଟି ଆନନ୍ଦବଜାରର । ପ୍ରତିଷ୍ଠାତା ଓ ଉଦ୍‌ଘାଟକ । ଫ୍ରାନ୍ସରେ ବେଶ୍ୟାମାନଙ୍କୁ ଭଲ ଭାଷାରେ daughter of joy ବା ଆନନ୍ଦର ନନ୍ଦିନୀ ବୋଲନ୍ତି । କଲେ ଅନାଜ ଶୁଖୁଆ କେଉଟୁଣୀ, ଖଟା କମଳା, ଦୁଇଗୁଣ୍ଡା ଓଲୁ, କଚୁ ଅମୃତା ଓ ଲଙ୍କାମରିଚରେ ତା'ର ବେଉସା । ହସ୍ତିନୀ ଜାତୀୟା ସ୍ତ୍ରୀ, ତା ନାଁ ମାତଙ୍ଗିନୀ ରଖାଯିବା ଉଚିତ । ଦିନସାକ ଚନା ବ୍ଲାଉସରେ ବସିଥାଏ । ଶୀତ ଦିନରେ ବି ଦେହରୁ ଝାଳ ବାହାରେ । ବୈପରୀତ୍ୟରେ ଅନ୍ୟ ସ୍ତ୍ରୀଲୋକ (ଯାହାକୁ ଦେଖୁଛି) ଚରଗୁର୍ଣ୍ଣୀ ହେବା ଉଚିତ ।

ସେହିଦିନ ତଳେ ଚରଗୁଣୀ ଅନ୍ୟଏକ କେବିନରେ ଥିଲା । ଅତି ସିରିୟସ୍ ରୋଗୀଙ୍କ ଶେଷ ଅବସ୍ଥାରେ ଯେମିତି Intensive care unitକୁ ନିଆଯାଏ ଏ ରୋଗିଣୀଟି ଅପେ ଅପେ ଚଳନ୍ତଶକ୍ତି ଥିଲାବେଳେ ଏଇ unitକୁ ଆସିଯାଇଛି, ରୁକୁରୁପଟ ଓ ବିଶ ପ୍ରାଣୀ ସହିତ ମାତଙ୍ଗିନୀର careକୁ; ଏମିତି ଦିନରାତି ଏମାନଙ୍କ care ନେବ କିଏ ! ମାତଙ୍ଗିନୀର ଘର ଆନନ୍ଦବଜାର ଛକରେ । ଧାଇଁଯାଇ ତା' ନିଜକାମ ସେଠି ବୁଝିବ, ସ୍ୱାଙ୍କର ବି ଶେଷ ଦଶାରେ ତତ୍ତ୍ୱ ନେବ । ମୁଁ ଥରେ ଥରେ ଅତିକାୟା ତାଡ଼କା/ପୁତନାକୁ ଦେଖି ଦେଖି ଭାବୁଛି ଆନନ୍ଦ ବଜାରର ସମସ୍ତ ଏକୀଭୂତ ଆନନ୍ଦ ଏହାର ଅଙ୍ଗପ୍ରତ୍ୟଙ୍ଗ ଦେଇ ପ୍ରବେଶ କରି ଏ ରୂପ ଗଠନ କରିଛି । ଯେମିତି ବାଳେ ରାଜନୀତି ଗୁରିଆଡ଼୍ ତ୍ରିବେଣୀକର ରାଜନୀତିଜ୍ଞଙ୍କୁ ସ୍ଥୂଳକରେ ।

ପଚାରିଲେ, 'ଏ ସ୍ତ୍ରୀଲୋକଟା ସେଠି ତ ଥିଲା, ମାଗିଯାଚି ଚଳୁଥିଲା । ମୁଁ ତାକୁ ରୋଷେଇକରି ଖାଇବାର, ଛୁଆକୁ, କୁକୁରକୁ ଖୁଆଇବାର ଦେଖିଛୁ । ଏଠାକୁ କିଏ ଆଣିଲା ? ସ୍ୱାମୀ ଘର କେଉଁଠି ? ଏ ଛୁଆ କାହାର ? ଏ ସ୍ତ୍ରୀ'ର କେହି କ'ଣ ନିଜ ଲୋକ ନାହାନ୍ତି, ମାଉସୀ ?'

ମାଉସୀ ତାକ ତାକୁ ଅପ୍ରତିଭ କରିଦେଲା । ତଥାପି ଚିର ଅଭ୍ୟସ୍ତ ଅନନ୍ଦବଜାରୁଣୀଙ୍କ ଠାଣି ଓ ଗ୍ରହିଣୀରେ ଗୃହିଁ କହିଲା 'ଏତେ କଥାର ଉତ୍ତର ବାଟଗଲା ବାବୁକୁ କି ଦେଇହେବ । ଦଣ୍ଡେ ବସିବତ କହନ୍ତି । ବାବୁ, ତୁମେ ଶୁଖୁଆ ଖାଉଥିବ ତ ? କମଳା, ଖଟା କମଳା ?' ମୁଁ ନାହିଁ କହିଲି । "ଲବୁ" ମୁଁ ମୁଣ୍ଡ ହଲାଇଲି ।

ସାମାନ୍ୟ ହତାଶ ଓ କୁଣ୍ଠରେ ସେ କହିଲା, ଏ ଝିଅଟା ଆମରି ପାଇରେ ଥିଲା । ପ୍ରକୃତ ଭଲନୁହେଁ । ସାଇପଡ଼ିଶା ଦୂର୍ ଦୂର୍ ଛେ ଛେ କରି ପାଇରୁ ଘଉଡ଼ାଇ ଦେଲେ । ଏଇ ଝିଅଟା ଜନ୍ମ ହେଲାବେଳେ ତା'ର କେଡ଼େ ସୁନ୍ଦର ଚେହେରା ଥିଲା । ଏମିତି କି ରୋଗ ଧରିଲା ଯେ ଡାକ୍ତରଖାନାରେ ଚିହ୍ନି ପାରିଲେନି । କିଏ କହିଲା ଧାରୁ ରୋଗ, କିଏ କହିଲା ଏଡ଼ସ୍ ବୋଲି ନୂଆ ରୋଗ । ଯେତେ ଯାହା ହେଲେ ବି ଜମା ଭଲହେଲାନି । ଡାକ୍ତରଖାନାକୁ ନବା ଯାହା ଯମ ଘରକୁ ନବା ତାହା । ମୁଁ ତାକୁ କରପ୍ରାନ ଡାକ୍ତରଖାନାକୁ ନେଲି । ତା'ର ତ କେହି ନାହିଁ, କିଏ ଦେଖିବ ? ସେଠି ବି ଭଲ ହେଲାନି । ଦିନକୁ ଦିନ ଶୁଖି ଶୁଖି ଏ ଅବସ୍ଥା ହେଉଚି । ପାଇବାଲାଏଁ ତାକୁ ରଖିବେ ନାହିଁ, ତା' ପାଇଁରେ କାହାରି ପତ୍ନ ନଥିଲା । ସିଏ ସମସ୍ତଙ୍କଠୁ ଭଲଥିଲା । ଗରାଖ ବି ତା'ର ବେଶୀ । ଦିନ ରାତି ଭିଡ଼ ।"

"ଏଥର କି କରିବୁ ଭାଉଜ ?"

"କି କରିବ ? ଯାହା କରିବାର କରିଛୁ । ନିଜ ଲୋକ ବି ଏମିତି କରିପାରିବ ନାହିଁ । ମୁଁ ତ ଗଞ୍ଜିବ, ଏଇତ ମୋର ବେପାର । ଏଥର ମୁଁ ଗୁଣିଆ ଦେଖେଇବି । ଖବର ଦେଇଛୁ, ପାଖରେ ଗୋଟାଏ ବଡ଼ ଗୁଣୀ ଅଛି । ଶୁଖି ଶୁଖି ମରିଯାଉଥିବା ଲୋକଙ୍କୁ ସେ ବଞ୍ଚେଇ ଦଉଛି । ଶୁଖିଲା ଗଛକୁ କଞ୍ଚା ଶାଗୁଆ କରି ଫୁଲ ଫଳ ଆଣିଦଉଛି । କୁକୁଡ଼ା ମାଙ୍କଡ଼ା, ବୋଦା ଛେଳି ଯାହା କହିବ ଦେବି ବରଞ୍ଚ ସ୍ୱାଙ୍କୁ ସୁସ୍ଥାଙ୍ଗ କରିବ ।"

ବ୍ୟଥିତ ହୋଇ ପଚାରିଲି "ମାଉସୀ, ଏଠି ତୁମର ହୋଟେଲ ଅନେକ ଜଳେନ ? କାଲି ସନ୍ଧ୍ୟାରେ ଏଠି ଅନ୍ଧକାର ଥିଲା ।"

ସେ ଉତ୍ତର ଦେଲ "ଗୋଟାଏ ଜଳୁଥିଲା, ଆମେ ଜାଣିନଥିଲୁ ସେ ବତୀ କମିଛି । ତେବେ ବେଶୀ ଅଳୁଅ ହେଲେ ଅନନ୍ଧକାରଖିଆଙ୍କୁ ଅସୁବିଧା ହେଲା । ପୋଲ ପରବାଲଙ୍କୁ ବି ବହୁତ ଅସୁବିଧା ହେଲା । ଝିଅ, ପୁଅ ସବୁ ପିଇବାଲଗି ରାତି ଦଶ ପରେ ଗୁଟ ଶଳାବାଦାମ ଖାଇ ଖାଇ ଉପରେ ବୁହେଲ ମାରନ୍ତି । ସେମାନେ ତ ଅନନ୍ଧକାରଖିଆ ନୁହଁନ୍ତି; ଭଦ୍ରଘରର ପୁଅ ଝିଅ ଅଳୁଅ ତାଙ୍କୁ ବି ଅସୁବିଧା । ଢ଼ିଙ୍କା ମାରି ବତୀକୁ ସବୁ ଭାଙ୍ଗିଦେଲେ । ତାହାର ଅଳୁଅ ଦରକାର ନାହିଁ । ଉପରବାଲା କ ଜଳିବାଲ ।

ଉପରକୁ ଚାହିଁଲି ଭୀଷଣ ଘଡ଼ ଘଡ଼ ଶବ୍ଦଶୁଣି । ବଡ଼ ବଡ଼ ଟ୍ରକ୍ ବସ୍ ଗୋଟାକୁ ଗୋଟା ଚାଲିଛି । ପୋଲଟା ଉଠୁଛି ପଡ଼ୁଛି ସିମିତ ବୋଟଗ୍ଭଳ ମାଲଗାଡ଼ି ତଳେ ଲୁହା ଚକ୍ରା ସବୁ ରେଲଲାଇନରେ ଦପ୍ ଦପ୍ ହେଉଛି ପଚାଶ ଗଜ ଦୂରରେ । ପୋଲର ଅଳ୍ପୁର ଉପରେ କୁଆ ଚିଲି ଶାଗୁଣା ଏବଂ ତା' ଉପରେ ଫାଇଟିଂ ପ୍ଲେନ୍ ଓ ସବା ଉପରେ ଦେଖା ଯାଉନଥିବା ଜେଟ୍ ବିମାନ । ଭାବୁଚ୍ଛି ଥକିଯିବ । କେତେ ଉଚରେ କେତେ ତଳେ ଘଟଣା ଘଟିଯାଉଛି !

କେତେ ଉଚ କେତେ ନିଚ । କେତେଦୂର କେତେ ପାଖ । ଉପରେ ପତାକା ବୈଜୟନ୍ତୀ ଉଡ଼ାଇ ଚାଲିଛନ୍ତି କେତେକେତେ ଲାଟ ଗଭର୍ଣ୍ଣର, ରାଜ୍ୟପାଳ, ଲୋକପାଳ, ମନ୍ତ୍ରୀ, ମହାମନ୍ତ୍ରୀ, ସଚିବ, ମହାସଚିବ, ଜିଲ୍ଲାପାଳ ଏବଂ କେତେ କେତେ ମଣ୍ଡଳପାଳ । ସମସ୍ତେ ମହା ନିନାଦରେ ଘୋଷଣା ମାଇକ୍ ସାହାଯ୍ୟରେ କହୁଯାଇଛନ୍ତି "କେହି ଅସହାୟ ରହିବେ ନାହିଁ । କେହି ଉପାସ ରହିବେ ନାହିଁ ଏବଂ ନିର୍ବୋପରି କାହାରିକୁ ଭୋକଉପାସରେ ମରିବାକୁ ଦିଆଯିବ ନାହିଁ । ବରଂ ଆମେ ମରିବୁ ।" ଏ କୁହାଟ ପୋଲ ତଳର ମୁଁ ଦେଖୁଥିବା ଜବର କାନକୁ ଶୁଭୁଛି ତ ତା'ର ଗୁମ୍ଫାର ସିମେଣ୍ଟ କାନ୍ଥ ଭେଦକରି ?

ଶୁଣୁଥିବାଲ୍ଲା ତ ତାକୁ କହିଛି, ଆଶ୍ରୁର କହିଛି ଦେଶୀ କଳା କୁସ୍ତି, ପେଜପାଣି ଯୋଗାଇବା ପାଇଁ ବସିଛି ଗ୍ରେଟ ଝିଅଟି । ଏତେ ସମସ୍ତ ଧରି ଛୁଡ଼ାହେଲ ତଥାପି

ଉପରୁ କେହି ଝରକା ଚାହିଁଲେ ନାହିଁ ତଳକୁ (ଏତେ ଉଚ୍ଚରୁ କ'ଣ ତଳର ଶ୍ରେଷ୍ଠ ଶ୍ରେଷ୍ଠ ଜୀବ ଦିଶିବେ ?) କିମ୍ବା ଟଙ୍କାଟେ ମହାଏ ପକାଇଲେ ନାହିଁ । ଯେତିକି ଦୁଃଖିତ ସେତିକି ବିରକ୍ତ ହେଲି । କିଛି ଦେବି ନାହିଁ ନିଷ୍ପତ୍ତି କଲି । ଶୁଖୁଆବାଲା ଗୁଣ୍ଡିଗାଣ୍ଡ଼ି ବଳରେ ତାକୁ ଭଲ କରୁ । ତା'ର ଯେତେ ଚର୍ବି ଅଛି—ତାକୁ ଚର୍ବି ମାଗିଲେ ସେ ଶହେ କି ହଜାରେ କଙ୍କାଳକୁ ମାଂସ ଚର୍ବି ଦେଇ ସୁନ୍ଦରିଆ କରିଦେଇ ପାରିବ ।

ଦୁଇଘଣ୍ଟା ପରେ ଫେରିଲି । ଆସିଲାବେଳେ ଦେଖିଲି ଆଉ ଗୋଟାଏ ଗୁମ୍ଫା ବା କେବିନ୍‌ରେ ସେଇ ସାନ ଝିଅଟି ଆନନ୍ଦବଜାରର ଅନ୍ୟାନ୍ୟ ଝିଅ ପୁଅଙ୍କ ସହ ଖେଳୁଛି । ତା'ର ମୁହଁଟି ଅନ୍ୟମାନଙ୍କ ତୁଳନାରେ ଏକାବେଳେ ନୀରସ ଓ ତ୍ରାଣସ୍ୱାନ । ତଥାପି ଝିଅପିଆ ଗୁଡ଼ (ସେ ଜାଣେ ଯେ ଅଙ୍କ ମିଳିବ ନାହିଁ କିଛି) ସେ ଖେଳୁଛି, ଖେଳ ହିଁ ପ୍ରାଣ ତା' ପକ୍ଷରେ । "ଅ ମୋ ସାଙ୍ଗରେ ଯିବା ମାଆ ପାଖକୁ" । ସେ ମୋ ସାଙ୍ଗରେ ଆସିଲା ।

କେବିନରେ ପହଞ୍ଚି ଦେଖିଲି ତା' ମାଆ ଶୋଇବା ସ୍ଥାନ ବଦଳ କରିଛି । ସେ ବୋଧହୁଏ ଗୁରୁଣ୍ଡି ଗୁରୁଣ୍ଡି ଆସି ଶୋଇଛି ରାସ୍ତା କଡ଼କୁ ମୁଣ୍ଡ କରି । ଠିକ୍ ତା' ଭିକ୍ଷାପାତ୍ର ପାଖରେ । କେହି କିଛି ପକାଇ ନାହାନ୍ତି । ମୁଠାଏ ଅନ୍ଦାଜ ମୁଢ଼ି ଓ ଆଉ ମୁଠାଏ ନାଲି ଚାଉଳ ପାତ୍ରରେ ପଡ଼ିଛି । ଏକାଠି ମିଶିଯାଇଛି । କୁକୁର ବି ତା' ମୁହଁକୁ ମୁଢ଼ି ପାଖକୁ ରଖି ବକଲିଆ ଆଖିରେ ତା' ମାଲିକଆଣୀକୁ ଚାହିଁଛି । ଶୁଖୁଆବାଲା ତା' ଦୋକାନ ବନ୍ଧା ବନ୍ଦ କରି ଭାତ ଖାଇବା ପାଇଁ ତା' ଘରକୁ ଯାଇଛି । ଭାତକଡ଼ ନିଦ ଭାଙ୍ଗିଲେ ପୁଣି କେପିଟେଲିଷ୍ଟ ଢହ୍ୱକୁ ପିଚୁଡ଼ା ମଧ୍ୟରେ ଗଡ଼ାଇ ଗଡ଼ାଇ ଆଣିବ ତା' ସ୍ଥାନକୁ ।

ଝିଅକୁ ଧରି ତା' ମାଆ ମୁଣ୍ଡ ପାଖରେ ଛିଡ଼ା କରାଇଲି । ମାଆକୁ ଦେଖାଇ ଆଠଅଣିଟିଏ ଝିଅ ହାତରେ ଦେଲି । ଆଉ ନଥିଲା । ନିଜକୁ ଧିକ୍କାର କରୁଁ କରୁଁ ଭାବୁଥାଏଁ ମୁଁ ବି ସେଇ ବଦାନ୍ୟ ଶ୍ରେଣୀର ଲୋକ ଭିତରେ କେଉଁ କୁଷ୍ଠରୋଗୀଙ୍କ ସେବା କରି ପୁଣ୍ୟ ଅର୍ଜନ କରନ୍ତି । ଶହେଙ୍କ ପାଇଁ ଟଙ୍କାଟିଏ ଓ ଅନ୍ୟ ଶହେଙ୍କ ପାଇଁ ଅଧଲାଲେ ପୋକରା ଚାଉଳ ଦେଇ ବେଗ ଅତିକ୍ରମଣ ଭୟରେ ଚାହୁଁ ଚାହୁଁ ଫାଟକ ବନ୍ଦ କରି ତେତାଲା ଉପରକୁ ଉଠିଯାଆନ୍ତି ।

କୃତଜ୍ଞତା ସହିତ ଦୁଇଟୋପା ଲୁହ ଦେଇ କହିଲା କଙ୍କାଳ ଖୁବ୍ ଅଳ୍ପ ଶବ୍ଦରେ । ତା'ର ବେଶୀ କଥା କହିବାର ନଥିଲା ବୋଧହୁଏ ।

"ବାବୁ, ତରକାରୀ ଭାତ ମୁଠେ ଦବୁ" । ମୁଁ "ଦେବି" ବୋଲି କହି ଘରମୁହାଁ ହେଲି । ସାରା ପୃଥିବୀ ବିନିମୟରେ ଏ ସାମାନ୍ୟ ପଦାର୍ଥ ତରକାରୀ ଭାତ ମୁଠେ ଦେବା ପାଇଁ ଭଗବାନଙ୍କ ନାଁରେ ମନେ ମନେ ଶପଥ ନେଲି । ଘରକୁ ଯାଇ ରନ୍ଧାବଢ଼ା କରୁଥିବା ଝିଅକୁ କହିଲି "ବାହ୍ରଲଇନ୍ ଗୁଣ୍ଡୁ ତଳ ଖୋପ ଭିତରେ ଯେଉଁ ଦରମଲା ଭିକାରୁଣୀ ଶୋଇଛି ତା' ପାଖକୁ ଭାତ ତରକାରୀ ଖଲିପତ୍ରରେ ବାଢ଼ି ନେଇଯିବୁ ଲୋଟାରେ ପାଣି ସହିତ । ତା'ର ଗୋଟାଏ ଝିଅ ଅଛି, କୁକୁର ବି ଅଛି । ସମସ୍ତଙ୍କ ପାଇଁ । ତୁ ସେମାନଙ୍କୁ ଖାନା ଦେଇଆସିଲେ ଯାଇ ମୁଁ ଖାଇବି ।" ଅଯାଚିତ ଅନୁଗ୍ରହର ସହିତ ଝିଅଟା ନେଇ ମାଛ ଝୋଳ ସହିତ ସବୁ ଖାଦ୍ୟ ରଖି ଦେଇଆସିଲା । ଫେରି-ଆସି କହିଲା, "ଦେଇଆସିଛି ସବୁ; କିନ୍ତୁ ସେ ବେଶି ଖାଇ ପାରିବ ସେ ଆଶା ନାହିଁ, ମତେ କହିଲା 'ଭଗବାନ ବାବୁର ମଙ୍ଗଳ କରିବେ କହିଦବୁ ବାବୁକୁ । ତାହାକୁ ତ ଜୀବନରେ ଦଏ ନାହିଁ; ଏଠିକି ସାମାନ୍ୟ ମୁଠାଏ ତରକାରୀ ଭାତ ଦେଇ ଯେତିକି କଲ୍ୟାଣ ପାଇଲି ମୁମୂର୍ଷୁଠାରୁ ତାହା ମୋତେ ଅସାମାନ୍ୟ ଆନନ୍ଦ ଦେଲା ।

ମୋର ବିନା ଅନୁମତିରେ ଗୃହିଣୀ ପ୍ରତିଦିନ ସେମାନଙ୍କୁ ନେଇ ଖାଦ୍ୟ ମୁଠାଏ ଦେଇଆସେ । କାର୍ଯ୍ୟବ୍ୟସ୍ତତାରେ ସେ ଠିକ୍‌ହୋଇ ତଦାରଖ କରିପାରେନା । ସେ ଖାଦ୍ୟ ମାଆ ଖାଏ କି ଝିଅ ଖାଏ, କି କୁକୁର ଖାଏ, କି କେହି ଖାଇପାରନ୍ତି ନାହିଁ ଶୁଖିଆବାଲି ପୂତନା/ତାଡ଼କା ଖାଇଦିଏ ।

ସପ୍ତାଏ ଗଲା । ସେମାନଙ୍କର ବିଶେଷ କିଛି ସ୍ୱାସ୍ଥ୍ୟର ଉନ୍ନତି ପରିଲକ୍ଷିତ ହେଲା ନାହିଁ । ଝିଅଟାକୁ ମୋ ଘର ଦିନେ ଦେଖାଇ ଦେଲି; ଆସି ପ୍ରତିଦିନ ନିମିତ୍ତ ସେ ଖାନା ନେଇଯାଏ । ସେ ଦିନେ ଔଷଧ ନେଇଥିଲା; କିନ୍ତୁ ତାକୁ ବୋଧହୁଏ ଖାଇବାକୁ ମିଳିଲା ନାହିଁ । ତେଣୁ ସେ ଆସିଲା ନାହିଁ । ମୁଁ ବି କ୍ରମେ କ୍ରମେ ତତ୍ତ୍ୱ ନେବାରୁ ବିରତ ହେଲି କାରଣ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଏ ଜୀବମାନଙ୍କୁ ବଞ୍ଚାଇ ରଖିବା ଅସମ୍ଭବ ବ୍ୟାପାର ।

ବାବା ଅ୍ୟାଣ୍ଡ୍ରେଲମଣିଙ୍କି ଶ୍ରେଷ୍ଠ ବିମାନରେ ଝୁଲାଇ କଷାୟ ବସ୍ତ୍ର ପିନ୍ଧି ଟ୍ରେନ୍ ବସ୍‌ରେ ମାଗୁଥିବା ଭଣ୍ଡଙ୍କୁ ଲୋକେ ପଇସା ଦେବେ; କିନ୍ତୁ ଅନାଥ ମୁମୂର୍ଷୁଙ୍କୁ ଦେବା କଥା ଭାବିବେ ନାହିଁ । ଯାହା ବା ପାଞ୍ଚପଇସି ଦଶପଇସି ଦେବେ ତାହା ଏମାନଙ୍କ ଅସହାୟ ଦୁର୍ବଳ ଅବସ୍ଥାର ସୁଯୋଗ ନେଇ ମାଙ୍କଡ଼ ପିଲାଏ ନ ହେଲେ ଶୁଖୁଆବାଲା ଟାକଟରେକରେ ଉଠାଇ ନେବେ । ଆନନ୍ଦବଜାରର ପିଲାଙ୍କ ସହିତ ମିଶି ଗ୍ରେଗ ବଡ୍ୟା ଶିଖିଲି ଟ୍ରେଷ୍ଟ ହ୍ୱିଷ୍ଟା ଏବଂ ଥାଇଁପାଇଁ ପାନ ଦୋକାନରୁ ବିଲାତି ମିଠେଇ କିଣି ଆଣେ । ଦୈନନ୍ଦିନ କାର୍ଯ୍ୟାଗତ ।

ଲାଗ ଲାଗ ତିନିଦିନ ଦେଖିଲି ଭିଗ୍ରେଇନ୍ ଏକା ସ୍ଥାନରେ ଅଚଳ ଅବସ୍ଥାରେ ପଡ଼ିଛି, ରାସ୍ତାକଡ଼ ବାଡ଼ି ପାଖକୁ ଯିବାକୁ ପାରୁନି; 'ବାପା' 'ମାଆ' 'ଦେଇଯା' କହି ପାରୁନି ।

ଆଜି ନା କାଲି ? ସକାଳେ ନା ସନ୍ଧ୍ୟାରେ ? କେତେବେଳେ ?

ମୁଁ ଯେତେ ଶୀଘ୍ର ସେ ଯାଉ ବୋଲି ଚାହେଁ ସେ ଯାଏ ନାହିଁ । ମଣିଷ ଜୀବନ କେଡ଼େ ଟାଣ ତାହା ମୁଁ ପ୍ରତ୍ୟକ୍ଷ ଦର୍ଶନ କରେଁ । ଯେତେବେଳେ ଯାଏଁ ସେ ସେମିତି ପଡ଼ିଥାଏ । ମରିଛି କି ବଞ୍ଚିଛି ଜାଣି ହୁଏନି । କୁକୁର କୁହେନି । ମଣିଷ ଛୁଆ ବି କୁହେନି । ଖୁବ୍ ଚକ୍ଷୁଶୂଳ ଦେଖଣାହାରୀ ପକ୍ଷରେ ।

ଗାନ୍ଧୀ ଆଦି ମହାତ୍ମାମାନେ ମଧ୍ୟ ଏମିତି ଜୀବନ୍ମୃତ ଅବସ୍ଥାରେ ଥିବା ପ୍ରାଣୀଙ୍କି ମାରି ଦେଇଥିବାର ଶୁଣାଯାଏ । ମୋର ବି ଇଚ୍ଛା ହେଲା କେତେବେଳେ ଗୁମ୍ଫାକୁ ପଶିଯାଇ କେହି ନଥିଲାବେଳେ ଗୋଇଁଠାଟେ ପକାନ୍ତି ଯେ ସେ ରକ୍ଷା ପାଇଯା'ନ୍ତା ।

କିନ୍ତୁ ମୋର ପରମ ଭାଗ୍ୟ, ଏ କାମ କରିବା ପୂର୍ବରୁ ମୋ ପ୍ରତି ଦୟାପରବଶ ହୋଇ ଭଗବାନ ତାକୁ ନେଇଗଲେ । ଆଖିରୁ ଶେଷ ଟୋପାକ ପାଣି ପଡ଼ିଗଲା । ନାକ ପାଟିର ଗରଲରେ ଲାଲ ପିମ୍ପୁଡ଼ି ଜମିଗଲେ । ମୃତ୍ୟୁର ସମସ୍ତ ଲକ୍ଷଣ ପ୍ରମାଣ ଦେଖିଲି । 'ସଂସାରର ଖେଳାଖେଳା ସରିଲା ଅନ୍ତରେ' କହି ସେ ଚାଲିଗଲା । କଲ୍‌ରଜଙ୍କ

ବୁଢ଼ା ନାଉରୀ ବେକରେ ଯେଉଁ ଏକଦେବ୍‌ତ୍ର ଚଢ଼େଇ ଝୁଲୁଥିଲା, ବାନସ୍ତାନଙ୍କ ପିଲଗ୍ରୀମ ପିଠିରେ ଯେଉଁ ଯେଉଁ ବୋଝ ଥିଲା ସେ ସବୁ ଖସିଗଲା ପରି ମୋ ସ୍ୱପ୍ନରେ ଯେଉଁ ଯେଉଁ ଅଶୁଭ ଥିଲା ତାହା ଉଭେଇଗଲା ସ୍ୱାର କରୁଣ ମୃତ୍ୟୁରେ। ବଞ୍ଚିଥିଲା ବେଳେ ବରଂ ଅସୁନ୍ଦରୀ ଦିଶୁଥିଲା, ମରିଗଲାରୁ ଏକ ଦିବ୍ୟ ଆଭା ତା ମୁହଁରେ ଦେଖିଲି। ଏଥର ପ୍ରକୃତରେ ସେ ବଞ୍ଚିଲା।

ଦୁଇ ଦିନ ଦିନ ତଳେ ରାସ୍ତାରେ ନଯାଇ ଉପର ଉଡ଼ନ୍ତା ରାସ୍ତାରେ ଗଲି। କାରଣ ଏତେ ଶୀଘ୍ର ମୁର୍ଦ୍ଦାର ପରି ସବ ଶୁଭ ପଦାର୍ଥକୁ ରାସ୍ତା କଡ଼ରୁ ଦୂର କରିବା ଠିକ୍ ହେବନି। ଏ ମଣିଷ ମୁର୍ଦ୍ଦାରଟା ପଚିବାକୁ କୁକୁର ମୁର୍ଦ୍ଦାରଠୁ ବେଶୀଦିନ ଲାଗିବ କାରଣ ଚର୍ବି ମାଂସ ଚକ୍ର କିଛି ତା'ର ନଥିଲା ହାଡ଼ ଛଡ଼ା। ମେହେନ୍ତର ମିଳିବେ ନ ମିଳିବେ, ଉଠେଇବେ ନ ଉଠେଇବେ, ପୋଲିସ ମୃତ୍ୟୁ ବା ଅପମୃତ୍ୟୁର ତଦାରଖ କରିବ ନ କରିବ ଏସବୁ ଉପରେ ମୁର୍ଦ୍ଦାର ହଟିବା ନିର୍ଭର କରିବ। ବିଶେଷକରି ଖାଦ୍ୟ ଅଭାବରୁ କାହାକୁ ମରିବାକୁ ଦିଆଯିବ ନାହିଁ ବୋଲି ସରକାରର ଘୋଷିତ ନୀତି ଥିବାରୁ।

ଦିନଦିନ ପରେ ସେ ରାସ୍ତା ଦେଇ ଗଲି। ଗୁମ୍ଫାରେ କୁକୁର ନାହିଁ, ସାନଝିଅଟି ବି ନାହିଁ। ଶୁଖୁଆବାଲୀ ବି ଆଉ ହାଟ ମେଲାଏ ନାହିଁ। ପାନଦୋକାନୀଟା କହିଲା ତାଡ଼କା କୁଆଡ଼େ ତାକୁ ନେଇଯାଇଛି ଏବଂ ଅନନ୍ଦବଜାର ପାଇଁ 'ଷ୍ଟାର' ତିଆରି କରିବ ପିମିଠି ତା ମାଆକୁ ତିଆରିକରି ଦିବାକୁ ଦେଲା।

ଗୁମ୍ଫାରେ ଦେଖିଲି ସେଇ ସେଇ କେ ପଡ଼ିଛି ଛିଣ୍ଡା ଛୁଟ କନା ଝୁଲିବା, ଗ୍ରେଟ ଖାଲି ଭାତହାଣ୍ଡି, ଅଖାଛିଣ୍ଡା। ମଝିରେ ସେଇ ସାନ ଝିଅଟା ଗଢ଼ିଦେଇ-ଯାଇଛି ବାଲିରେ ମନ୍ଦିରଟା। ଭଙ୍ଗା କାଚ, ଆରସି, ହଳଦିଆ କନିଅର ଫୁଲ କାନ୍ଥରେ ଖଞ୍ଜିଛି ଏବଂ ଅଡା ଡାଳଟାଏ ଦେଉଳର ପତାକା କରି ରଖିଦେଇ ଯାଇଛି। ଶୁଖୁଆର ଗନ୍ଧ, ଧୂପପରି ଗୃହଆଡ଼େ ପୂରି ବୁଲୁଛି।



# ଅପମୃତ୍ୟୁ—ଗୋଟିଏ ଶ୍ରେଷ୍ଠ ଦୁଷ୍ଟଚକ୍ରାର

ଏବେ ଏବେ ଯେ ଦେଶରେ ଯେତେ ଯେତେ ବିହାର ଯଥା:—ଶାରଳା ବିହାର, ଶାରଦା ବିହାର, ଲକ୍ଷ୍ମୀ ବିହାର, ସରସ୍ୱତୀ ବିହାର, ଲାବଣ୍ୟ ବିହାର, ଜ୍ୟୋତ୍ସ୍ନା ବିହାର ଗଢ଼ି ଉଠିଛି ସେଥିରେ ଜନୈକ (କା) ଅନ୍ତେବାସୀ (ସିନୀ)ଙ୍କୁ ଯଦି ଆପଣ ପଚାରିବେ, ଆପଣ ଅନ୍ୟାନ୍ୟ ସ୍ୱତନ୍ତ୍ରଭିତ୍ତିକ ଏଇ ଶ୍ରେଣୀର ପ୍ରାଚୀନ ଅନୁଷ୍ଠାନ ଗୁଡ଼ିକ ଏଠାକୁ ଆସିବାକୁ କାହିଁକି ପସନ୍ଦ କଲେ ତେବେ ସେ ମଦୋଦ୍ଧତ ଦୃପ୍ତ କଣ୍ଠରେ କହିବେ, ଆମେ ଆସିଛୁ ପାଞ୍ଚୋଟି 'ପ' ପାଇଁ ।

ଆପଣ କିଛି ବୁଝି ନ ପାରି ହାଁ ହୋଇ ତାଙ୍କ ଅଡ଼କୁ ଚାହିଁ ରହିଥିବେ ସେ ଆପେ ଆପେ ନିଗୂଢ଼ ରହସ୍ୟ-ପ୍ରହେଳିକାମୟ କଥାଟିକୁ ଅଗ୍ରହରେ ବ୍ୟାଖ୍ୟା ଓ ଉନ୍ମୋଚନ କରିଯିବେ ।

କହିବେ, "ଶୁଣନ୍ତୁ ଏଇ ପାଞ୍ଚୋଟି 'ପ' ହେଲା ପାଣି, ପବନ, ପୁଷ୍ଟି, ପାପ ଆଉ ପ୍ରେମ । ପାଣି କଥାଟି ବୁଝାଇବା ଦରକାର ନାହିଁ । ଆପଣଙ୍କ ସାମନାରେ ଯେଉଁ ଅଟ୍ଟାଳିକା ନବଶତ୍ରୁମ୍ନୀ ପାଣିଟାଙ୍କି ଦେଖୁଛନ୍ତି ସେଥିରୁ ପାଣି ଅହୋରାତ୍ର ନିର୍ଗତ ହେଲେ ବି ଟାଙ୍କି ସବଦା ଫୁଲ୍, ତେଣୁ ପାଣିର ଅଭାବ ନାହିଁ, ଶେଷ ନାହିଁ ।"

ନିଃଶ୍ୱାସ ନେଇ ପୁଣି ଝିଅ ଧରିବେ "ଶୁଣନ୍ତୁ (ଯଦି ଧୈର୍ଯ୍ୟ ଥାଏ) ପାହାଡ଼ ପର୍ବତ ଅଟ୍ଟାଳିକା ଚତୁର୍ଦ୍ଦିଗରେ ନ ଥିବାରୁ ବାରମାସ ତ୍ରିକାଳ ସନ୍ଧ୍ୟା ଏଠି ଏମିତି ପବନ ବହେ ଯେ ତାତ ଝରକା ସବୁ ଖର୍ଚ୍ଚି ଯାଏ, ଦୁ' ଦଣ୍ଡ ପାନଅଥା ପକେଟରେ ଥିଲେ

ବ ପୁରୁଷଙ୍କ ଚୁଳ ଅବନ୍ୟସ୍ତ ସବୁବେଳେ ରହେ, ତରୁଣୀମାନଙ୍କ କେଶଦାମ ତ ସଦାବେଳେ ଅଲୁଳାୟିତ ରହେ ତା' ସାଙ୍ଗକୁ ଶାଢୀ ଏବେତେବେ ଉଡ଼ିଯାଇ ଅସ୍ତବ୍ୟସ୍ତ କରେ, ଅଡ଼ୁଆ ଅବସ୍ଥାରେ ପକାଏ ମଧ୍ୟ ।

ଆପଣ କହିବେ "ସ୍ପଷ୍ଟ କଥା ବୁଝାଇବା ଦରକାର ନାହିଁ, ବଉଳ, ଚମ୍ପା, କାଞ୍ଚନ, ହରଗଉରୀ, ବେଗୁନଭିଲା, କୋଟନ ଆଦି ରଙ୍ଗବେରଙ୍ଗ, ଦେଶୀବିଦେଶୀ, ସୁଗନ୍ଧ ନିର୍ଗନ୍ଧ ଦୁର୍ଗନ୍ଧ ବୃକ୍ଷଲତା ଦେଖିପାରୁଛୁ ।"

"କିଛୁ ଦେଖିପାରୁ ନାହାନ୍ତି । ଆପଣଙ୍କ ଅକ୍ଷି ଟ୍ରେନଡ୍ ହୋଇନି । ଇଉନିଭର୍ସିଟି କେଣ୍ଟିନ୍ ଆଗରେ ସେଇ ଶ୍ରେଷ୍ଠ କୃଷ୍ଣଚୂଡ଼ାକୁ ଦେଖନ୍ତୁ । ଗଛ ପାଚିଲା ହୋଇନି, ପତର ଝଡ଼ିନି ନାହିଁ; ଦେଖନ୍ତୁ କିପରି ଅସମୟରେ ଝଙ୍କାଝଙ୍କା କଢ଼ ପତରକୁ ଠେଲି ଆଗକୁ ବାହାରି ଫୁଟିବାକୁ ଚେଷ୍ଟା କରୁଛନ୍ତି । ଆପଣ ବିଶ୍ୱାସ କରିବେନି ମୁନିଅକ୍ରମ ପରି ଏଠାରେ ମଧ୍ୟ ବିନା ପୁଷ୍ପୋଦ୍‌ଗମରେ ବୃକ୍ଷଲତାରେ ଫଳ ଧରେ ।

"ବାଃ ! ଆଶ୍ଚର୍ଯ୍ୟ କଥା ! ତେବେ ପାସ୍‌ଟା କ'ଣ ?

"ଚାଳିଶି ପାରସେଣ୍ଟ ମାର୍କ ନ ହେଲେ ଆପଣ ଦରକାରୀ ଅଖିରେ ଅପଦାର୍ଥ । ଏତେ ହାଇ ପାରସେଣ୍ଟ ମାର୍କ ପାଇବେ କେବଳ ଏଇଠି ଏଇ ବିହାରମାନଙ୍କରେ । ଏଠି ନବମ ପଞ୍ଚଟିଏ ଅଛି ଯହିଁରେ ପିଲାଙ୍କୁ ପଚରା ଯାଏ, ତୁମ ତେଲିଖଣ୍ଡର ହାଇଟ୍ କେତେ ? କେତେ ଓଜନର ତେଲଧାରଣକ୍ଷମ ସେ ପାତ୍ର ? ଅହୋରାତ୍ର ରହଣି-କାଳସାକ ମର୍ଦ୍ଦନକ୍ଷମ କ'ଣ ତୁମ ହସ୍ତଯୋଡ଼ାକ ? ପ୍ରତିଯୋଗିତାରେ ଯେ ଜଣେ ସେ ଚଉଷଠି କ'ଣ ଚଉଷଠି ବାହେ ବି ପାଇପାରେ । ସେ ବର୍ଷ ଶହେଆଠରୁ ଶହେଆଠ ଫାଷ୍ଟକ୍ଲାସ ପାଇଥିଲେ ।"

ଏଥର ଦ୍ୱିଗୁଣ ଉତ୍ସାହରେ ସେ କହିବେ "ଶେଷ ପଂକ୍ତି ପ୍ରେମ । ଏଠି ପ୍ରେମର ପ୍ରାବଲ୍ୟ ଓ ପ୍ରାଚୁର୍ଯ୍ୟ ବିବିଧ କମସରି; ବର୍ଦ୍ଦରୁଦାରୁ ହଷ୍ଟେଲ, ହୋଟେଲ ପର୍ଯ୍ୟନ୍ତ । 'ଅମ୍ଭଙ୍କୁ ପ୍ରେମ କର ଅମ୍ଭେ ତୁମ୍ଭଙ୍କୁ ପରିତ୍ରାଣ କରିବୁଁ ।' ଅର୍ଥାତ୍ ତୁମ ବାପମାଆ ଗାଁ ଗାଁ ସହର ସହର ଘର ଘର ବୁଲି ବରପାତ୍ର ବା କନ୍ୟାପାତ୍ରୀ ଅନୁସନ୍ଧାନ କରିବା

ଶ୍ରମ ଓ ଅର୍ଥବ୍ୟୟ ତଥା ଦୁଶ୍ଚିନ୍ତାରୁ ରକ୍ଷା ପାଇଯିବେ । ଯେହେତୁ ପ୍ରେମର ଅଭିବୃଦ୍ଧି ଓ ପରିଣତି ଖୁବ୍ ଶୀଘ୍ର ଏଠାରେ ସଂଘଟିତ ହୁଏ, ସୁବିସ୍ତୀର୍ଣ୍ଣ ଜଳାଶ୍ରୟରେ ଜାଆଁଳର ଦ୍ରୁତ ଅଭିବୃଦ୍ଧି ହେଲପରି ।

ବିହାର ସମ୍ପର୍କରେ ଯେଉଁ ଗ୍ରନ୍ଥଟି ଆପଣଙ୍କୁ ଦିବ୍ୟଜ୍ଞାନ ଦେବେ ସେ ଶତ୍ରୁଘ୍ନ ମହାନ୍ତି । 'ସା'ର ଆଜ୍ଞାରେ ପର୍ବତ ଜଳେ ଭାସଇ ସୋଲମତ ।' ଅସାଧ୍ୟସାଧନ, କରିତ୍କର୍ମା ଗ୍ରନ୍ଥଟି । ମଙ୍ଗଳ କଲେଜରେ ଭାଇସ୍ ପ୍ରେସିଡେଣ୍ଟ, ସେକ୍ରେଟେରୀ ଏପରିକି ପ୍ରେସିଡେଣ୍ଟ ହୋଇଥିଲେ । ପଲିଟିକ୍ସରେ ଧୁରନ୍ଧର ପଲିଟିକେଲ ସାଇନ୍ସ୍‌ରେ ପାସ୍ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନ ଥିଲେ ବି । ଏଠାକୁ ଆସି ସେ ହଷ୍ଟେଲର ଜେନେରେଲ ସେକ୍ରେଟେରୀ, ଷ୍ଟୁଡେଣ୍ଟସ୍ ଇଉନିଅନର ପ୍ରେସିଡେଣ୍ଟ ଏପରିକି ସିନେଟ୍ ଅଡ଼କୁ ମୁହେଁଇଲେ ।

ଶତ୍ରୁଘ୍ନଙ୍କ (ଭାରତ ବାବୁ ଶତ୍ରୁଘ୍ନ ବାବୁ ! ) ପଞ୍ଚଶୀଳରେ ଭୁଲ ନାହିଁ; କେହି ବିରୋଧ ବି କରିପାରିବ ନାହିଁ । ତେବେ ପାଞ୍ଚ 'ସ'ର ପ୍ରାଚୁର୍ଯ୍ୟ ମଧ୍ୟରେ ପେଟ ପାଇଁ ପସିଟିଥିବା କଥାଟା ସେ ଉଲ୍ଲେଖ କରି ନାହାନ୍ତି । ସତକହିଲେ ଏଠି ଖାଇବାକୁ କମ୍ ମିଳେ; ଖାଦ୍ୟର ସର୍ବଦା ଅଭାବ । ବେଳେ ବେଳେ ସରିଯାଏ କିଛି ମିଳେ ନାହିଁ । ଇଉନିଭର୍ସିଲ କେଣ୍ଟିନ୍ ଲୋଚାଳ ଚାହିଦା ଯୋଗାଇ ପାରେ ନାହିଁ । ତେଣୁ ଅନ୍ତେବାସୀମାନେ ପାଣିପବନ ପିଇ ଫୁଲର ମହକ ଶୁଙ୍ଘି ପାଠ ନ ପଢ଼ି କେବଳ ନବମ ପକ୍ଷ କରିଆରେ ଆଗକୁ ମାଡ଼ିଚାଲନ୍ତି । ପ୍ରେମର ଅପରିହାର୍ଯ୍ୟ ଆବଶ୍ୟକତା ଏଠି ସର୍ବଦା ଉପଲବ୍ଧ ହୁଏ ଯିମିତି ଅଭାବରେ, ଦୁଃଖରେ, ବିରହରେ ଲୋକେ ବାଧ୍ୟ ହୋଇ ନିଶାଦ୍ରବ୍ୟର ଆଶ୍ରୟ ନେଉଥାନ୍ତି । ପ୍ରେମଟି ଦୁର୍ଜୟ ଶପୁ ନକେ ମୃତ୍ୟୁଞ୍ଜୟ ଜିଣିବାକୁ ଯାଇ ନିଜେ ହାରିଲେ ସା' ପାଖେ । ଏଠି ସେଇ ସତ୍ୟ ଉପଲବ୍ଧ ହୁଏ, ହୃଦୟଙ୍ଗମ ହୁଏ ।

ଖାଦ୍ୟ ଓ ପ୍ରେମର ଚାହିଦା ପୂରଣ କରିବା ପାଇଁ ଅନ୍ତେବାସୀଗଣ କେଣ୍ଟିନ୍ ଅଡ଼କୁ ଧାଆନ୍ତି । ହ' ଅର ନହେଲେ ଷ ଅରେ, ସୂର୍ଯ୍ୟଦେବ ବାରୁଣୀ ଅଭିମୁଖ ହେଲବେଳେ । 'ରାସ୍ତା ଏ ପ୍ୟାରକା' ଶ୍ରେଷ୍ଠ କୃଷ୍ଣଚୂଡ଼ା ଗଛର ସିମେଣ୍ଟ ଚାନ୍ଦନୀ ଦେଇ । ମହିଳା ହଷ୍ଟେଲ୍ ପାଖ ଦେଇ । ରୋମାଣ୍ଟିକ ଚେତନାଗ୍ରସ୍ତ ଓମର ଖାୟାମୀ

ଆସ୍ତାଟିଏ ଅଧିକସ୍ନ କରି ପଢ଼ୁଥିଲେ ଗୁଣୁଗୁଣୁ ହୋଇ ଗାଇବ 'beneath the bough, a book of vese, a jug of wine and thou', କୁତ୍ସିତୁଡ଼ା ଗଛର ଗୁଳରେ, ଗୃନ୍ଧାଗାରେ ବସିଗଲେ ମନେପଡ଼ିବ ଲାଇବ୍ରେରୀ ବନ୍ଧୁ କଥା, ପାଖ ଗୁମୁଟୀରେ ଗୋପ୍ତରେ ବଣ୍ଟି ହେଉଥିବା ଦେଶୀ ବୋତଲ କଥା; ଖାଲି ଅଭାବ 'Thou'ଟି ।

'Thou'ଟିଏ ଖୋଜୁଛନ୍ତି ? ଶତ୍ରୁଘ୍ନ ବାବୁ ତ ସେଇ ସନ୍ଧାନରେ କେଣ୍ଟିନ ଆଡ଼କୁ ଗ୍ଲଲିଛନ୍ତି । ତାଙ୍କର ପିଛା ଧରନ୍ତୁ । ହୁଏତ ପାଇଯିବେ ।

ଆମ ଦେଶର ଶିକ୍ଷାବିତ୍‌ମାନେ ଶିକ୍ଷାକ୍ଷେତ୍ରରେ ପାଶ୍ଚାତ୍ୟ ସମ୍ଭାରକ, ମନୀଷୀଙ୍କଠାରୁ ପଛରେ ପଡ଼ିଯିବେ ଭାବୁଛନ୍ତି । ହୋଇପାରେ, ଆମ ଦେଶର ରକ୍ଷଣଶୀଳ ଶିକ୍ଷା ବ୍ୟବସ୍ଥାରେ ତରୁଣତରୁଣୀ ପାଖେ ପାଖେ ଲାଗାଲାଗି ହୋଇ, କାନ୍ଧରେ ହାତଦେଇ, ଚକୋଲେଟ୍ ଖୁଆଖୋଇ ହେଉ ନାହାନ୍ତି ଲେକ୍‌ଚର କ୍ଲାସରେ । କିନ୍ତୁ ଶିକ୍ଷାବିତ୍‌ମାନେ କ'ଣ ଯୁବକ ଯୁବତୀଙ୍କର ଦୈହିକ ଆବଶ୍ୟକତା ପ୍ରତି ଅଣ୍ଟିଗୁଳ ଦେଇଛନ୍ତି ? ବିହାରମାନଙ୍କରେ ଛାତ୍ରଛାତ୍ରୀଙ୍କ ଏକ ହଷ୍ଟେଲ, ଏକ ପ୍ରକୋଷ୍ଠ, ଏକ ଶଯ୍ୟାର ବ୍ୟବସ୍ଥା କରି ପାରି ନ ଥିବାରୁ ସହାବସ୍ଥାନ ସହପାଠର ନାନା ବ୍ୟବସ୍ଥା ଖଞ୍ଜା ଅଛି କେମ୍ପାସମାନଙ୍କରେ ଲାଇବ୍ରେରୀରେ, ପ୍ରାକ୍‌ଟିକେଲ କ୍ଲାସରେ, କମ୍ପ୍ୟୁଟର ସେଣ୍ଟାରରେ ।

ଏବଂ ମହିଳା ହଷ୍ଟେଲର ଅନତି ଦୂରର ଗୋଟିଏ ନାତିବୃହତ୍ତ୍ ଏକ କେଣ୍ଟିନ୍‌ରେ । ସେଠାରେ ଗୋଟାଏ ବେଲ୍ଟି ଗ୍ଲ' ଜଳଖିଆର ଖୁବ୍ ଭିଡ଼ ଆରମ୍ଭ ହୋଇଯାଏ; ଖାତମିଲ୍ ପରଷା ସରୁ ନ ସରୁଣୁ । ଶତ୍ରୁଘ୍ନ ବାବୁ ଇଲାକାର ଜଣେ ଭି. ଆଇ. ପି. ହୋଇଥିବାରୁ ତାଙ୍କ ପାଇଁ ସଦାସର୍ବଦା କିଛି ନା କିଛି ଥାଏ । ସେ ସବା ପଛରେ ଯାଆନ୍ତି । ବହୁତ କାମ ଓ ତାଙ୍କର ଗୃହଅଡ଼େ । କାହାକୁ ଗ୍ଲଡ଼ି ସେ ଯେ ଯିବେ ସେ କାହା ପାଖ । ତାଙ୍କର ସ୍ୱୀମଗ୍ଲ ସାଙ୍ଗ ଛଜଣ ବଡ଼ିଗାର୍ଡ଼ ପରି ପାଖେ ପାଖେ ଥାନ୍ତି । ସେମାନଙ୍କର ବା ଅନ୍ୟ କାହାରି ସାହସ ନାହିଁ ଶତ୍ରୁଘ୍ନଙ୍କୁ 'ଶତ୍ରୁଘ୍ନ ବାବୁ' ବୋଲି ଡାକିବେ । ସମସ୍ତେ ତାଙ୍କୁ 'ଗୁରୁ' ବୋଲି ଡାକନ୍ତି । ସନ୍ଧ ପେଟଟା

ଟିକିଏ ବାହାରିଥାନ୍ତା ଓ କିଛି ଚୁଳ ଗାଲରେ ଗଜେଇଥାନ୍ତା ତେବେ ସେ ଫିଲ୍ମର ପ୍ରେମନାଥ ପରି ଦିଶୁଥାନ୍ତେ ଓ 'ବାବା' ଆଖ୍ୟା ପାଇଥାନ୍ତେ ।

ଶତ୍ରୁଘ୍ନ ଓ ଚ୍ୟାମଚ୍ୟାଗଣ ପହଞ୍ଚିଲାବେଳକୁ କେଣ୍ଟିନ୍‌ରେ ପ୍ରାୟ କେହି ନ ଥାନ୍ତି । ଯାହା ଜଣେ ଦି'ଜଣ ଥାନ୍ତି ସେମାନେ ବି ପ୍ରାଣଭୟରେ ଉଠିଚାଲିଯାନ୍ତି. ଶତ୍ରୁଘ୍ନଙ୍କୁ ନମସ୍କାର ଜଣାଇ । ଏମାନେ ଆସନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ମହିଳା ହଷ୍ଟେଲରୁ ଓହ୍ଲାଇ ଆସନ୍ତି ଚାରିପାଞ୍ଚଜଣ ଅନ୍ତେବାସିନୀ, ଠିକ୍ ଯିମିତି ତୃଷାର୍ତ୍ତ ହରିଣୀପଲ ପାହାଡ଼ରୁ ସୂର୍ଯ୍ୟାସ୍ତ ସାଙ୍ଗେ ସାଙ୍ଗେ ଓହ୍ଲାଇଥାନ୍ତି ପାହାଡ଼ରୁ ନାତିଦୂରର ପଲ୍ୱଲ ବା ଝରଣାଟିଏ ଆଡ଼କୁ ।

ମୁହଁ ଦେଖି ଶତ୍ରୁଘ୍ନ ବାବୁ ( sorry ଗୁରୁ ) ଚରିତ୍ର ଜାଣିପାରନ୍ତି । କେଣ୍ଟିନକୁ ସଦ୍ୟ ମଫସଲ ଅଞ୍ଚଳରୁ ଏଡ଼୍‌ଭେଞ୍ଚର ପାଇଁ ସହରକୁ ପଳାଇଆସିଥିବା ଅଜ୍ଞାତକୁଳଶୀଳ ( ଇଂରାଜୀରେ ବାଷ୍ଟାର୍ଡ଼ ) ଟୋକାକୁ ଦେଖିଦେଲାମାତ୍ରେ ଗୁରୁ ତା'ର ପାଗଳପଣିଆ ଜାଣିପାରିଲେ । ପ୍ରଥମେ ତାକୁ ଯେଉଁ କାମ ବରାଦ୍ କରିଥିଲେ ତାହା ହେଲା ତାଙ୍କ ପାଇଁ ଓ ଦଳବଳ ପାଇଁ ଜଳଖିଆ ମହଜୁଦ ରଖିବା । ଦ୍ୱିତୀୟ କାମ ହେଲା କେଉଁ କେଉଁ ଅନ୍ତେବାସିନୀ କେବେ କେବେ କେଣ୍ଟିନକୁ ଆସିବେ ସେମାନଙ୍କୁ ଯଥାସମୟରେ ଖବର ଦେଇ ଡାକି ଆଣିବା, ଗୁରୁଙ୍କ ନାଆଁ ଉଚ୍ଚାରଣ କରି ।

ଗୁରୁ ସଦଳବଳେ ଆସିଗଲା ପରେ ଓହ୍ଲାଇଆସନ୍ତି ଚ୍ୟାମେଲି, ଚର୍ଚ୍ଚିତା, ଚନ୍ଦନୀ ଏବଂ ବୈପରୀତ୍ୟରେ ହସ୍ତିନୀ, ମାତଙ୍ଗିନୀ ଓ ନିତମ୍ବିନୀ, ସମସ୍ତଙ୍କ ଚେହେରା, ଅଙ୍ଗଭଙ୍ଗୀ, ବେଶଭୂଷା ଷୋଡ଼ଶୀ ନାୟିକା ବା ଟୀନ୍‌ଏଜ୍ ଝିଅ ପରି । ଅନ୍ତତଃ ନିଜକୁ ସେମାନେ ସେଇ ବୟସର ବୋଲି ଭାବନ୍ତି, ଯଦିଓ ପଚିଶ ତଳକୁ କେହି ନୁହନ୍ତି । ମାୟାଧରୀ ଛନ୍ଦରେ ଗାଇହେବ "ବୟସ ତୁମକୁ ସତ୍ୟ ସେତେବେଳେ ଷାଠିଏ, ସଞ୍ଚିରଖିଥିଲେ ବୁକୁରେ ପୀରତ ମାଠିଏ" ସେଇ ଛନ୍ଦରେ ଗୁରୁ ଓ ତାଙ୍କ ଦଳବଳଙ୍କୁ ଲକ୍ଷ୍ୟ କରି ଗାଇହେବ, "ରସିକନାଗର ପାଡ଼ରୀ ପୋକ ଖୋଡ଼ାଚୁଲ୍ଲା ପରି ଦିଶୁଛି ନାକ, ବତଉ ସମାନେ ଇନ୍ଦ୍ରମୁଣ୍ଡା, ପାଇଲ କାହିଁ ?" ଘଷା ପଥର ଓ ହଳଦୀ ପିଠଉ ବ୍ୟବହାର କରି କରି ହାତ ମୁହଁରୁ ଚୁଳ ଯିମିତି ଶମୁଭ୍ କରି ପାରି ନାହାନ୍ତି

ନାୟିକାଗଣ, ହ୍ୱିରୋମାନେ ବି ସିମିତ ଫରେନ୍ ସେଣ୍ଟ୍ ବ୍ୟବହାର କରି ଦେହରୁ ଗନ୍ଧ ଦୂରକରି ପାଣିପୋହାନ୍ତି ବା ପୋମେଣ୍ଟମ ପାଉଡ଼ରରେ ମୁହଁର ଗାତ ପୂରଣ କରି ପାରି ନାହାନ୍ତି ।

ସାପ୍ତାହିକ ବେଣ୍ ଜମେ । କେଣ୍ଟିନ୍ କ୍ଲବରେ ପରିଣତ ହୁଏ । ହୁରିପାଟି ହଟରେ ଚିନ୍ତଗୁଡ଼ିକ ଉଠେ ପଡ଼େ । ପାଞ୍ଚଟିକିଆ ଗାଳି ଗାର୍ଜିଣୀ କାନ୍ଥର କଳ୍ପ କଳ୍ପ ପଲସ୍ତରା ବି ଝଡ଼ିପଡ଼େ । ବୟଫ୍ରେଣ୍ଡ ଗାର୍ଲଫ୍ରେଣ୍ଡମାନଙ୍କ ମହାମିଳନ ଧୂଳିରେ କଫି କପ୍ ଉପରେ ଆଲୋଚିତ ହୁଏ ନାରୀ ପୁରୁଷଙ୍କ ରହସ୍ୟମୟ ବିବିଧ ସମ୍ପର୍କ, କ୍ଲାସରେ ଅଧ୍ୟାପକମାନଙ୍କ ରୋମାଣ୍ଟିସିଜମ୍, ବକ୍ତୃତା ଶୈଳୀ ତଥା Oddities ବା ବେଆଡ଼ିଆ ସ୍ୱଭାବ । କେଉଁ କେଉଁ ଦିନ ବି ଅଦୂରର ନିର୍ଜନ ବସ୍ତୀର୍ଣ୍ଣ ପ୍ରାନ୍ତରରେ ସଙ୍ଗୀତ, ଅଭିନୟ ଆଦି ମନୋରଞ୍ଜନ କାର୍ଯ୍ୟକ୍ରମ ଥାଏ । ବାପ ମାଆ ଯଦି ପ୍ରସଙ୍ଗକ୍ରମେ ମନେପଡ଼ନ୍ତି ତେବେ ସେମାନଙ୍କ ଅମିତ, ଅଦମ୍ଭିତ, କୃପଣତା ଓ ମରହଟିଆ ଗୁଣ ଅଲୋଚିତ ହୋଇ ମନ୍ତବ୍ୟମାନ ଦିଅନ୍ତିଆ ହୋଇଥାଏ ।

ଭିନ୍ନ ଭିନ୍ନ ପ୍ଲେଟରେ ଖାଦ୍ୟ ପରଷା ହୋଇଥିଲେ ମଧ୍ୟ ସେସବୁ ସର୍ବ-ସାଧାରଣଙ୍କର । ଜଣକ ପ୍ଲେଟରୁ ଆଉ ଜଣେ ଅବାଧରେ ଖାଇ ପାଇ ପାରନ୍ତି । ସକୋଳି, ବଗିରୁ କାମୁଡ଼ି ନେଇ ଲାଳ ଝରିଆସୁଥିବା ଅନ୍ୟ ଜଣକ ପାଟିରେ ଅବଶିଷ୍ଟାଂଶ ପୁରାଇ ଦେଲେ ମୁଖହ୍ୟାଦାନ କରି ଗାର୍ଲ ଫ୍ରେଣ୍ଡଟି ଗର୍ଭଦାନ୍ତ କରିଦିଏ । ତା'ପରେ ହସ, ହସ, ହସ, କାଶ, ଛିଙ୍କ । ଅଜ୍ଞାବହ ନୂଆ ହୋଟେଲ ବୟ ହାଙ୍କେ ହାଙ୍କେ ପ୍ଲାଷ୍ଟିକ୍ ଗ୍ଲାସରେ ପାଣି ବଢ଼ାଇଦିଏ । କେଣ୍ଟିନ୍ ପର୍ବ ଶେଷ ହୁଏ; ବାହାରର ଶୀତଳ ପବନ ଧକ୍କା ଦେଇ ପଶି ଅଳିନ୍ଦ ବାଳଗୁଡ଼ାକୁ କପାଳରେ ଥଳଥଳ କଲେ । ସେତେବେଳକୁ ଦ୍ୱିତୀୟା ଜହ୍ନ ଦୃଶ୍ୟଅଦୃଶ୍ୟମାନ ଅବସ୍ଥାରେ ଚେନାଏ କୋଡ଼ିଏ ପଇସିଆ ବୋଇଲ କଖାରୁ ପରି ପାଣିଟାଙ୍କିର ପେଟତଳକୁ ଝୁଲୁଥାଏ । କୃଷ୍ଣଚୂଡ଼ା ଗଛ ଦେଇ କବିଲ୍ପବାଡ଼ନ୍ନେ ଓଡ଼ିଆ ଗିତ କରୁଥିବା ଗ୍ରୁପଟି—ପାଇଥିବାବେଳେ ରସିକତାରେ ଗାଇଦିଏ, "ଏଇ କୃଷ୍ଣଚୂଡ଼ାତଳେ ସେଦିନ ପ୍ରିୟାର କରକଙ୍କଣ ଭିଡ଼ିଥିଲା ମୋର ଗଳେ ।" ବା "ଦ୍ୱିତୀୟା ରଜନୀରେ ମୋ ପ୍ରାଣହେ, ଦିନେ ପଲଙ୍କ-ପରେ ଥିଲକ ଶୋଇ ସେ ।"

ଘନେ ଏମିତ ପଦ୍ମଲ ସନ୍ତରେ ମଜ୍ଜନ୍ତ୍ରି ଲାଗୁଛୁ, ଦଳ ଭଡ଼ଫାଟ୍ ଧରବାର ଉପକ୍ରମ କରୁଥାନ୍ତି ଏବଂ ଦ୍ରବ୍ୟଭକ୍ତ ବୁଲକୁତ୍ରାଟିଏ ପର ଲକ୍ଷ ହଲଇ ହଲଇ ନୂଆ କେଣ୍ଟିନ୍‌ବୟ "ଗୁରୁ'ଙ୍କୁ ଅନୁସରଣ କରୁଥାଏ ଗୁରୁଜୀଙ୍କ ଶ୍ରୀମୁଖରୁ ବାଣୀ ନିସୃତ ହେଲା "ବତ୍ସ ! ଶୁଣ ।" ବତ୍ସ ନ ଘରେ ନ ତଟ୍ଟେ । ହଠାତ୍ ଖାଡ଼୍‌ଗା ।

ତୋର ନାଆଁ କ'ଣ ?

ରଘୁ ।

ବଲକୁଲ ମନ୍ଦ । ଏଠି ରଘୁ ଫଘୁ ଚଳିବ ନାହିଁ । ଆଜିଠୁଁ ତୋ ନା ବାହାଦୁର । କାଲି ସକାଳୁ କେଣ୍ଟିନ୍ ଗ୍ରାଉଣ୍ଡ ଏକନମ୍ବର ହଷ୍ଟେଲର ତିନି ନମ୍ବର ଉପରତାଲା କୋଠରୀକି ଆ । ମୁଁ ଓ୍ୱାର୍ଡ଼େନ୍‌କୁ କହି କାଲିଠୁ ତୋତେ ଓ୍ୱାର୍ଡ଼ବୟ କରିଦେବ । ବୁଝିଲୁ, ହୋଟେଲ ବୟ ନୁହେଁ, ହୋଷ୍ଟେଲ ବୟ । ହୋଷ୍ଟେଲ ନପରୀ ।

ରଘୁର ପଦୋନ୍ନତି ହେଲା, ନାଆଁ ବଦଳ ସଙ୍ଗେ ସଙ୍ଗେ ଭଲ କାମର ଅର୍ୱାର୍ଡ଼ ତ ଅଛି ! ନାଆଁ ପରିବର୍ତ୍ତନ ପରେ, ପଦୋନ୍ନତି ପରେ, ରଘୁଆର ପ୍ରଗତି ଉନ୍ନତି ଗାଣିତିକ ନ ହୋଇ ଜ୍ୟାମିତିକ ହାରରେ ସଂଘଟିତ ହେଲା । ରୂପରେଖ ସାଇଜ୍ ବଢୁଥିରେ ଭୌତିକ ଅବଶ୍ୟାସ୍ୟ ପରିବର୍ତ୍ତନ ଲକ୍ଷ୍ୟ କରିହେଲା ।

ଶତ୍ରୁଘ୍ନ ବାବୁ ଓରଫ ଗୁରୁ ଯେଉଁ ପାଞ୍ଚୋଟି 'ପ'ର ବିଶ୍ଳେଷଣ କରିଥିଲେ ତହିଁର ଷଷ୍ଠ 'ପ' ହେଲା ପ୍ରଫେସର । ପ୍ରଫେସର ଅଭିନବ ତ୍ରିପାଠୀ, ଯାହାଙ୍କ ଯୋଗୁଁ 'ଗୁରୁ' ରଘୁଆ କୁ ବାହାଦୁର ପଦକୁ ଆଣିଥିଲେ । ଡକ୍ଟର ତ୍ରିପାଠୀ କୁଆଡ଼େ ଆମେରିକା କୁ ବିଲାତ ଯାଇଥିଲେ କାଳିଦାସଙ୍କ ପ୍ରତିଭା ବିଷୟରେ ଗବେଷଣା କରିବା ପାଇଁ । ବିଦେଶରେ କିଛି କାଳ ରହିବାରୁ ଆମ ଏ ଦେଶର ରହଣି ଚଳନି ସେ ଭୁଲି ପାରିଲେ ନାହିଁ । ସେଠାକାର କିଛି ସ୍ୱଦେଶକୁ ଆଣିଲେ ନାହିଁ । ପିଲାଏ ତାଙ୍କୁ ଗୁଣୀ ବୋଲି କୁହନ୍ତି; ଶାସ୍ତ୍ରବିଦ୍ୟା, ଲୋକବିଦ୍ୟା ନାହାନ୍ତି । ଅଶ୍ରମର କଣ୍ୱ ମହର୍ଷି ପରି ଚେହେରା; ଶ୍ମଶ୍ରୁଳ । ଅହୋରାତ୍ର ଯଜ୍ଞାନୁଷ୍ଠାନ ଶାସ୍ତ୍ରାଧ୍ୟୟନରେ ବ୍ୟାପୃତ ଥିବାରୁ

ମୃଦୁହାସ୍ୟମକୁ ସେ ଗୌଣ ବୋଲି ମଣନ୍ତି । ସ୍ୱଭାବତଃ ଅନ୍ୟମନସ୍କ । ଆଶ୍ରମରେ କେହି ଦୁଷ୍ମନ୍ତ (ଦୁର୍ବୃତ୍ତ) ନାମକୁ ମୃଗୟାରେ ଆସି ଶକୁନ୍ତଳାକୁ ପ୍ରେମ କରି ଗର୍ଭବତୀ କରି ରାଜପ୍ରାସାଦକୁ ଫେରି ଭୁଲି ଯାଉଥିବା ଖବର ପାଇ ମହର୍ଷି ଦୁର୍ବାସା "ଯେନ ପୂଜ୍ୟ ପୂଜା ବ୍ୟତିକ୍ରମ ଫଳ" କହି ଅଭିଶାପ ଦେଇ ଚାଲି ଆସିଥିବା ଶୁଣିଲେଣି ତାହା କଣ୍ୱ ଅବହିତ ହୋଇ ନ ଥିବେ । ହରିଣପଲ ପାଳିବାର ଦାୟିତ୍ୱ ଅର୍ଥାତ୍ ହଷ୍ଟେଲ ଦାୟିତ୍ୱ ସେ କାହାଙ୍କ ନେଇଛନ୍ତି କେହି ବୁଝିପାରନ୍ତି ନାହିଁ । ଧର୍ମପତ୍ନୀ ଗୌତମୀ ବି କେବଳ ଶ୍ରେଷ୍ଠ କୃଷ୍ଣଚୂଡ଼ା ଫୁଲଗଛଟିର ଲାଳନ ପାଳନ କାର୍ଯ୍ୟରେ ଅହୋରାତ୍ର ବ୍ୟସ୍ତ । ଅସ୍ଥି ଚର୍ମସାର ହୋଇ ଶୈଶବ ଓଡ଼ଣା ଟାଣି ଏମିତି ଜୀବନଯାପନ କରନ୍ତି ଯେ ଲାଜରେ ସ୍ୱାମୀଙ୍କ ବଦନ ଦେଖନ୍ତି ନାହିଁ; ସିମିତି ସ୍ୱାମୀ ତାଙ୍କୁ ମାତୃରୂପା ମୂର୍ତ୍ତି ଭାବି ସମ୍ମାନ ଦିଅନ୍ତି, ଦୂରରେ ରହନ୍ତି ।

ଭୁଲ୍‌ରେ କେମିତି କେଜାଣି ଶାଶ୍ୱତୀ ନାମ୍ନୀ ପରମାସୁନ୍ଦରୀ କନ୍ୟାରତ୍ନଟିଏ ଦୁହେଁ ଅକସ୍ମାତ୍ ପାଇଥିଲେ ଓ ଏ (ଦୁର୍) ଘଟଣାର ସ୍ମାରକୀ ସ୍ୱରୂପ କୃଷ୍ଣଚୂଡ଼ାଟିଏ ପୋତିଥିଲେ । ଶେଷ ଶିକ୍ଷଣ କାଳରେ ଡକ୍ଟର ତ୍ରିପାଠୀଙ୍କୁ 'ବୁଢ଼ା' କୁହାଯିବ ନାହିଁ; ବଙ୍ଗଳାରେ 'ଗୋବରବୁଦ୍ଧି' ଇଂରାଜୀରେ ଇନୋସେଣ୍ଟ ସିମ୍‌ପ୍‌ଲ୍‌ଟନ କୁହାଯାଇପାରେ । ଶତ୍ରୁଘ୍ନ ହଷ୍ଟେଲର କାର୍ଯ୍ୟତଃ ସର୍ବମୟ କର୍ତ୍ତା ଥିବାରୁ ତାଙ୍କର ପ୍ରସ୍ତାବ ଅନୁରୋଧକ୍ରମେ ସେ ରଘୁକୁ ପୁଳାଏ ଭେରିଫିକେଶନ ନ କରି ରଖିଦେଲେ ।

ସେ ଆଧୁନିକ ଶିଷ୍ୟମାନଙ୍କ ସମ୍ପର୍କରେ ଯେତିକି ଅସିଛନ୍ତି ସେଥିରୁ ସେ ଅନୁଭବ କରିପାରିଛନ୍ତି ଯେ ଦୁନିଆଁ ତାଙ୍କ ଗୋଡ଼ତଳୁ ଖସିଯାଇଛି । ଷୋଳବର୍ଷ ତଳେ ଶାଶ୍ୱତୀ ଜନ୍ମ ବର୍ଷରେ ଯେଉଁ ଫୁଲଗଛ ରୋପିଥିଲେ ତାହା ଏବେ ପୁଷ୍ପବତୀ । ପୂର୍ବକଥିତମତେ ପତ୍ରକୁ ପତ୍ରକୁ ପେଲିଦେଇ ଚଢ଼ିଗୁଡ଼ାକ ଆଗକୁ ବାହାରି ଫୁଲି ହେଲେଣି । ଡକ୍ଟର ତ୍ରିପାଠୀ ଓ ଗୌତମୀ ଲତାଟିର ନିଜେ ନିଜେ ଦେଖ ଚାହିଁ ଦାୟିତ୍ୱ ନେଇ ବଢ଼ାଉଥିଲେ । କାଳେ ବୁଲାଗାଈ ଖାଇଯିବ ବୋଲି ନିଜ ଖର୍ଚ୍ଚରେ ତାରବାଡ଼ ଦେଇଥିଲେ । ଏବେ ବଡ଼ ଘେର ଉଠାଇ ଦେଇ ଗୃହଟିଏ କରି ଦେଇଛନ୍ତି, ଅଗ୍ନିକ ଘୂର୍ଣ୍ଣିବାତ୍ୟା ଆସି ଓପାଡ଼ି ଦେଇପାରେ ଭୟକରି କୃଷ୍ଣଚୂଡ଼ାକୁ ଆଶ୍ରୟ ଦେଇଛନ୍ତି ।

ଶାଶ୍ୱତୀଙ୍କ ଡକ୍ଟର ତ୍ରିପାଠୀ ନିଜ ଇମେଜରେ ଗଢ଼ିଛନ୍ତି । ତା'ର ଚରିତ୍ର ଆଚରଣ ନିଜ ତଥା ପତ୍ନୀଙ୍କ ଅନୁରୂପ କରିବା ତାଙ୍କର ଆପ୍ରାଣ ଚେଷ୍ଟା । ଯେତିକି ଫୁରୁସତ ପାଉଛନ୍ତି ସବୁ ସମୟ ତାକୁ ପଢ଼ାଇବାରେ ଲଗାଉଛନ୍ତି । ଗୀତା ଭାଗବତ ପୁରାଣ ଅଭିମୁଖୀ ସବୁ ତାଙ୍କର ଶିକ୍ଷା । ଯଥା ସମୟରେ (ଅବଶ୍ୟ ସାମାନ୍ୟ ଡେରିରେ ସେ ପଢ଼ା ଆରମ୍ଭ କରିଥିଲା) ଝିଅ ପ୍ରାଇଭେଟରେ ପରୀକ୍ଷା ଦେଇ ଯୁକ୍ତ ଦୁଇ ଜୁନିଅର କ୍ଲାସରେ ଭର୍ତ୍ତିହେବାର ଯୋଗ୍ୟତା ଅର୍ଜନ କଲା । ଅଗତ୍ୟା ଡକ୍ଟର ତ୍ରିପାଠୀ କୋଡ଼ରୁ/କବଳରୁ ଛଡ଼ାଇ କିଲୋମିଟର ଦୂରରେ ଥିବା ଏକ ନାମୀ ଓ ଦାମୀ ମହିଳା କଲେଜରେ ଏଡ଼୍‌ମିଶନ୍ କରାଇଲେ । ମିଶ୍ରିତ ସହଶିକ୍ଷା ଥିବା କଲେଜ ପ୍ରତି ଡକ୍ଟର ତ୍ରିପାଠୀଙ୍କ ଆସ୍ଥା ନାହିଁ । ତେଣୁ ଅଦେଖା ହାତଟିଏ ଶ୍ରେଷ୍ଠ ବେଙ୍ଗୁଲିଟିକୁ ନିର୍ଭୟ ନିରାପଦ କୂଅରୁ ଉଠାଇ ନେଇ ଉତ୍ତାଳ ତରଙ୍ଗାୟିତ ମହାସମୁଦ୍ରର ଲୁଣି ପାଣିରେ ଛାଡ଼ିଦେଲା ! ଅଗାଧ ଲୁଣିପାଣିରେ ଚୁବୁଟୁବୁ ହୋଇ ନିଶ୍ୱାସ ରୁନ୍ଧ ହୋଇ ଅଳୁପାଳୁ ହେବାରେ ବିଚିତ୍ର କ'ଣ ?

କିଛି ଦିନ ଧରି ବାପା ନିଜେ ଝିଅକୁ ମଟରରେ ନେଇ ପହଞ୍ଚାଇ ଦେଉଥିଲେ ସେଇ ଅମାପ ଅଟ୍ଟାଳିକାସ୍ଥ ମହିଳା ଅନୁଷ୍ଠାନଟିରେ । କ୍ରମେ କ୍ରମେ ଝିଅ ସାଙ୍ଗସାଥୀ ମେଳ ପାଇ ଯାଅନ୍ତେ ସେ ଆଶ୍ୱସ୍ତ ଓ ନିଃଶଙ୍କ ହେଲେ । ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ସମୁଦ୍ରର ଲୁଣିପାଣିକୁ ଶ୍ରେଷ୍ଠ ବେଙ୍ଗୁଲିଟି ପାଇଁ ମିଠା କରିଦେଲା କିଏ ? ମା'କୁ ସଦ୍ୟ ଛାଡ଼ି ଆସିଥିବା ପୂଷିଛୁଆଟି ଯିମିତି ମା'କୁ ଖୋଜି ଖୋଜି ମ୍ୟାଉଁ ମ୍ୟାଉଁ ହୋଇ ନୂଆ ଘରଟିରେ ଯା'କୁ ତାକୁ ମାଆ ଭାବି ଏଣେ ସେଣେ ଅନ୍ଧସନ୍ଧ ଧାଉଁଥାଏ ଶାଶ୍ୱତୀ ସିମିତି ଲମ୍ବାଚଉଡ଼ା ବରଣ୍ଡାରେ କୋଠରୀ ନମ୍ବର ପଢ଼ି ପଢ଼ି ଯା'ତା ପଛରେ ବୁଲୁଥାଏ । ଚଷମାଧାରୀ ଇଂରାଜୀ ଅଧ୍ୟାପିକାଙ୍କୁ ବିଦ୍ୟାଧରୀ ବୋଲି ଭାବେ । ସାଙ୍ଗସାଥୀମାନଙ୍କ କେଶବିନ୍ୟାସ ଭଙ୍ଗୀ, ପୋଷାକ ପତ୍ର, ଚାଲି ଚଳନ ଦେଖି ସେ ନିଜକୁ ଏକଦମ ମଫି ବୋଲି ଭାବେ । କିନ୍ତୁ ଝିଅମାନଙ୍କର ନିଜକୁ ପରିବେଶ ସହିତ ମିଶାଇ ମିଳାଇ ଦେବା ଶକ୍ତି ଏତେ ପ୍ରଖର ଓ ପ୍ରଚଣ୍ଡ ଯେ 'ମଫୀ' ଶାଶ୍ୱତୀ କେତୋଟି ଦିନରେ 'ମଡ଼' ହୋଇଗଲା । ମଫସଲ ଅଞ୍ଚଳରୁ ପିତୃହୀନ ରଘୁ ଖାଦ୍ୟ ପାନୀୟ ନ ପାଇ ମୂଢ଼ାମିରେ 'ବିହାର'କୁ ଆସି ଗୁରୁଙ୍କ ଦୟାରୁ ଯିମିତି ବଡ଼ ପୋଖରୀରେ କାଆଁଳ ବଢ଼ିଲା

ପରି ଅସ୍ୱାଭାବିକ ଖାତରେ ବଢ଼ିଲା, କୃଷ୍ଣଚୂଡ଼ା ଗଛଟି ଯିମିତ ଗୁରୁପତ୍ନୀଙ୍କ ଲାଳନ ପାଳନରେ ପତ୍ର ଠେଲିପେଲି କଢ଼ଟି ଫୁଲ ହେଲା ଶାଶ୍ୱତୀ ମଧ୍ୟ ତଦ୍ରୂପ ପରିବର୍ତ୍ତିତ ଲାଭକଲା ।

ଯେଉଁଦିନ ପାଣିପାଗ ପ୍ରତିକୂଳ ହୁଏ ବା ସହରର ବଜାରମାନଙ୍କରେ ବିକ୍ଷୋଭ ବା ବିଭ୍ରାଟ ହୁଏ ସେ ଦିନ ପିତୃଦେବ 'ରଘୁ'ଙ୍କୁ କହନ୍ତି, "ବାପା, ଝିଅକୁ ଟିକିଏ ଛାଡ଼ି ଦେଇ ଆସିବୁ ?" ଯିଏ ବଳୀକୁ ବାନ୍ଧିଥିଲା, ଯିଏ ସମୁଦ୍ର ମନ୍ଥନ କରି ପାରିଥିଲା, ଯିଏ ଦୈତ୍ୟକୁଳକୁ ଜିଣିଥିଲା ସାମାନ୍ୟ ହରତାଳକୁ ଭାଙ୍ଗିବା ତା' ପକ୍ଷରେ କ'ଣ ବଡ଼ କାମ ? ରଘୁ ବିଶ୍ୱସ୍ତ ଓ ବାଧ୍ୟ ପିଲା ପରି 'ଗୁରୁ'ଙ୍କ ଆଜ୍ଞା ପାଳିଲା ପରି ବୁଢ଼ାବାବୁଙ୍କ ଆଜ୍ଞା ପାଳନ କରେ । ଯିମିତ ଶକୁନ୍ତଳାଙ୍କୁ ରାଜନଅରରେ ଛାଡ଼ିଦେଇ ଆସି କହିଲା ମାନେ ଶାରଦ୍ୱତ ଓ ଶାର୍ଙ୍ଗରବ ଶକୁନ୍ତଳାଙ୍କୁ ବିନା ବାକ୍ୟ ବିନିମୟରେ ଛାଡ଼ିଦେଇ ବାହୁଡ଼ି ଆସିଲେ । ଖଣ୍ଡିଏ ସ୍ଲେଟ କାଗଜରେ କ'ଣ କ'ଣ ଜିନିଷ ଦରକାର ଲେଖି ନୋଟ୍ ଧରାଇ ଦେଲେ ବାହାଦୁରକୁ କ'ଣ ଏ କାମ ବଳାଇଯିବ ?

ତା' ଛଡ଼ା ରଘୁ ଓ ଆଉ ସେ ରଘୁ ନାହିଁ । ଏ ବର୍ଷର ମଲ୍ଲୁ ଆର ବର୍ଷକୁ ବଢ଼ିଛି । ନାଆଁ ପରିବର୍ତ୍ତିତ ହେବା ସଙ୍ଗେ ଗୁଣର ବି ପରିବର୍ତ୍ତନ । ଗୁରୁଦେବ ନାଆଁର ଯଥାର୍ଥତା ପ୍ରମାଣ କରି ବାହାଦୂର ହୋଇଥିବାରୁ ବାହାଦୂର । ବୀର ବାହାଦୂର ଫତେ ସିଂ, ଠେକୁଆ ନାଚେ ଟିଙ୍ଗ୍ ଟିଙ୍ଗ୍ । କହିବା ବାହୁଲ୍ୟ ଗୁରୁଙ୍କଠୁ ଦୀକ୍ଷା ନେଇ ତାଙ୍କର ନିଘ୍ନ ତାଲିମ କେନ୍ଦ୍ରରୁ ଶିକ୍ଷା ପାଇ ବାହାଦୂର କି ପୁରୁଷ କି ମହିଳା ଉଭୟଙ୍କ ହଷ୍ଟେଲ ଅନ୍ତେବାସୀଙ୍କ ପ୍ରିୟଭାଜନ ନୁହଁନ୍ତି ପ୍ରୀତିଭାଜନ ହେଲା । ସବୁବେଳେ ଯୁଅଡ଼ୁ ଶୁଭିବ 'ବାହାଦୁର' 'ବାହାଦୂର' ଡାକ ।

ବଜାରର ଦାମଗିଛ ଦାୟିତ୍ୱ ତାରି ଉପରେ । ଥରକୁ ଥର ଟେଲିଫୋନ କରିବା ଟେଲିଫୋନ ଶୁଣିବା, ହଷ୍ଟେଲରୁ ହଷ୍ଟେଲକୁ ଚିଠିପତ୍ର ଅଣାନିଆ କରିବା ଏପରି କି ତାଜମହଲ ଆଦି ବଡ଼ ବଡ଼ ପଞ୍ଚତାରକା ହୋଟେଲ ସହିତ ସମ୍ପର୍କ ରଖିବା ଆଦି ଯାବତୀୟ ଘରୋଇ ତଥା ବୈଦେଶିକ ବିଭାଗର ଦାୟିତ୍ୱ ତାରି ଉପରେ । ପିଲାମାନଙ୍କ-ଠାରୁ ବକ୍‌ସିସ୍, ପୁରସ୍କାର, ଖାନାପିନା ଟଙ୍କାପଇସା ଛଡ଼ା ବିବିଧ ପୋଷାକ ପତ୍ର

ପାଇ ବାହାଦୁର ଛାତ୍ରଫ୍ଲାଇ ଦାଣ୍ଡରେ ବୁଲେ । ବେଙ୍କରେ ନକଲି ଜନ୍ମଜନ୍ମଥ ଟେନ୍‌ରେ ଲିକେନ୍ ଝୁଲାଇ ଯେତେବେଳେ କେମ୍ପାସରେ ଘୁରିଫେରି କରେ ସେ ହେଲେ କହିବ ଯେ ଜଣେ ମାତବର ପି. ଜି. ଛାତ୍ର ଅଥବା ଜୁନିଅର ଲେକ୍‌ଚରର । ସେ ବଂଶୀ ବଜାଏ, ସୁସୁରିରେ ସିନେମା ଗୀତ ଗାଇପାରେ, ବୃନ୍ଦାବନ ରାସରେ କୃଷ୍ଣଚୂଡ଼ା ମୂଳରେ ବସି ଜୀବନ ଉପଭୋଗ କରେ ।

ଗୁରୁ ଶତ୍ରୁଘ୍ନ କିନ୍ତୁ ଏ ଭିତରେ ଚାଲିଗଲେଣି କେମ୍ପାସ ଛାଡ଼ି । ନାନା ଅଳରେ ବୃତ୍ତିବର୍ଷ ରହିଲେ । ଶିଷ୍ୟଙ୍କୁ ଦୀକ୍ଷାନ୍ତ ଭାଷଣଟିଏ ଦେଇଗଲେବେଳେ ଦୁଇଟି ନିଜ ଜୀବନର ପାଥେୟ କରି ଶତ୍ରୁଘ୍ନ ମହାନ୍ତି ବିହାର ଛାଡ଼ିଲେ । ଗୋଟିଏ ହେଲା କର୍ମ ହିଁ ଜୀବନ ମାଷ୍ଟର—ଯାହା ବାସ୍‌ରେ ଟ୍ରେନ୍‌ରେ ଗଲାବେଳେ ଧରିଥିବେ । କେହି ପଚାରିଲେ କହିବେ ଓ. ଏ. ଏସ. ବା ଆଇ. ଏ. ଏସ୍. ଦେଉଛନ୍ତି । ଅନ୍ୟ ଚାକିରି ସେ କରିବେ ନାହିଁ । ଅଟେଲ କଥାହେଲା ଥାର୍ଡ଼ କ୍ଲାସ ପାଇବେ, ଇଣ୍ଟରଭ୍ୟୁ ପାରିବେ କି ଢ ଦୂରର କଥା । ଉନଟା ଖଣ୍ଡେ ପେପର ଡିଜେକ୍ଟ ହବ । କବମ ପେପର ମେକ୍‌ଅପ୍ କରି ପାରିବନି । ଦ୍ୱିତୀୟ ଟିକଟି ହେଲା ଆଦିବାସୀ ମହିଳା ହଷ୍ଟେଲରେ ସମ୍ପୃକ୍ତ ଏକ କୋଣାର୍କ ମୂର୍ତ୍ତିପ୍ରତିମ ନାରୀ, ଜୀବନ ସଙ୍ଗିନୀ । ଜାତିଧର୍ମନିରପେକ୍ଷ ରାଷ୍ଟ୍ରରେ ଆଦିବାସୀଙ୍କ ଅଗ୍ରାଧିକାର ଥିବାରୁ ସ୍ତ୍ରୀଙ୍କ ଜରିଅରେ ଖାଦ୍ୟପାନୀୟ ଯୋଗାଡ଼ କରିହବ, ଚାକିରି ନ ପାଇଲେ ବି । 'ଗୁରୁ ଅଶ୍ରମ ଛାଡ଼ି ଚାଲିଯିବାର ଅନେକ ଦିନ ପର୍ଯ୍ୟନ୍ତ ଅନ୍ତେବାସୀ ଅନ୍ତେବାସିନୀମାନେ ଶୋକାକୁଳ ହେଲେ, ଛାହିବା ବାହୁଲ୍ୟ, ବାହୁନି ବାହୁନି ଝୁରିଲେ ।

ମହିଳା କଲେଜ ସାମନାରେ ଯେଉଁ ଶଙ୍ଗାଟକ/ଛକ ତାକୁ ତ୍ରିବେଣୀ ସଙ୍ଗମ ଆଖ୍ୟା ଦିଆଯାଇପାରେ । ବିହାରର ଓ ମହାବିଦ୍ୟାଳୟର ଛାତ୍ରଛାତ୍ରୀଙ୍କର ସେଠି ଦିବାହବିବା ସମ୍ପର୍କ, ସଂଘର୍ଷ । ସବୁ ବାନ୍ଧ ଛାଡ଼ା ହୁଏ ସେଠି । ହେଲେପାର୍ ମଧ୍ୟଯୁଗର ନାଇଟ୍ ପରି । ନାରୀଜାତିର ହିତସାଧନ କରିବା ଓ ସମ୍ମାନ ଦେଖାଇବା ପାଇଁ ତା' ଜୀବନ ଉତ୍ସର୍ଗୀକୃତ । ପ୍ରତ୍ୟେକ ଝିଅକୁ ସେ ଉଠାଏ ଯେତେ ଭିଡ଼ ଭିତରେ ଥିଲେ ବି । ତାଙ୍କୁ ପଇସା ମାଗେ ନାହିଁ; ମାତ୍ର ଭୟରେ ବିହାରର ଯୁବକଙ୍କୁ ବି ହାତ ପତାଇ ମାଗେ ନାହିଁ ।

ଛକରେ କ'ଣ ନ ମିଳେ ? ଗୁଟ୍‌ଖା, ଫୁଟୁକା, ଚପ୍, ଲସି, ଝଟି, ଉତ୍କଳହେଭେନ ଅନ୍ୟ ଦ୍ରବ୍ୟ ଖାଇବା ପିଇବା ଚଳ । ଯୁବକ ଯୁବତୀ ସକାଳ ନଅରୁ ସନ୍ଧ୍ୟା ପାଞ୍ଚ ଛଅ ପର୍ଯ୍ୟନ୍ତ ଏଇଠି ଠୁଳ ହୋଇ ଖାଦ୍ୟ ତଥା ଖବର ଆଦାନ ପ୍ରଦାନ କରିଥାନ୍ତି । ଏଇଠୁ ଶରତ୍‌ଚନ୍ଦ୍ର ବାବୁ ତାଙ୍କର ଜୀବନସଙ୍ଗିନୀ ସଂଗ୍ରହ କରିଥିଲେ । ବପିନା ଦୋକାନର ପାନ ପାଇଁ ଏ ଛକର ଡାକନାଆଁ । ଶନିବାରର ପାନର ସମସ୍ତେ ବୃନ୍ଦବା ଏଇ ବପିନା ମେଣ୍ଟାଏ । ସେଥିପାଇଁ ବାହାଦୁରଙ୍କୁ ଦିନଟାରେ ଦଶଥର ଧାଇଁବାକୁ ପଡ଼େ । କେତେବେଳେ ଟାଉନବସରେ, କେତେବେଳେ ବାବୁମାନଙ୍କ ସାଇକେଲରେ, କେତେବେଳେ ବା ପଦବ୍ରଜରେ । କଲେଜଝିଅଗୁଡ଼ା ବି ସେଇଠି ବସ୍ ଅପେକ୍ଷା ନାଆଁରେ, ପାନଖାଇବା ଛଳରେ ଶନିବାରର ପି.ନ. କରୁଥିବା ପିଲାଙ୍କୁ ଭେଟନ୍ତି । ଏ ଛକର ମହିମା ଶୁଣି ପୌଢ଼ ବୃଦ୍ଧମାନେ ହୁଏତ ନାସିକା କୁଞ୍ଚନ କରିବେ, ଅଷ୍ଟ କାଷ୍ଠ ହସ ହସିବେ । କିନ୍ତୁ ତାଙ୍କରି ଝିଅମାନଙ୍କର କେତେ କେତେ ଶାଢ଼ୀ, କେତେକେତେ ଗୋଲଡେନ୍ ଟ୍ରାଏଙ୍ଗଲକୁ ଫ୍ରି ଟ୍ରିପ୍ ଏଇଠି ଯୋଗାଡ଼ ନ ହୋଇଛି; ଆମ ଅହମ କେତେ କେତେ ପିତାମାତା କନ୍ୟାଖୋଜା ବା ବରଖୋଜାରୁ ଅବ୍ୟାହତି ନ ପାଇଛନ୍ତି !

ଡକ୍ଟର ତ୍ରିପାଠୀ ଓ ଶ୍ରୀମତୀ ତ୍ରିପାଠୀ ଦିନେ ବେଲକନିରେ ଛିଡ଼ାହୋଇ ସୂର୍ଯ୍ୟାସ୍ତ ଉପଭୋଗ କରୁଥାନ୍ତି । ଦୂରରୁ ଶାଶ୍ୱତୀ କଲେଜରୁ ଫେରୁଥିବାର ଦେଖିଲେ । ଝିଅର କେତେ କ'ଣ ପରିବର୍ତ୍ତନ ନ ହୋଇଛି । ଡକ୍ଟର ତ୍ରିପାଠୀ ଶ୍ରୀମତୀଙ୍କୁ କହିଲେ "ଦେଖ, ଆଜିକାଲି କହୁଁ କହୁଁ ଝିଅର ସତର ଷୋହଳ ବର୍ଷ ହୋଇଗଲାଣି; ଦିନେ ନା ଦିନେ ଝିଅ ପରଘରକୁ ଚାଲିଯିବ । ମୋର ମନେପଡ଼ୁଛି କଣ୍ୱମୁନିଙ୍କ ଶ୍ଳୋକଟି, "ଶକୁନ୍ତଳା ଚାଲିଯିବ ବୋଲି ମୋର ମୁହଁରୁ କଥା ବାହାରୁ ନାହିଁ ଦୁଃଖରେ । ଗୃହୀମାନେ ଝିଅର ବିଚ୍ଛେଦ କିପରି ଭଲ ସହନ୍ତି ।" ଶ୍ରୀମତୀ କହିଲେ ଝିଅକଥା ଛାଡ଼ୁଛ, ଏଇ କୃଷ୍ଣଚୂଡ଼ା ଗଛଟା କଥାଟା ଭାବୁନ । କି ସୁନ୍ଦର ଫୁଲ ଫୁଟି ସୁନ୍ଦର ଦିଶୁଛି ! ଏଇଟା ଯଦି ପଡ଼ିଯାଏ ବା ମରିଯାଏ ତେବେ କେତେ ଦୁଃଖ ନ ହେବ ମୋର । ନିଜ କ୍ଷୀର ଦେଇ ଶାଶ୍ୱତୀକୁ ବଢ଼ାଇଲି ପରି ଯାହାକୁ ବି ବଢ଼ାଇଛି ।"

ଝିଅ ତେଣେ ବଢ଼ି ଚାଲିଛି, ପଢ଼ି ଚାଲିଛି, ମାଡ଼ି ଚାଲିଛି । ଦିନକର ଘଟଣା । ଚତୁର୍ଥ ଅପ୍ସନାଲ ଟେଲରିଂ କ୍ଳାସ ଶେଷ ପିରିୟଡ଼ରେ ଥାଏ । ଅନେକ ଝିଅ

ଗୁଳ୍‌ଗଲେଣି । ମହଲା କଲେଜ ପ୍ରାୟ ଶୁନଶାନ । ପାନ ଦୋକାନ ଆଗରେ ବ କାଁ ଘଁ ଜଣେ ଦଜଣ । ବର୍ଷଣମୁଖର ଦନ୍ୟା ପାଇଁ ବୋଧହୁଏ ଏ ଅବସ୍ଥା । ବହାର ଆଡ଼କୁ ଗିବା ଝିଅ କେହ ନାହାଁ । ଶାଶ୍ୱତୀ ଏବେ ଏବେ very forward march chick ହେବାକୁ ମନ ବଳାଇଛୁ । ଫାଟକ ପାଖରୁ ସେ ଦେଖିପାରଲ ବାହାଦୁରକୁ । ମନରେ ଉତ୍ସ ଆସିଲ । କେତେମାସ ଆଗରୁ ସେ ପୁଅଙ୍କ ମୁହଁ ଗ୍ରହଁ ନ ଥିଲ । ଦୋକାନ ଆଡ଼କୁ ଯାଇ ରସ୍ତାକଡ଼ରେ ଗ୍ରୁଚରେ ବନ୍ଧଖାତା ଜାନ ଛୁଡ଼ା ହେଲ । ବାହାଦୁର ଯିମିତ ବହାର ଆଡ଼କୁ ମୁହେଁଇଛୁ ଶାଶ୍ୱତୀ ତା' ପାଖକୁ ଭଡ଼ିଯାଇ ପଗ୍ଦରଲ —

"ଆପଣ ଆମ କ୍ୱାଟର୍ସ ଦେଇ ଯିବେ ?"

"ଅଜ୍ଞା," ବାହାଦୁରର ପାଟିରୁ ବାହାର ପଡ଼ିଲ ହଠାତ୍ । ଦଗ୍ରୁଦନ ବେ, ବା, ତୁ, ତା, ଶଳା, ଯାବେ ଆଦ ଶୁଣି ଆଜ 'ଆପଣ' ଶୁଣିଲ ବେଳକୁ ବଶେଷତଃ ପ୍ରୋଫେସରଙ୍କ ରୂପସୀ ଝିକ ଝିଅ ମୁହଁରୁ ସେ କୃତକୃତ୍ୟ ହେଲ । ଏ ଝିଅଟିକ ସେ ଯେ ଅଗରୁ ନଜରରେ ନ ରଖିଛୁ ତା' ନୁହେଁ ତେବେ ତା' ବସ୍ସରେ ଅନ୍ୟମାନଙ୍କ ତୁଳନାରେ କଣ୍ଟ, କଅଁଳ; ଦୁଧଖିଆ ଛୁଆ, ପୁରା ପର ଉଠି ନ ଥିବା ବ୍ରଏଲର ଚକେନ୍ । ବେଳକାଳ ଆସିଲେ ସମସ୍ତ ସୁଯୋଗ ଆସିଲେ ଦେଖାଯିବ ।

କନ୍ତୁ ବେଳକାଳ ସୁବଧାସୁଯୋଗ ଗୁରୁ କୃପାରୁ ଝିକଏ ସହଳ ଅସିଗଲ ପର ଜଣାଗଲ, ପତର ଠେଲ କଢ଼ଗୁଡ଼ାକ ଅବେଳରେ ଫୁଟିଗଲ ପରି । ଦୁହେଁ ଅାଗପଛ ହୋଇ ଗ୍ଲୁଲଥାନ୍ତ, ଆଗରେ କଢ଼, ପରେ ପତର । ରସ୍ତା ପ୍ରାୟ ଜନଶୂନ୍ୟ । ପଶ୍ଚିମା ମେଘ ବର୍ଷଣମୁଖର; ଫୁଲହଞ୍ଜଟା ଫଳହଞ୍ଜ ଅଡ଼କୁ ଗଡ଼ିଯାଇଛୁ ।

ଶାଶ୍ୱତୀ ଅନାବଶ୍ୟକ ଅନ୍ତରଙ୍ଗତା ଜମାଇବା ପାଇଁ ଦର୍ପଣରେ ପଗ୍ଦରଲ "ବାହାଦୁର ବାବୁ ! ଆପଣଙ୍କର ଏଇଟା କେଉଁ ଇଅର ?"

ବାହାଦୁର ଭାବଲ, ଝିଅଟା ବୋଧହୁଏ ତାକୁ ପି. ଜ. ପିଲ ବୋଲି ଧରନେଇଛୁ । ଅଧିକାଂଶ ସେଇଆ ଭାବନ୍ତ, ସାମାନ୍ୟ ଯୁକ୍ତ ଦୁଇ ଝିଅଟିଏ ଏମିତ ଭାବବାର କ ଜଦଳତା ! ଭାଗ୍ୟରେ ଏମିତ ସମ୍ଭବ ହୁଏ । ସୁନ୍ଦର ମିଳାଛୁ, ସ୍ୱ ଧାଙ୍ଗରେ ଝିକଏ ଖେଳିଲେ ଛତ କ'ଣ ? ଉତ୍ତରରେ କହିଲ 'ଫାଇନେଲ ଇଅର ।' କାଲେ

ଅନ୍ଧାର ଅଡ଼୍‌ଆ ତଡ଼୍‌ଆ ପ୍ରଶ୍ନ ପଚାରିବ ଦେଖିପାଇଁ କଥାକୁ ବାଆଁରେଇ ଦବା ଅଭିପ୍ରାୟରେ ପାଲଟା ପ୍ରଶ୍ନ ପଚାରିଲି, "ଆପଣ ପାନ ଖାଆନ୍ତି ? ମିଠା ପାନ, ଜରଦାଆ ?" ଗେହ୍ଲାଳିଆ ସ୍ୱରରେ ଶାଶ୍ୱତୀ କହିଲା, "ନା, ମୁଁ ପାନ ଖାଏ ନାହିଁ ? 'କେଡ଼୍‌ବେରୀ ଷ୍ଟିକ୍ ଖାଆନ୍ତି ?" ଆପଣଙ୍କ ମହିଳା କଲେଜର ଅନେକ ଝିଅ ସବୁବେଳେ ଖାଆନ୍ତି ।" ଶାଶ୍ୱତୀ ପ୍ରଶ୍ନ ବୁଝିଲା ନାହିଁ । ଇୟେସ୍ ନୋ ରୁ ଗୋଟିଏ ବାଛି ଅନ୍ଦାଜରେ 'ନା' କହିଲା । 'ସିନେମା ଦେଖନ୍ତି ?' କେବେ କେମିତି ମାଆ ହାତରେ ଯାଇ ପୌରାଣିକ ଛବି କୃଷ୍ଣସୁଦାମା, ସମ୍ପୂର୍ଣ୍ଣ ରାମାୟଣ ଦେଖିଛି ।" ଦସ୍ତା ବାଜୁଙ୍ଗା ? "ନା" । "ତେବେ କ'ଣ ଦେଖିଛନ୍ତି !" ଏତିକ ପ୍ରଶ୍ନୋତ୍ତର ପରେ ସୁସୁରି ମାରି ମାରି କଲିଏ ଗୀତ ଗାଇଲି, ଯାହା ମୁହଁକୁ ଆଣି ଫୁଟାଇ କଥାରେ କହି ହବନି ।

ପରିବେଶ, ଘଟଣାଚକ୍ର ମଣିଷର ଭବିଷ୍ୟତ ଯେତେ ପରିମାଣରେ ନିୟନ୍ତ୍ରଣ ଓ ନିର୍ଦ୍ଧାରଣ କରିଥାଏ ଚରିତ୍ର ଓ ଭାଗ୍ୟ ଉଭୟ ମିଶି ସେତେ କରିପାରନ୍ତି ନାହିଁ । କୁତୂହଳ ମଣିଷର ସମସ୍ତ ଉନ୍ନତିର ମୂଳବୀଜ ହେଲେ ବି କୌଣସି ବିଷୟରେ ଏପରିକି ଭଗବାନଙ୍କ ବିଷୟରେ ଅତିମାତ୍ରାରେ ଜିଜ୍ଞାସା ପ୍ରଶଂସନୀୟ ନୁହେଁ ।

ବେଳାବେଳରେ ଛୁଟିହୋଇ କଲେଜ ବାହାରେ, କେମ୍ପସରେ, ପାନ ଦୋକାନରେ ଅନେକ ସମୟରେ ଶାଶ୍ୱତୀ ଦେଖିଛି ହସି ହସି ହୋଇ ପୁଅଝିଅ ବୁଲିବାର ଏବଂ ଘଣ୍ଟା ଘଣ୍ଟା ଧରି କଥାବାର୍ତ୍ତା କରିବାର । କଲେଜକୁ ଯାଇ ଏବେ ଏବେ ବାରମ୍ବାର ନୂଆ ପୁରୁଣା ସାଙ୍ଗସାଥୀଙ୍କ ମୁହଁରୁ ଥରକୁ ଥର ବୟ୍‌ଫ୍ରେଣ୍ଡ୍ ବୋଲି ପଦେକ କଥା ବାରମ୍ବାର ଉଚ୍ଚାରିତ ହେବାର ଶୁଣିଛି । ସାଙ୍ଗସାଥୀଙ୍କି ପଚାରିଥିଲେ ଏ ସାମାନ୍ୟ ପଦଟିକୁ ସେ କେତେ ଉଦାହରଣ ସହ ଆଗ୍ରହରେ ଠିକ୍ ବୁଝାଇ ଦେଇଆନ୍ତେ । ତା' ନ କରି ଏକାନ୍ତରେ ଗୁରୁମନ୍ତ୍ର ଓ ଦୀକ୍ଷା ନେଇଥିବା ଚତୁରଶିରୋମଣିଙ୍କ ପଚାରି ଦେଲି, "ବାହାଦୂର ବାବୁ, ବୟ୍‌ଫ୍ରେଣ୍ଡ୍ କ'ଣ ?" କୁଟାଣ୍ଣ ହରିଣକୁ ଅଟା ଅଜଗର ମୁହଁକୁ ଆପେ ଆପେ କେମିତି ଟାଣି ହୋଇଯାଇଛି ଦେଖନ୍ତୁ । ଭାଗ୍ୟ ନା ଘଟଣା ଚକ୍ର ?

ବାହାଦୁର ତ ଏଇ ପର୍ଯ୍ୟନ୍ତ ଅପେକ୍ଷା କରିଥିଲା । କହିଲା "ଆପଣ ତ ସିନେମା ଦେଖୁନାହାନ୍ତି ! ସିନେମା ଦେଖିଥିଲେ ଜାଣିଥାନ୍ତେ ନାନା ଜାତିର ବୟ୍‌ଫ୍ରେଣ୍ଡଙ୍କ

କଥା । ଇଂରେଜୀ ବୟ୍‌ଫ୍ରେଣ୍ଡ କହୁଥାନ୍ତି, I Love You, ବାଙ୍ଗାଳୀ କହୁଥାନ୍ତି 'ଆମି ତୋମାକେ ଭାଲ ବାସି' । ପଞ୍ଜାବୀ ହେଲେ କହୁଥାନ୍ତି, 'ତେରେ ବିନେ ମର୍‌ଯାଉଁ । ମୋ ଘର ଗରିବ ଓଡ଼ିଆ ତାର ମାଆର ଭାଷାରେ କହୁଛୁ "ମୁଁ ଆପଣଙ୍କୁ ଭଲ ପାଏଁ, ଭାରି ଭଲ ପାଏଁ ।" ପ୍ରତନ୍ତିସ୍ୱୀ ଲକ୍ଷ୍ୟକରି ବାହାଦୂର ଦେଖିଲେ ଶାଶ୍ୱତୀର ମୁହଁରେ ଏମିତି ଚହଲା ସଙ୍କେତ ଯହିଁରୁ ସେ ବୁଝିଲେ ଚଟଚଢ଼ଇ କାଣ୍ଡିଆ ପାଖକୁ ଆସିଗଲା । ଶାଶ୍ୱତୀ କନ୍ଥୁ ଉଦାହରଣ ଅଭାବରେ ଉତ୍ତର ଅପୂର୍ଣ୍ଣ ଅବୋଧ ରହିଯାଇଛୁ ।

ଅଳ୍ପଦୂର ଯାଇଛନ୍ତି ସୁଲୁସୁଲିଆ ପବନ ହଠାତ ଝଣ୍ଟିଆ ହେଲା ବଡ଼୍‌ବଡ଼ ଟୋପା ଆସିଗଲା ବଡ଼ ମେଘରୁ କଟିଯାଇ । ଟୁପୁରୁ ଟୁପୁରୁ ଟପ୍‌ ଟପ୍‌ । ପରିଣ ଗଳି ଭିତରେ କୌଣସି ଅଶ୍ରୟସ୍ଥଳ ନାହିଁ ।

"ପୋଲ ତଳକୁ ଚାଲିଯିବା ? ବୟ୍‌ଫ୍ରେଣ୍ଡ ଖୋଜୁଥିବା ଦର୍ଶିନୀଙ୍କୁ ବାହାଦୂର ପଚାରିଲେ ।"

"ନା, ସାପ ଥିବ । ମୁଁ ସାପକୁ ଭାରି ଡରେଁ ।"

"ସିନେମା ନ ଦେଖିବାର ଫଳ । ଦେଖିଥିଲେ ଡର ନ ଥାନ୍ତା ।"

ଉପର ପ୍ରଭୁ ଅବିରଣ ଦୁହିଁଙ୍କ ଯାଚକର ଅର୍ଦ୍ର । ସାମାନ୍ୟ କେଉଁଠା ବଡ଼ବଡ଼ ଟୋପା ।

ଅଗକୁ କେମ୍ପାସ ଫାଟକ । ପାଖକୁ ଲଗି ଦାଢ଼ିଆ, ଝଙ୍କାଳିଆ ବରଗଛ । ତା'ର ମୂଳରେ କେମ୍ପାସର ଅଧିଦେବତା ଶିବ । ଖର୍ଖିଆ ମହାଦେବ । ଶିକ୍ତିକ ଭେଦ କରି ସଦର୍ପେ ଛିଡ଼ା ହୋଇଛନ୍ତି । ଦୁହେଁ ଧାଇଁଯାଇ ସେଇଠି ତାଙ୍କରି ପାଖରେ ଅଶ୍ରା ନେବାକୁ ବାଧ୍ୟ ହେଲେ ।

ଗୁରୁ ଯେଉଁ ଦୀକ୍ଷା ଓ ଦର୍ଶନ ଶିଷ୍ୟକୁ ଦେଇଥିଲେ ସେଥିରେ 'ପ୍ରେମ' ବୋଲି ଶବ୍ଦ ନ ଥିଲା; 'ପ୍ରଥମ ଦର୍ଶନ ପ୍ରେମ' ତ କାବ୍ୟ କବିତା ରାଜ୍ୟର ! ବାହାଦୁରର

ଭୂତ ନାହିଁ କି ଭବିଷ୍ୟତ ନାହିଁ । ଅଛି କେବଳ ବର୍ତ୍ତମାନ । ବର୍ତ୍ତମାନ ସଦୁପଯୋଗ କରିପାରିବା ହିଁ ବାହାଦୁରର ଧର୍ମ, କର୍ମ ।

ବର୍ଷା ସରିଗଲା । ଦୁହେଁ ଯେଝା ଘରକୁ ଏକମୁହାଁ ହୋଇ ନିଷ୍ପାପ ଜବ ଦୁଇଟି ପରି ଚାଲିଗଲେ । ରାସ୍ତାରେ ବସୁଫେଣ୍ଡ କଥା ଶାଶ୍ୱତୀ ଆଉ ତୁଣ୍ଡକୁ ଆଣିନି ।

ଏହା ପରବର୍ତ୍ତୀ ଦିନଗୁଡ଼ାକ ବାହାଦୂର ସୁସୁର ମାରି, ଫୁଟୁଳି ଫୁଟାଇ, କହ୍ନ ଅଲ୍ଅ ଗନ୍ଧରେ ବଂଶୀରେ ସିନେମା ସଙ୍ଗୀତର ରାଗରାଗିଣୀ ଗାଇ କୃଷ୍ଣଚୂଡ଼ା (କଲ୍ପତରୁ !) ମୂଳେ ବସି କଟାଇଲା । ପ୍ରେମ ପାଇଁ ପୋଲ ତଳ ହେଉ, ବାଲିବରିଗୃ ହେଉ, ପଡ଼ିଆପଡ଼ିଆ ହେଉ ଏପରିକି ଶିବମନ୍ଦିର ହେଉ ଉପଯୁକ୍ତ ତା' ଆଖିରେ । କାଉକୁଳିଗୋଡ଼ର ମଧ୍ୟ ସ୍ଥାନ ବାଛବିଚାର ନାହିଁ । ପ୍ରେମ ଫଳଟି ଏକମାତ୍ର ଲକ୍ଷ୍ୟ ।

ଶାଶ୍ୱତୀର ଯୁକ୍ତ ଦୁଇ ପରୀକ୍ଷାଫଳ ବାହାରିବ ହେଉଛି । କୃଷ୍ଣଚୂଡ଼ା ଗଛ ଦେଖିବେଲେ ଫଳ ଭାରରେ ଅବନତ । ଯେ ଦେଖିଲା କହିଲା ଦେଖାଣି, ଏତେ ଶ୍ରେଷ୍ଠ ଗଛଟି ଏତେ ଭାର ସମ୍ଭାଳି ପାରିବନି ।

ଶାଶ୍ୱତୀ ଦିନେ ଅଗତ୍ୟା ତା'ର ଦୁର୍ଗତି କଥା ବସୁଫ୍ରେଣ୍ଡକୁ କହିଲା । ବାହାଦୂର କେତେ ପାନ ପିପଡ଼ୁଲି । ଅଣ୍ଡବନ୍ତୁ ହୋମିଓପାଥି ଡୋକ୍ ଔଷଧ ଦେଇଥିଲା । ତା'ପରେ କର୍ତ୍ତବ୍ୟରୁ ଓହରି ଗଲା ।

ଶାଶ୍ୱତୀ ତା'ପରେ ଲଙ୍ଗଳିଙ୍ଗ ମନ୍ଦିରରେ ନହେଲେ କେମ୍ପାନ୍ ଫାଟକର ହେଉ ଖରଖିଆ ଲିଙ୍ଗ ଆଗରେ ବିବାହ ପ୍ରସ୍ତାବ ମଧ୍ୟ ଦେଇଥିଲା । ବାହାଦୂର ଶ୍ରେଷ୍ଠ ଉତ୍ତରଟିଏ ଦେଇଥିଲା "ବସୁଫ୍ରେଣ୍ଡ" ଧାଁଧପଡ଼ କରେ, ନାଟେକୁଦେ, ବାହା ହୁଏନି । ସିନେମା ଦେଖିନ ବୋଲି ଏ କଥା ତୁଣ୍ଡକୁ ଆଣୁଛ ।" ତା' ମତରେ ଯେଉଁ ଗଛ ଫୁଲ ଫୁଟାଏ ସେ ଭଅଁରର ଭାର ଏପରିକି ଫଳ ଭାର ବହେ । ଦୈବଦୁର୍ବିପାକ ପାଇଁ ଭଅଁର ବା ବସୁଫ୍ରେଣ୍ଡ ଦାୟୀ ନୁହେଁ ।

ଦିନେ ଡାକ୍ତର ତ୍ରିପାଠୀ ଶାଶ୍ୱତୀକ ପଚାରିଲେ, "ମାଆ ! ଅନେକ ଦିନ ହେଲା ରଘୁକୁ ତ ଆମ ଘରକୁ ଆସିବାର ଦେଖିନ । ତା'ର କ'ଣ ହୋଇଛି ଜାଣୁ ?',

"ରଘୁ କିଏ, ବାବା ? !'

"ରଘୁ, ରଘୁ ମ, ଆମ ହଷ୍ଟେଲ ଚପରାଶି । ରଘୁଆ । ସିଏ ରଘୁଆ ଥିଲା ଏବେ ତାକୁ ସମସ୍ତେ ବାହାଦୁର ବାହାଦୁର ଡାକୁଛନ୍ତି ।"

ବିଶ୍ୱାସ ଅବିଶ୍ୱାସ ମଝିରେ ରହି ନିଜେ ନିଜକୁ ପଚାରିଲା, "ରଘୁ ସିଏ ବାହାଦୁର ସିଏ, ହଷ୍ଟେଲ ଚପରାଶି ।"

"ହିଁ କହିଲି ପରା !"

ସେଇ ରାତିରେ ଶାଶ୍ୱତୀ କୁଆଡ଼େ କମିତି ଅନ୍ତର୍ଦ୍ଧାନ ହୋଇଗଲା, ଅନୁଅ ଲାଭି ବିଶ୍ୱମୟ ଅନ୍ଧକାର ହେଲାବେଳେ । ସକାଳେ କେମ୍ପାସର ବାସିନ୍ଦା ଦେଖିଲେ ଗ୍ରେଟ କୃଷ୍ଣଚୂଡ଼ାଟି ହିଠର ତୋଫାନର ତୋଡ଼ ସମ୍ଭାଳି ନପାରି ଗୃହିନୀ ଉପରେ ଟଳି ପଡ଼ିଛି । ଗ୍ଛୁଡ ଉପରୁ ତେଣ୍ଡିପଡ଼ି ତା'ର ପାଖରେ ଅପମୃତ୍ୟୁ ବରଣ କରିଛି ଶାଶ୍ୱତୀ ।



# ଲୁଲୁର

"କୁକୁରକୁ ସାବଧାନ"

ଘର ଆଗରେ ଫାଟକରେ ପଟା ଖଣ୍ଡିକରେ ଲେଖିଦେଇ ଝୁଲୁଛନ୍ତି । ଅନେକ୍ ଦୃଷ୍ଟିରୁ ଦରକାର । କାରଣ କେତେବେଳେ କଏ ଅଚିହ୍ନା ଅଜଣା ସ୍ୱେରପର ଦିଶୁଥିବା ଲୋକ ପଶି ଆସିଲେ କୁକୁର କାମୁଡ଼ି ଦେଇପାରେ । ଖବର କାଗଜରେ ମଝିରେ ମଝିରେ ବାହାରେ, କୁକୁର ମାଲିକକୁ ଗୁଡ଼ାଏ ଟଙ୍କା ଜରିମାନା ବା କ୍ଷତିପୂରଣ ବାବଦ ଦେବାକୁ ପଡ଼ୁଛି ।

ମୋ କୁକୁର କିନ୍ତୁ କେବେହେଲେ କାମୁଡ଼ିବାର ରେକର୍ଡ଼ ନାହିଁ । ସାତ ଆଠ ବର୍ଷ ତା'ର ବୟସ । ଆଉ ଦୁଇ ତିନି ବର୍ଷରେ ହୁଏତ ସେ ବିଦାୟ ନେବ ଇହଧାମରୁ । କୁକୁର ଜୀବନକାଳ ଅତିବେଶି ହେଲେ ବାରବର୍ଷ । ମୁଁ ହୁଏତ ତା' ଆଗରୁ ଯାଇପାରେ । ମୋର ଭଗବାନଙ୍କୁ ଏକମାତ୍ର ପ୍ରାର୍ଥନା "God ! ମୋର ଏ dogକୁ କଦାପି ମୋ ଆଗରୁ ନେବେ ନାହିଁ । ମୁଁ କାନ୍ଦି କାନ୍ଦି ମରିଯିବି । ଅନେକଦିନ ନାନା କାରଣରୁ କାନ୍ଦି ସାରିଲେଣି, ଲୁହ ଶୁଖିଗଲାଣି । ମୋ ପ୍ରତି କନ୍ଦର୍ପ ନ ହୁଅନ୍ତୁ । ମୋତେ ବଞ୍ଚାଇବାର ଇଚ୍ଛା ଥିଲେ କୁକୁରକୁ ନ ମାରନ୍ତୁ ।"

ବେଢ଼େ ସୁନ୍ଦର କୁନି ଜୀବଟି । ଗ୍ରେହାଉଣ୍ଡ ଆଉ କକାର ସ୍ପେନିଏଲ ମିଶା କଳା ଚକ୍ ଚକ୍ । ଷ୍ଟ୍ରେଟ ସାଇଜ୍‌ର, ଦେଖିଲେ କୁହେ ଦୁଇଦିନମାତ୍ରର ଛୁଆ ବୋଲି । କାନ ଦୁଇଟା ଝୁଲି ରହିଛି । ପଛ ହଲେଇ ହଲେଇ, ଲାଙ୍ଗୁଡ଼ ନାଡ଼ି ନାଡ଼ି, ଏଣେ ତେଣେ ଶୁଙ୍ଘି ଶୁଙ୍ଘି ମୋର ପାଦ ତଳେ ତଳେ ଗୁଳୁଥାଏ । ଘର ତରକୁନୀ ।

ଭୁଇଁରୁ ଅତିବେଶି ହେଲେ ଦେଢ଼ଚାଖଣ୍ଡ ଉଚ୍ଚ ହେବ । କଳା ଆଖିଦି'ଟା କଳା ମୁହଁରେ ମିଶିଯାଇ ଏକାକାର ହୋଇଯିବ ବୋଲି ସ୍ରଷ୍ଟା ତା'ର ଆଖିର ଭ୍ରୂଲତା ମାଟିଆ ରଙ୍ଗ କରିଛନ୍ତି । ନାଆଁ ତା'ର ବ୍ଲେକି । ବ୍ଲେକିରେ ! ବ୍ଲେକି, ବ୍ଲେକି, ବ୍ଲେକି ! କଳାକୋଳା ଚାରିପଟ ଧଳା ଅଂଶଟି କଟେଇ ଚାହିଁଲେ ବେଡ଼େ ସୁନ୍ଦର ରୂପରଙ୍ଗ ନ ଦିଶେ !

ତାକୁ ଆଣିଥିଲି ମୋ ଝିଅ ଘରୁ । ରାଉରକେଲାରୁ । ଅଠର ଦିନର ଛୁଆ । ଦେବା ଦାନ ଛୁଆଟି, ନଅଟି ଭିତରୁ । ବିକିଥିଲେ ଝିଅ ବାରଶ ଟଙ୍କା ପଲଟିରୁ ପାଇଥାନ୍ତା । ସେ ବା ମୁଁ କୁକୁର ବେଉଷା କରୁନାହୁଁ ତ ! ମୁଁ କହିଲି ଆଉ କୁକୁର ରଖିବି ନାହିଁ, ସ୍ୱୀ ସ୍ନଞ୍ଚଟାକୁ (ସ୍ୱାଗ ତା' ନାଁ) ମୂଷାବିଷ ଖୁଆଇ ମାରିଦେଇଛି । ତ'ଦିନ ପରର ଶୋଷେଇବାର ନାହିଁ, ଆଉ ଜୀବନରେ ଜୀବ ବିଶେଷକରି କୁକୁର ରଖିବି ନାହିଁ । ଜୀବ ପ୍ରତି ମାୟା ବସିଯାଏ ମୋର । କିଏ ହାତ୍ ହାତ୍ କଲା, କିଏ ବାଡ଼ି ଦେଖାଇଲା, କିଏ ମାଇକିଆ (ସେଟା ତ ମାଈ, ମାଇକିଆ ନ ହୋଇ ଅଣ୍ଡିରାଚଣୀ ହବ ! ) କହିଲା, ଅବା ତାକୁ ଅତ୍ୟାଚାର, ଧର୍ଷଣ, ମାଡ଼ ଦେବାର ଉପକ୍ରମ ହେଲେ ମୋ ଚିତ୍ତ ଦୁଃଖ କ୍ରୋଧରେ ଭରପୂର ହୋଇଯାଏ । ତୁମର ନୁହେଁ ବୋଲି ତା' ଉପରେ ରାଗୁଛ କାହିଁକି, ମୋ ଉପରେ ରାଗନା ।"

ବିଧବାଟିଏ ନିଃସନ୍ତାନ ହୋଇଥିଲେ ବିରାଡ଼ିଟିଏ ପୋଷେ । କାହାଣୀରେ ଗୀତଟି ଅଛି, "ବୁଢ଼ୀ ଖାଇଲା ଚିଙ୍ଗୁଡ଼ି ମାଛ, ବୁଢ଼ା ଖାଇଲା ପିଠି ମାଉଁସ ।" ଏ ବୁଢ଼ୀଟି ବିରାଡ଼ିକୁ ଯେତେ ଭଲପାଇ ନ ଥିଲା, ବୁଢ଼ାକୁ ବେଶି ଭଲପାଇଥିଲା ବୋଲି ପିଠି ମାଉଁସ କାଟି ଦେଇଥିଲା । ବୁଢ଼ା ବି ସିମିତ ସେଇ ଗପରେ "ମତେ ଦବୁ ?" କହି ଗାଡ଼ିଆ ଭିତରର ବୁଢ଼ୀପାଖକୁ ଧାଇଁ ଯାଇ ମରି ନ ଥିଲା ! ମୁଁ ବି ବେସ୍ତୀକ, ଛୁଅପିଲାଏ ଚଢ଼େଇ ପରି ଡେଣା ଲଗିଲାରୁ ବସା ଛାଡ଼ି କୁଆଡ଼େ ଉଡ଼ିଗଲେଣି । ଏଇ ବ୍ଲେକିଟି ମୋର ସବୁ, ଏକାଧାରରେ ପତ୍ନୀ, ଝିଅ, ନାତୁଣୀ କବିତା ବନିତା । ସେ ଓ ମୁଁ ପରସ୍ପରକୁ କୁଣ୍ଢେଇ ଜାବୁଡ଼ି ଧରି ରହିଛୁଁ ।

ଝିଅକୁ କହିଲି, "ଜୀବନରେ ଆଉ ମାମୁଁରେ ଜଡ଼ିତ ହେବ ନାହିଁ । ମୁଁ ପାଳିପାରିବି ନାହିଁ, ଅଠର ଦିନର ଦୁର୍ବଳିଆ ଛୁଆକୁ । ଅଜ ଓ୍ୱାଟେମ୍ବର ପାଣି, ଅଣ୍ଡାରେ ଏ ଛୁଆ ପାଞ୍ଚଶ କଲୋମିଟର ଯାଇପାରିବ, ମା' ପେଟତଳେ ଗ୍ରାଣ୍ଟ ?" ମୁଁ ବାରମ୍ବାର ନା କଲି; କିନ୍ତୁ ଦିନ ଦୁଇଟା ବେଳେ (ପାଞ୍ଚୁଟା ଦିଶରେ ଟ୍ରେନ୍) ମୋ ନାତି ( ଏବେ ଅନ୍ଧେରିକାରେ, ବାହାହୋଇଛି, ଦୁଇଟି ବେଶ୍ ଭଲରେ ଆରାମରେ ଅଛନ୍ତି, ରହିଛନ୍ତି ? ମତେ ଏତେ ମୂଲ୍ୟବାନ୍ ଜୀବଟିଏ ଦେଇଛି ! ମିଲୁରେ ? ଲକ୍ଷ ସହିତ ସୁଖରେ ରହ ! ) କୁକୁରଛୁଆକୁ ଧରି ମୋ ପାଖରେ ପୁଅ ଘରେ ହାଜର । କହିଲା, "ଅଜା ! ମା' କହିଲା, ଏ କୁକୁରଛୁଆକୁ ତୁମ ଘରେ ପହଞ୍ଚାଇ ଦେବ, ତୁମକୁ କିଛି କରିବାକୁ ପଡ଼ିବନି । ଦିନ ଚାରିଦିନ ରହି କୁକୁରଛୁଆ ତୁମକୁ ଚିହ୍ନିଗଲେ, ମାନିଲେ ମୁଁ ଫେରିବି । ମା'ର ଏକ ଜିଦ୍ ତୁମ ପାଖରେ ଏ ରହିବ; ସେ ଆଉ କାହାକୁ ଯାକୁ ଦବ ନାହିଁ; ମରିଦେବେ ସେମାନେ ।"

କୁକୁରଛୁଆଟିକୁ (ନାମ ଦେଲି ମାଣିକ, ପରେ ବଦଳ କରି ବ୍ଲେକ ଡ଼ିକିଲି) ଯିମିତି ସେ ଲୁଗାପଟା ଭିତରୁ ବାହାର କରି ୧୨ଖ ଘାସର ଲନ୍‌ରେ ଥୋଇଛି ସେମିତି ପୁଅର କୁକୁର ଡପ୍‌ନୀ କୁଆଡ଼ୁ ଆସି ତାକୁ ପାଟି ଭିତରକୁ ଉଠାଇନେଲା । ବଡ଼ କୁକୁର, ଅଠାବନ କଲୋ ଓଜନ । ମୁଗୋ ପୁଅ ପହଞ୍ଚିଗଲା ଏବଂ ଯମଗୁମ୍ପାରୁ ଛୁଆଟି ପୁଣି ଖସିକୁ ଆସିଲା । ଝିଅର ଆଦେଶକ୍ରମେ ନାତି ମିଲୁ ମୋ ସାଙ୍ଗରେ କୁକୁର ଛୁଆକୁ ଧରି ମୋର ଏଇ ଭଡ଼ାଘରକୁ ଆସିଲା । ଖୁବ୍ ଶୀତ ହେଲାରୁ ନିଜ ପଶମ ସ୍ୱେଟର ଭିତରେ ତାକୁ ଘଙ୍କାଇ ଆଣିଲି, ଛୁଆଟି ଜାଣିପାରିଲା ନାହିଁ—ମା' କୋଳରେ ନା କାହା କୋଳରେ ଅଛି । ଖଡ଼ଗପୁରରେ ଦୁଧ ପିଆଇବା ପାଇଁ ଛୁଆକୁ କୋଳରୁ ବାହାର କରନ୍ତେ ଜଣେ କୁକୁରପ୍ରେମୀ ଟି. ଟି. ଇ. ଦେଖି ଦଉଡ଼ିଲା ଏବଂ ପାଖକୁ ଆସି କହିଲା, "କୁକୁରଛୁଆର ଟିକେଟ ଲାଗିବ ।" ନାତି କହିଲା "ଯଦି ଆପଣ ଅଉ ଥରେ ଟିକେଟ କଥା କହିବ ତେବେ ଏଇ ଦେଖନ୍ତୁ ମୁଁ କୁକୁରଛୁଆକୁ ଝରକାପଟେ ତଳକୁ ଫୋପାଡ଼ି ଦେଉଛି । କୁକୁରଛୁଆଟି ଇଲେକ୍ଟ୍ରିସିଟିର ଆଲୁଅରେ କୁଜୁକୁଜୁ ହୁଥାଏ, ଖୁବ୍ ଜୋର ଶୀତରେ ଥରି ଥରି । ଦୁର୍ଘଟଣା ଘଟିଲା ନାହିଁ । ନାତି ଦୁ'ଗୁରିଦିନ ମୋ ଘରେ ରହି, ତା'ର ଖାଇବା, ହଗିବା, ମୁତିବା ତତ୍ତ୍ୱ ନେଲା ଏବଂ ମୁଁ ଏଥର ଯାଆ କହନ୍ତେ ମା' ପାଖକୁ ଫେରିଗଲା । ମୁଁ କୁକୁରଛୁଆଟିର ମାଆ ହେଲି, ତା'ର ବାପର ଦରକାର ନାହିଁ ।

କୁକୁର ଛୁଆଟିକୁ ମୁଁ ଯିମିତ ପାଳିଲି ସେଥିରେ ଆଗନ୍ତୁକମାନେ ମନ୍ତବ୍ୟ କଲେ "କୁକୁରଟା ନଷ୍ଟ ହୋଇଯିବ, କଡ଼ା ଚିକିତ୍ସା ତା'ର ଦରକାର, ନ ହେଲେ ମାଇଚିଆ ହୋଇଯିବ; ସ୍ନେହ ଶ୍ରଦ୍ଧାରେ ମଣିଷପିଲାଙ୍କୁ ପାଳିବା କଥା, ଜୀବଜନ୍ତୁ ଏପରିକି ଘରକର ଘରକରଣୀଙ୍କି ପାଳିବା କଥା ନୁହେଁ, ଅମାନିଆଁ ହୋଇଯିବେ, ବୋଲି ମାନିବେ ନାହିଁ।"

ଏ ପ୍ରକାର ସତର୍କବାଣୀ ସତ୍ତ୍ୱେ ମୁଁ ତାକୁ ମଣିଷପିଲା ପରି ପାଳିଲି, ଯିମିତ କି ସିଏ ପାଚୀ, ଗୋପା, ଝିଲ ପରି ମୋର ନାତୁଣୀ। ମୋ ସାଙ୍ଗରେ କୋଳରେ ବସେ; ରାତିସାରା ମୋ ସାଙ୍ଗରେ ଶେଜ ଭିତରେ ଶୁଏ; ମୁଁ ଯିମିତ ତା' କଥା ବୁଝିପାରେଁ ସେ ବି ମୋ କଥା, ଇଙ୍ଗିତ ସହଜରେ ବୁଝିପାରେ। କେହି କେହି ପରିବାରସ୍ତ "ଏଇଟାକୁ କାହିଁକି ରଖିଛ? ଅଳସୁଣୀ; ଦିନସାରା ଶୋଉଛି, ଇଏ ଏତିକି ବଡ଼ଟେ; ଚୋରବଟପାରଙ୍କୁ ଜଗି ପାରିବ, ଧରି ପାରିବ? ତା'ର ନିଜ ରକ୍ଷଣ ଅସମ୍ଭବ, ସେ କେମିତି ଘରକୁ ଜଗିବ?

ସେ ଯାହା ଅପବାଦ ଦେଲେ ମଧ୍ୟ ମୋର ଅସ୍ମିପ୍ସିଟିକି ମୁଁ ପ୍ରାଣଭରି ଭଲପାଏଁ। ତା' ଦେହରୁ ପୁଞ୍ଜା ପୁଞ୍ଜା ଲୋମ ଉଠେ, ଖଟରେ ବି ଦିନେ ଦିନେ ଗୋଟାଏ ଅଧେ ସେଥିରୁ ମିଳେ, ବାରଣ୍ଡାରେ ଦିନେ ଦିନେ ଝାଡ଼ା ପରିସ୍ରା କରେ। ତା'ର ଭଲଗୁଣରେ ନଷ୍ଟ କଲେ; ସେ ଭୋ ଭୋ ଭୁକେ ଏବଂ କଲିଂବେଲ୍ର କାମ କରେ; ଚୋର ପରି ଦିଶୁଥିବା ଲୋକଙ୍କୁ ଖଣ୍ଡେଦୂର ଘଉଡ଼ାଇ ନେଇଯାଏ, କୁକୁର ଅଛି ଏଇ ଡରରେ ହୁଏତ ଚୋରଗୁଣ୍ଡା ଆସି ନାହାନ୍ତି ଗତ କେତେ ବର୍ଷ; କେବେ କମିତ ଗୋଟାଏ ଦିଟା ମୂଷା ମାରିଦିଏ,-ଖାଏନି; ଯାହା ମୁଁ ଖାଏଁ ସେ ତାହା ଖାଏ, ମାଛ-ମାଂସ-ଅଣ୍ଡା ବଦଳରେ ଡାଲିଶିଝା ବି ଖାଇ ତୃପ୍ତହୁଏ,; ପିଲାଝିଲା ବହୁଦିନ ପରେ ଘରକୁ ଆସିଲେ ତାଙ୍କୁ ଏତେ ବେଶୀ ଶ୍ରଦ୍ଧା କରେ ଯେ ମୁହଁପକାଏ ତାଙ୍କ ପେଣ୍ଟରେ ମୋ ଶେଯରେ; ମୁଁ କୁଆଡ଼େ ଗଲେ ବହୁତ କାନ୍ଦେ, ମଣିଷ ପରି। ମୁଁ ଯେତେବେଳେ ଲେଖାଲେଖି କରେଁ ସେ ବେତ ଚେୟାରରେ ଗୁଡ଼େଇ ହୋଇ ଶୋଇଥାଏ, ପ୍ରେରଣା ଦିଏ, କାଗଜକୁ ସାଙ୍ଗ ଯୋଗାଏ। ମୋତେ ଯଦି କିଏ ପଚାରନ୍ତା ଦୁନିଆଁରେ ଏ ଜୀବନରେ ଆପଣଙ୍କର ସବୁଠାରୁ ପ୍ରିୟ ଚିଜ କିଏ କ'ଣ ମୁଁ ବିନା ଦ୍ୱିଧାରେ ମୁହୂର୍ତ୍ତିକେ ଉତ୍ତର ଦେବି "ମୋର ବ୍ଲେକି।"

କିନ୍ତୁ ମୋର ଏ ଅମୂଲ୍ୟ ସମ୍ପଦକୁ ଦୁନିଆଁ ମୋ ଆଖିରେ ଦେଖିବାକୁ ପ୍ରସ୍ତୁତ ନୁହେଁ । ସ୍ୱା ବିଷୟରେ ନାନା ଅକଥା କୁକଥା ଶୁଣିବାକୁ ପଡ଼େ । (ପାଖ ଘରର ଶ୍ୟାମ ବୋଲି ଦୁଷ୍ଟ ପିଲାଟିର ଲୋକଟା ତାକୁ ଲୋକ ଡାକପାରେନି 'କୁଲଙ୍କା' ଡାକେ, ପୋଲ ତଳେ ଚମାରୁଣୀ ବୁଢ଼ୀ ତାକୁ 'ଲକ' ଡାକେ । କୁକୁରଟି ସେ ଡାକ ମଧ୍ୟ ଶୁଣି ଶୁଣିଥିବ । A dog is a dog, it will hear by whatever name you call it । ଅବଶ୍ୟ ଯଦି ତୁମେ ଅନ୍ତରରେ ତାକୁ ଭଲପାଉଥିବ, God ଯିମିତି ତୁମ ଅନ୍ତର ଜାଣନ୍ତି dog ମଧ୍ୟ ସେମିତି ତୁମ ମନକୁ ଜାଣିବ ।

ଗତବର୍ଷ ପରେ ମୁଁ ଘର ବଦଳାଇବା ନିଷ୍ପତ୍ତି କରି ସହରର ଅନ୍ୟ ଏକ ଅଞ୍ଚଳକୁ ଗଲି, ବେଶି ସୁବିଧା ସୁଯୋଗ ଆଶାକରି । କିନ୍ତୁ ସେଠି ନିପଶୁଣ ମୁଣ୍ଡରେ ଚୂଲ ବାଜିଲା । ଜିନିଷପତ୍ର ଟ୍ରକରେ ବୋହି ଘର ପୂର୍ବ ଖାଲିକରି ଯେତେବେଳେ ଲୋକଙ୍କୁ ଶବ୍ଦଦ୍ୱାରେ ବଦାଇ ନୂଆ ଘର ଫାଟକରେ ପହଞ୍ଚିଲି ଘରବାଲା ଶ୍ରୀଯୁକ୍ତ ରାଧାନାଥ ଷଡ଼ଙ୍ଗୀ କହିଲେ "ଆପଣଙ୍କର କୁକୁର ଅଛି ଜାଣିଥିଲେ ଏ ଘର ଆପଣଙ୍କୁ ଦେଇ ନ ଥା'ନ୍ତି । ଆପଣ ରହିବାକୁ ଆପତ୍ତି ନାହିଁ, କିନ୍ତୁ ଏଠି କୁକୁର ରହିବ ନାହିଁ । ଦେଖନ୍ତୁ, ଆମେ କୁଳୀନ ବ୍ରାହ୍ମଣ, ଆମର ସଂସ୍କୃତି ପରମ୍ପରା ଅଛି; ଆମ ଘରେ ଗୋପାଳ ମୂର୍ତ୍ତି, ରଘୁନାଥ ଶାଳଗ୍ରାମ ଅଛନ୍ତି । କୁକୁର ଛୁଇଁଲେ ଆମେ ଲୁଗା ବଦଳାଉଁ, ତା'ଛଡ଼ା ମୋର ବିଧବା ମାଆ ଅଛନ୍ତି, ସେ ହାର୍ଟ ପେସେଣ୍ଟ; କୁକୁର ଭୁକିଲେ ତାଙ୍କ ହାର୍ଟ ଫେଲ୍ୟୁଅର ହେବ; ତା'ଛଡ଼ା ମୋର ନାତି ନାତୁଣୀ ଛଅଟା ଅଛନ୍ତି; ଆପଣଙ୍କ ପାଖ ଫ୍ଲାଟର ଭଡ଼ାଟିଆ ମଧ୍ୟ ଆପତ୍ତି କରିପାରନ୍ତି । ଆଠଦିନ ସମୟ ଦେଲି କୁକୁରକୁ ସ୍ଥାନାନ୍ତର କରିବେ ତ ରହିବେ, ନ ହେଲେ ବାହାରିଯିବେ ।" ନୂଆ ଜାଗାରେ କୁକୁର ଗୁଡ଼ଯାକ କହିଁ କହିଁ ହୋଇ କାନ୍ଦିଲା, ମୁଁ ବି ତା' ପଛେ ମୋର ଆପଣା ବିଚ୍ଛେଦରେ ବାହୁକୁ ତକିଆ କରି ମୁହଁକୁ ମୁହଁ ଦେଇ ହକ୍‌ସକ୍ ହୋଇ କାନ୍ଦିଲି ।

ତହିଁ ପରଦିନ ଯେତେ ପଦ୍ମତୋଳା ବୋଲିଲି ସାପର ଫଣା କରିମିଳି ନାହିଁ । କହିଲି, ମୋ କୁକୁର କାମୁଡ଼ିବ ନାହିଁ; ଏପରିକି ଭୁକିବ ନାହିଁ ଜୋରରେ, ଅତଏବ ହାଇଡ୍ରୋଫୋବିଆ, ହାର୍ଟଫେଲ୍ୟୁଅର ପ୍ରଶ୍ନ ନାହିଁ । ଚେନରେ ବାନ୍ଧି ରଖିବି । ସେ

ଶ୍ଳୋକସ୍ତୁତି ଗାଇବାକୁ ଆରମ୍ଭ କଲେ, "ନଗାନାଂ ଚ ନଖୀନାଂ ଚ···ବିଶ୍ୱାସ ନୈବ କର୍ତ୍ତବ୍ୟ ।" ଓଲଟି ମୁଁ ଗାଇଲି "ଜାତିମାତ୍ରେଣ ନଂ କଶ୍ଚିତ ହନ୍ୟତେ···" ବ୍ୟବହାର ଦେଖି ସିନା ରଖିବ ବା ହାଣିବ । ମୋ'ର କଥା ରହିଲା । ତାଙ୍କ ଘରେ କୁଆଡ଼େ ଗୁଡ଼ାଏ ସୁନା ଅଛି, ଥରେ ଚୋର ପଶିବାକୁ ଉଦ୍ୟମ କରୁଥିଲାବେଳେ ବ୍ଲେକ ଭୁକିଲା, ଚୋର ପଳାଇଲେ, ସମ୍ପତ୍ତି ରକ୍ଷା ହେଲା । ବ୍ଲେକ ରହିଲା ।

ପ୍ରତିଦିନର ରୁଟିନ୍‌ରେ ବ୍ଲେକର ସବୁଠାରୁ ଆନନ୍ଦର ବେଳ ହେଲା ଯେତେବେଳେ ସେ ମୋ ସହିତ ବୁଲିବାକୁ ଯାଏ; ମୋର ବି ସେଇଟି ଗର୍ବର ଚୂଡ଼ାନ୍ତ ମୁହୂର୍ତ୍ତ । ଘର ଭିତର ଗୁଡ଼ି ବ୍ଲେକ କେତେ ବନ୍ଧନରେ ନ ଥାଏ । କଳ ବା ମଣିଷକୁ ଏଇ ବନ୍ଧନ ହିଂସ୍ର, କ୍ରୂର କରେ । ଜହରଲାଲଙ୍କୁ ନଅ ହଜାରରୁ ଅଧିକ ଦିନ ବନ୍ଧନରେ ରଖିଥିବାରୁ ବ୍ରିଟିଶ ସରକାର ତା'ର ଫଳ ପାଇଲେ । ଘର ଭିତରେ ବ୍ଲେକ ସୀମିତ ବନ୍ଧନମୁକ୍ତ, ଘର ବାହାରେ ବି ସେଇପରି । ମାଆମାନେ ଝିଅମାନଙ୍କ ଉପରେ କଡ଼ା ନଜର ରଖିଲେ ଓ ପଦାକୁ ଗୋଡ଼ କାଢ଼ିବାକୁ ନ ଦେଲେ ଝିଅମାନେ ଟିଉସନ ମାଷ୍ଟର ସାଙ୍ଗରେ ପଳାଇଯାନ୍ତି । ମୋ କୁକୁର କାହା ସହିତ ପଳାଇବ ନାହିଁ ।

ସକାଳେ ସୂର୍ଯ୍ୟଦେବ ଉଦିତ ହୋଇଅସୁଥାନ୍ତି, ବେଲକନିରେ ମୁଁ ଚେୟାରରେ ବସି ଚା ବିସ୍କୁଟ୍ ଖାଉଥାଏଁ; ବ୍ଲେକ ମୋରପାଖ କାଠଚଣ୍ଡିଟା ଉପରେ (ଯାହାକୁ ମୁଁ ଟି'ପୟ ଆକାରରେ ବ୍ୟବହାର କରେ) ବସିଥାଏ ବିସ୍କୁଟ୍ ଟୁକୁଡ଼ାକୁ କଣ । ବୁଲିବାକୁ ବାହାରିଲେ ବ୍ଲେକ ନାଚିବାକୁ ଆରମ୍ଭ କରେ, ଆଗେ ଆଗେ ଡେଇଁବାକୁ ଲାଗେ, ଏପରିକ ଲୁଙ୍ଗିକୁ ଧରି ଟାଣେ । ତା'ର ଚାଲିକୁ ଦେଖି ପଡ଼ୋଶୀଘର ଚାରିବର୍ଷର ସୁନ୍ଦରୀ ଝିଅଟି 'ଫୁଲେଇ' ବୋଲି କହିଥିଲା ।

ପ୍ରକୃତରେ ଏଇ ଝିଅଟି ଫୁଲେଇ । ବଡ଼ ଘରର ଧାନ ଝିଅ । ଭାରି ଚେଲ୍ଲୀ । ଥରେ ଲେଖାଲେଖି କରୁଛି, ହଠାତ୍ ଜୋର୍‌ରେ ବ୍ଲେକ କେଁ କେଁ ଚିତ୍କାର କଲା । ତା'ର ଶବ୍ଦ ସାଙ୍ଗେ ସାଙ୍ଗେ ଫୁଲେଇ ଝିଅଟି ଖୁବ୍ ଜୋର୍‌ରେ ଭେଁ ଭେଁ କରି କାନ୍ଦିଲା ଏବଂ ନାଚିଲା । ତା'ର ବାପା ମାଆ ଧାଇଁ ଆସିଲେ, ଦୁହେଁ ଏକା ସାଙ୍ଗେ ଚିତ୍କାର କଲେ

'କୁକୁର କାମୁଡ଼ିଦେଲା' କେତେ ଜୋର୍‌ରେ କାମୁଡ଼ିଲା, ରକ୍ତ ଝର୍‌ଝର୍ ବହୁଛି !' ଯାଙ୍କେ ତାଙ୍କେ ଫୋନ୍, ଅମ୍ବୁଲେନ୍‌ସ ଆସିଗଲା । ମୁଁ ଅଗତ୍ୟା କିଛି ନ ଦେଖି ନ ବୁଝି ନ ସୁଝି ବ୍ଲେକ୍‌କୁ ବାନ୍ଧରେ ଜୋର୍‌ରେ ବାଡ଼େଇଗଲି । ତା'ର ବିକଳ ଚେଁଚେଇବା ଓ କ୍ରନ୍ଦନରେ ମୁଁ ବିଚଳିତ ହେଲି ନାହିଁ । ପନ୍ଦର କୋଡ଼ିଏ ମିନିଟ୍ ପରେ ଫୁଲେଇ ହାତ ବେଣ୍ଡେଜ୍ କରି ଏ-ଟି-ଏସ ନେଇ ଫେରିଲା, ପ୍ରାୟ୍, ମୂର୍ଚ୍ଛା ହେବା ପରି ତା'ର ଭଙ୍ଗୀ । କୁକୁର କାମୁଡ଼ା ଔଷଧ ପରେ ଆସିଲେ ଦିଆଯିବ । ଷ୍ଟକ୍ ନାହିଁ ।

ମୋର କୁକୁରର ଅବସ୍ଥା ବଳି ଗୁରୁଗମ୍ଭୀର । କ'ଣ ପାଗଳ ହୋଇଗଲା ! ଡାକ୍ତରଖାନା ନେବି ନା ଠେଙ୍ଗାରେ ପାହାରେ ଦେଇ ମାରିଦେବି ? କିଛି କଲି ନାହିଁ । କୁକୁର କିନ୍ତୁ ପାଗଳ ପରି ଭାବ ଦେଖାଇଲା । ବ'ନ୍ଧ ରଖିଲି ଚେନ୍‌ରେ । ଅନ୍ଧକାର ବେଳି ପାଗଳ ପରି ବ୍ୟବହାର କଲା । ମୁଁ ତ କେବେ ତା' ଦେହରେ ହାତ ଦିଏ ନାହିଁ, ଚଡ଼ାଏ ନାହିଁ । ଆଜି ମୋର ଏ ପାଗଳ ପରି ବ୍ୟବହାରରେ ସେ ପାଗଳୀ ହୋଇ ନ ଥିବ ତ ! ମୋର ନାତି ନାତୁଣୀମାନେ ତା' ଲାଞ୍ଜ ଧରି ଓଲଟା ଟାଣନ୍ତି, ତା' ମୁହଁରେ (ବର୍ତ୍ତମାନ ପାଖ ବେଡ ନେପ୍ଥାଗରେ କୁଣ୍ଡଳୀ ହୋଇ ପଡ଼ି ଦପନରେ ବୋଧହୁଏ ଭୋ ଭୋ ହେଉଛି, ମୋତେ କିଁ କିଁ ଶୁଭୁଛି ମାତ୍ର) ଅଙ୍ଗୁଠି ପୁରାନ୍ତି । ଆଜି ଏମିତି କାହିଁକି ? ଗବେଷଣା ପରେ ଜାଣିଲି 'ଫୁଲେଇ'କୁ ଯେଉଁ ୧୨।୧୩ ବର୍ଷର ଝିଅଟା ଖେଳାଉଥିଲା ସେ ବ୍ଲେକର ଲାଞ୍ଜକୁ ଜୋରରେ ମାଡ଼ିଦେଇଛି ଏବଂ ନିସ୍ପାପ ଝିଅର ହାତକୁ ବ୍ଲେକ ଜୀବନ ବିକଳରେ କାମୁଡ଼ି ଦେଇଛି ଏବଂ ନହୁଣୀ ଭଳି ନରମ ହାତରେ ଦାନ୍ତ ଲୋଯାଇଛି । ପଡ଼ୋଶୀ ପଡ଼ୋଶୀ ଭିତରେ ବ୍ଲେକ ମାତ୍ର କେତେ ଘଣ୍ଟା ପାଇଁ ବିଭେଦ ଆଣି ଦେଇଥିଲା; କିନ୍ତୁ ପରେ ଦେଇ ଫୁଲେଇ ଝିଅ ଓ ଫୁଲେଇ କୁକୁର ମିଳାମିଶା ହୋଇ ଅମ୍ଭର ବନ୍ଧୁତ୍ୱ ଅତୁଟ ରଖିଲେ । ବ୍ଲେକର ବ୍ଲାକ ରେକର୍ଡ଼ ହ୍ୱାଇଟ୍ ହୋଇଗଲା ।

"ବ୍ଲେକର ଭଲମନ୍ଦ ବାଣୀ, ବୁଲିବାହେଲେ ତାହା ଜାଣି ।" ଆଜି ସକାଳେ ବାହାରକୁ ନେଇଥିଲି, ଏଇ ମାତ୍ର ଫେରୁଛି । ଚିତ୍କାର ଧରିଛି କି ନାହିଁ ଦୁଇ ଗୁଣିଜଣ ବଙ୍ଗାଳୀ-ଯୁବକ ତାକୁ ନଜର କଲେ । ଜଣେ କହିଲା 'ସୁଧୀର, ଦେଖ୍ ଦେଖ୍, କେତେ ସୁନ୍ଦର କୁକୁରଟା, ଆମାର ଧାରଣା ଛିଲ ଓଡ଼ିଶାଯ୍ କେଉଁ କୁକୁର ଯାଏନା, ରଙ୍ଗଟା

ପାକ୍କା କାଲେ, ଚକ୍ ଚକ୍ କରଛେ; ଅମାର ଏକେ ନାଏ ଯେତେ ଇଚ୍ଛେ କରଛେ ।' ଦେଖୁଁ ଦେଖୁଁ କଲକତା ବସ୍ ଧରି ସେମାନେ ଚାଲିଗଲେ ।

ବ୍ଳେକ ମାଟି, ଖୁଣ୍ଟ, ଗଛପତ୍ର ଶୁଙ୍ଘି ଶୁଙ୍ଘି ଏଣେ ତେଣେ ଧାଇଁ ଆଗେ ଆଗେ ଚାଲିଛି । ସାନ୍ତାଳୁଣୀ ମାଇକିନାଟିଏ ସିଅଡ଼ୁ ଆସିଲା, ମୁଣ୍ଡରେ ବଡ଼ ଝୁଡ଼ିରେ ଘରକରଣା ଆଦବାବପତ୍ର, ହାତରେ ଧରିଛି ପାଞ୍ଚ ଛଅ ବର୍ଷର ପୁଅକୁ । ବ୍ଳେକ ପିଲାଟା ପାଖକୁ ଯାଇ ଶୁଙ୍ଘିବାକୁ ଆରମ୍ଭ କରିଛି, ତା' ମାଆ ମତେ ପଚାରିଲା "ଏ ବାବୁ ! ଏଟା ତର କୁକୁର ? ମ'ର ଛୁଆଟାକେ କାମୁଡ଼ିବ ସିଏ ଯଦି ଅଉସେ ? ବଡ଼ ସୁନ୍ଦର କୁକୁର ଛୁଆଟା । କ ଖାଇତେ ଦଉ ?" ମୁଁ ଠିଆ ହେଲି ବ୍ଳେକ ପାଖରେ, ତା'ର ପୁଅ ଆଉସିଲା । ଦୁହେଁ କୃତକୃତ୍ୟ ହୋଇ ବାଟେ ବାଟେ ଚାଲିଗଲେ ।

ପୂଜ୍ୟୂଣଟିଏ ପାରୁଟା ପିଲା ନେଇ ସେ ରାସ୍ତାରେ ଅସୁଛି; ବ୍ଳେକ ଛୁଆଙ୍କ ପାଖରେ ଖେଳିବ, ଚାରିପଟେ ଧାଁ'ଧପଡ଼ କରି ମିଛରେ ମା' ଛୁଆଙ୍କୁ ଭୟଭୀତ କରିବ । ଛେଳିପଲ ମେଁ ମେଁ ହୋଇ ଆସିଗଲେ ତାଙ୍କ ପାଖରେ ଲାଗିବ; ସେମାନଙ୍କଠୁଁ ଥରେ ଅଧେ ମୁଣ୍ଡିଆ ଖାଇବ, ଥରେ ଥରେ ରାସ୍ତା ତଳକୁ ଖସିଯିବ, ତଥାପି ଖେଳ ବନ୍ଦ ନାହିଁ । ଛେଳି ପକ୍ଷୀ ସମସ୍ତଙ୍କ ସହିତ ତା'ର ଆତ୍ମୀୟତା ।

ମୁଁ ବୁଝିପାରେନା କାହିଁକି ଗୁଡ଼ାଏ ଲୋକ ତାକୁ ଦେଖନ୍ତି ନାହିଁ । ଦେଖିଲେ ବି ଆଖି ଫେରାଇ ନଅନ୍ତି । କୁକୁରକୁ ଦେଖିବାର କ'ଣ ଅଛି ? କାମଧନ୍ଦା ଟଙ୍କା ପଇସା, ପିଲାଛୁଆ, ଘର ଦ୍ୱାର ସିନା ଲୋକ ଦେଖିବ ! ଭଲ କୁକୁର ମାନେ କାମୁଡ଼ା କୁକୁର । ଏଇ ଲୋକଗୁଡ଼ା ସୌନ୍ଦର୍ଯ୍ୟ ସହି ପାରନ୍ତି ନାହିଁ; ଈଦର, ଲଙ୍ଗୋଡ଼ୁଆ ହତ୍ୟା କଲେ ତାଙ୍କର ଆନନ୍ଦ ।

ଆଗରେ ଓଭରବ୍ରିଜ ତଳେ କମାରଶାଳ ଏବେ ହୋଇଛି । ଗୁଡ଼ାଏ କଳା କଳା ଲୋକ—କମାର, ତା'ର ଦୁଇ ସ୍ତ୍ରୀ, ଚାରିଟା ଗ୍ରେଟ ଗ୍ରେଟ ଝିଅ, ତା'ର ମାଆ ବସିଛନ୍ତି । ଧାଇଁଲା ବ୍ଳେକ ସେମାନଙ୍କ ଭିତରକୁ । ଝିଅ ଚାରିଟା ଦରବେଶିରେ ଡାକୁଥାନ୍ତି 'ବ୍ଳେକ ଆ' 'ବ୍ଳେକ ଆ !' ବ୍ଳେକ ତାଙ୍କ ପାଖକୁ ନ ଯାଇ ତାଙ୍କ ଜେଜେମା ଅଡ଼କୁ ଗଲା ଏବଂ କଇଁ କଇଁ ହୋଇ ଲାଞ୍ଜ ହଲାଇ ତା'ଉପରକୁ ଚଢ଼ିଗଲା । ସେ ବୁଢ଼ୀ

ଦୁଇବର୍ଷ ପୂର୍ବେ ଆମ ଘରେ ବାସନକୁସନ ମଳାମଜା କରୁଥିଲା । ବୁଢ଼ୀ ଅଜାଣତରେ ଉଚ୍ଛୁଳି ଛୁଡ଼ା ହୋଇଗଲା; ବ୍ଳେକକୁ ଟେକିନେଇ କାଖ କଲା, ଚାଟିଦେଲା, ବ୍ଳେକ ଲାଞ୍ଜୁଥାଏ ଛଟପଟ ହୋଇ ଯାହାର ଅର୍ଥ "ଏତେଦିନ କୁଆଡ଼େ ଯାଇଥିଲୁରେ ବୁଢ଼ୀ, ମୁଁ ତତେ କେତେ ଖୋଜୁଥିଲି, ଆଜି ଯିବୁ କୁଆଡ଼େ, ଛାଡ଼ିବି ନାହିଁ ।" ବୁଢ଼ୀ ବି ତା'ର ଭାଷା ବୁଝି କାନ୍ଦ କାନ୍ଦ ହେଲା । କହିଲା "ମୁଁ ଜାଣେରେ ବ୍ଳେକ ମତେ ତୁଇ କେଡ଼େ ଭଲପାଉ; ହେଲା, ହେଲା ଏଥର ମଝିରେ ମଝିରେ ତର ଘରକେ ଯାଇ ଦେଖା କରି ଆସିବି ।"

ନିତ୍ୟକର୍ମ ସାରି ଫେରନ୍ତା ବାଟରେ ଅଗରୱାଲ ଭବନରେ ଫାଟକ ଖୋଲା ଥିବାର ଦିମିତ ଦେଖି ଦେଖିଛୁ ସିମିତ ଭିତରକୁ ସିଧା ଚାଲିଗଲା । ମୁଢ଼ି ବାଲାଟାଏ ବଡ଼ ଅଖାରୁ ମୁଢ଼ି ବିକୁଥାଏ । ତାର ପାଖରେ ହାଜର । ସେ ଆମ ଘରେ ବି ମୁଢ଼ି ଦିଏ; ବ୍ଳେକ ତାକୁ ଚିହ୍ନେ । ତା' ମୁଠାଏ ମୁଢ଼ି ସେ ପାଏ; ସେତିକି ମୁହୂର୍ତ୍ତକେ ସେ ଅଦାୟ କଲା । ସ୍ୱୟଂ ଅଗରୱାଲ ତଳକୁ ଆସି ନିଜେ ମୁଢ଼ି ନେଉଥାନ୍ତି । ମୋତେ ଖୁସିଲାଗିଲା ଯେ ଏଡ଼େ ବଡ଼ ଲୋକ ହୋଇ ଗରିବଙ୍କ ବ୍ରେକ୍‌ଫାଷ୍ଟ ଖାଉଛନ୍ତି, ଭଲପାଉଛନ୍ତି । ଯେ ଦେଖେ ଯାଇ, ସେ ଫଳ ଖାଇ । ତାଙ୍କ ସାତ ଆଠ ବର୍ଷର ପିଲାଟି ବ୍ଳେକକୁ ଦେଖି ବରବର ଫାଟକ ସେ ପାଖରୁ ଡାକେ । ଅଳ୍ପ ପାଖରେ ଯାଇ ତାକୁ ଅଉଁସିଲା । ବ୍ଳେକ ତାକୁ କିଛି କଲା ନାହିଁ । ଉଭୟେ ବାପ ପୁଅ ବ୍ଳେକର ଚେହେରା ଓ ଗୁଣରେ ତାରିଫ୍ କଲେ । ପରଦିନ ବି ବ୍ଳେକ ଫାଟକ ପାର ହୋଇ ଭିତରେ ଚାଲିଗଲା ଏବଂ ଉଭୟ ବାପ ପୁଅ ତାକୁ ଶରଧା କଲେ, ମୁଁ ଫାଟକ ପାଖରେ ଛିଡ଼ା ହୋଇଥାଏଁ । ମୋର ଧାରଣା ଥିଲା ଗରିବ ଲୋକମାନେ କୁକୁରକୁ ଭଲପାଆନ୍ତି; ଧନୀମାନେ କେବଳ ଅମୂଲ୍ୟତା ପାଇଁ କୁକୁର ରଖନ୍ତି । ଏ କ୍ଷେତ୍ରରେ ବ୍ୟତିକ୍ରମ ଥିଲା ପରି ଲାଗିଲା ।

ଆଶ୍ଚର୍ଯ୍ୟ କଥା, ପରଦିନ ଅଗରୱାଲ ସାହେବ, ତାଙ୍କ ପତ୍ନୀ ଏବଂ ତାଙ୍କର ସାତ ଆଠବର୍ଷର ପୁଅଟି ଆମ ଘରକୁ ନୂଆ ଅମ୍ବାସାଡ଼ର ଗାଡ଼ିରେ ହଠାତ୍‌ବେଳେ ଆସିଲେ । ସେମାନେ ମୁଢ଼ି କିଣିବା, କୁକୁରକୁ ଶ୍ରଦ୍ଧା କରିବା ମୋତେ ସିମିତ ବିସ୍ମିତ କରିଥିଲା ସେମିତି ବୁଲିଆସିବା ବି ମତେ ବଡ଼ିଯ ଲାଗିଲା । ତାଙ୍କ ଶୁଭାଗମନର କାରଣ ପଚାରିବାକୁ ଯାଉଛି, ଅଗରୱାଲ ସାହେବ କହିଲେ, "ଦେଖନ୍ତୁ, ଆପଣଙ୍କ ଏଇ କୁକୁ

( ମୁଁ କହିଲି କୁତ୍ତା ନୁହେଁ କୁତ୍ତୀ ) ସ୍ୱାମୀଙ୍କୁ ବହୁତ ପସନ୍ଦ, ମତେ ସ୍ୱାମୀର ସ୍ତ୍ରୀ ଅଲ୍ଲର ଏଇ ବନ୍ଧୁକୁ ବହୁତ ବହୁତ ବଢ଼ିଆ ଲାଗିଛି । ଗୋଟେ ପ୍ରସ୍ତାବ ଦବାର ଅଛି । ମତେ ଯଦି ଏ କୁତ୍ତା ଦେବେ ତେବେ ମୁଁ କଲିକତାରୁ ଆଣିପଙ୍କ ପାଇଁ ଆଲେଶେସିଆନ, ଡୋବାରମେନ୍, ନେପାଲିଜ, ଚାଇନିଜ୍, ଜାପାନିଜ୍ ଯେଉଁ କୁତ୍ତା କହିବେ ଯେତେ ପଇସା ପଡ଼ୁ ଆଣିଦେବ ସ୍ୱପ୍ତା ଏ ଭିତରେ । ଦେବେ ?"

ମୁଁ ଖେକ୍‌ଠୋକ୍ ଉତ୍ତର ଦେଲି "ମାଫ୍ କରିବେ ଅଗ୍ରଓ୍ୱାଲଜୀ, ମତେ ସ୍ୱର୍ଗର କୁତ୍ତା ଦେଲେ ବି ମୁଁ ରାଜି ନାହିଁ । ବ୍ଲେକି କ'ଣ କୁକୁର ଅଛି ? ସେ ଅନେକ ଦିନରୁ ମଣିଷ ହୋଇଗଲାଣି । ତା' ନ ହୋଇଥିଲେ ଯେତେବେଳେ ସ୍ୱାର୍ଥପର ପେଟ ବେମାରରେ ଛଟପଟ ହେଉଥାଏଁ ପିଲାଝିଲାଏ ଏପରିକି ସ୍ତ୍ରୀ କଟୋଡ଼ ନିଦରେ ଘୁଙ୍ଗୁଡ଼ି ମାରୁଥାନ୍ତି, ଏଇ ବ୍ଲେକିଟି ମୋର ମୋ ପାଖରେ ବସି ଚାହିଁଥାଏ, ପାଙ୍ଗ ଦଏ, କଥା ବୁଝେ । ତାକୁ ଅପଣ ନେଲେ ମୁଁ ବଞ୍ଚିବି ନାହିଁ, ସେ ବି ।" ସେମାନେ ନିରାଶ ହୋଇ ଚାଲିଗଲେ । ବ୍ଲେକି ଖପ୍‌କରି ମୋ କୋଳକୁ ଡେଇଁ ମୋ ମୁହଁରେ ଚୁମା ଦେଲା ।



# ଶୁଚୁସ୍ମ

ସକାଳୁଆ କଚେରୀ ପାଇଁ ହେଉ ବା ମାତ୍ର ଅଢ଼େଇ ଖଣ୍ଡ ଯାତ୍ରୀଡ଼ବା ପାଇଁ ହେଉ ଆଜି ସକାଳର ଲୋକାଲ ଟ୍ରେନଟା ଖୁବ ଭିଡ଼ ଥିଲା।

କନାଥଳିଟାରେ ଟିଫିନ କେରିଆର ଏବଂ ଫାଇଲ୍ ବେଗ୍‌କୁ ପୁରାଇ ଭିଡ଼ ଭିତର ଡେଇଁ ଯାଉଥାଏ ଏବଂ ଆଖି ପକାଉଥାଏଁ କେଉଁଠି ବସିବା ପାଇଁ ଚାରିଖଣ୍ଡେ ଅଧେ ଜାଗା ମିଳିବ; କାରଣ କୋଡ଼ିଏ ପଚିଶ କିଲୋମିଟର ରାସ୍ତା ଛିଡ଼ାହୋଇ ଭିଡ଼ ଭିତରେ ଚାପି ହୋଇଯିବାକୁ ସତୁରି ବର୍ଷର ବୁଢ଼ାକୁ ନିଶ୍ଚୟ କଷ୍ଟ ହେବ।

ଡବାର ମଝି ପର୍ଯ୍ୟନ୍ତ ଅଡ଼ବଡ଼ ହୋଇ ଚାଲିଯାଇ ଦେଖିଲି ଭିଡ଼ ଅପେକ୍ଷାକୃତ କମ୍। ଯୋଡ଼ାକଯାକ କାଠବେଞ୍ଚର ପ୍ରତ୍ୟେକଟିରେ ପୁରୁଷ-ସ୍ତ୍ରୀ ମିଶି ଚାରିଜଣ ଲେଖାଏଁ ବସିଛନ୍ତି, କିଏ କାହାର ପୁରୁଷ କିଏ କାହାର ସ୍ତ୍ରୀ ବାଛିବା ମୁସ୍କିଲ୍। ପିଲାଛିଲା କେତୋଟା ସେମାନଙ୍କ ମଝିରେ ଚିଲବିଲ ହେଉଛନ୍ତି। ନିଜର ସ୍ତ୍ରୀ ବହୁଦିନ ଧରି ନ ଥିବାରୁ ଏବଂ ସାନ ସାନ ପିଲାଛିଲା ପାଖରେ ନ ଥିବାରୁ ମୋତେ ଛୁଆଳି ସ୍ତ୍ରୀଲୋକ ବା ଦୁଧ ପିଉଥିବା ପିଲାଛିଲା ଦେଖିଲେ ଖୁବ୍ ଘୃଣା ଲାଗେ। (ବାନ୍ତି, ଶିଙ୍ଘାଣି, ଝଲୁଟି, ପଚ୍ ପଚ୍ ତରଳ ଝାଡ଼ା, ପାଚିଲା ଲାଳ, ଗରଳ ମୁଁ ସହିପାରେନା। ମାଆଗୁଡ଼ାଙ୍କ ଛୁଆଙ୍କଠୁଁ ବଳି ଅପରିଚ୍ଛନ୍ନ। ତାଙ୍କ ଦେହ ଲୁଗାପଟାରୁ କିମିତି ଗୋଟାଏ ଦୁଧିଆ ଚକ୍ରିଆ ଗନ୍ଧ ଭୁରୁଭୁରୁ ହୋଇ ବାହାରୁଥାଏ।

ଦେଖିଲି ଯୋଡ଼ାକଯାକ ବେଞ୍ଚରେ ମୋ ପାଇଁ ପ୍ରତ୍ୟେକଟିରେ ଚାରିଖଣ୍ଡେ ଚାରିଖଣ୍ଡେ ଜାଗା ବାହାରିବ। ଗୋଟାଏ ବେଞ୍ଚରେ ଯେଉଁ ଚାରିଜଣ ଯାତ୍ରୀ ଥିଲେ

ସେମାନଙ୍କ ଭିତରୁ ଜଣେ ଜଙ୍ଘ ପର୍ଯ୍ୟନ୍ତ ମସିଦ୍ଧା ଛୁଣ୍ଡା ଧୋତି ଟେକ ବେଞ୍ଚ ଉପରେ ପାଦ ରଖି ଇଣ୍ଡିଆନ ମାର୍କା ବଡ଼ରୁ କଡ଼ା ଧୂଆଁ ଗ୍ରହଣ୍ଡୁଛି । ତା ପାଖକୁ ଗଗଲସ୍ ଲଗାଇ ଦେବର୍ପେ ବସିଛି ଏକ ନୂଆ ନଣ ଗଜୁରିଥିବା ଟୋକା । ରଙ୍ଗୀନ ରୁମାଲ ଦେଇ ସେ ତାର କୁନ୍ତଳ ବାନ୍ଧିଛି; ଗ୍ରୁଡ ବୋତାମ ଖୋଲା; ପକେଟରେ ଲେଖାଅଛି I Love You. ପାଖରେ ତାର ତନୁପାତଳୀ ସ୍ତ୍ରୀ, କାଳୀ, ଟେଣ୍ଟା, ଦାନକପାଳୀ, ଅଠେଦଶ ମାସ ହବ ଛୁଆର ମାଆ ହୋଇଛି । କୁନ ଝିଅଟି ସ୍ୱାକୁ ତାକୁ ଚାହିଁ ବାପା ନାକୁଛି । ବାପା ମାଆ ଉଭୟର ଅନନ୍ଦର ସୀମା ନାହିଁ । ଝିଅ କଥା କହିଲଣି । ଗୋଡ଼ ତଳେ ପ୍ଲାଷ୍ଟିକ୍ ଝୁଡ଼ି ସ୍ତ୍ରୀର ହେପାଜତରେ ନଗ୍ନପଦରେ ଅଚ୍ଛି । ସେମାନଙ୍କ ପାଖରେ ଅଉ ଏକ ଝିଅ, (ତାଙ୍କର ହୋଇପାରେନା ବୟସ ଦୃଷ୍ଟିରୁ) ମଫସଲୀ, ମସିହା ଛିଟଫ୍ରକ୍ ପିନ୍ଧିଛି । ତାର ରୂପ ରସ ଗନ୍ଧ କିଛି ନାହିଁ ସିମିତ । ଝିଅଟା ଦେଖି ବାହାଚକୁ ଚାହିଁ ଅଦେଖିଲା ପରି ଟୋରୁଗାଇ ଛେଳମେଣ୍ଢା କୁଆଡ଼ଣି ଦେଖିଦେଖି ଗ୍ରେଣ ଖୁସି । ଚାହିଁଥିଲେ ହୁଏତ ସେ ବେଞ୍ଚରେ ମୋତେ ଜାଗା ମିଳିଯାନ୍ତା । କିନ୍ତୁ ପ୍ରଥମ ଦର୍ଶନରେ ଯେଉଁଠି ଘୃଣାଭାବ ସେଠି କାହାର ସାନ୍ନିଧ କାମନା କଲି ନାହିଁ ।

ଅନ୍ୟ ବେଞ୍ଚ ଦଖଲକାରୀମାନେ ବି ଅନୁରୂପ ରୂପରଙ୍ଗର; କିନ୍ତୁ ସେମାନଙ୍କ ମୁହଁରେ "ସ୍ୱାଗତମ୍" ଲେଖାଥିଲା ପରି ଲାଗିଲା । ସେଠି ଯେଉଁ ସ୍ତ୍ରୀ ଲୋକଟି କାକକୁଜ୍ଞ ହୋଇ ବସିଥିଲା ତା ଚେହେରା ଦେଖିଦେଲାମାତ୍ରେ ଜାଣିଲି ସେ ନିଶ୍ଚୟ ଅନୁସୂଚିତ ଜାତିର ହୋଇଥିବ ଏବଂ ତା ପାଖରେ ଅଦ୍ୟାପି ସରକାରୀ ସାହାଯ୍ୟ ବା ସହାନୁଭୂତି ପହଞ୍ଚିଥିବାର ଲକ୍ଷଣ କିଛି ଦେଖାଯାଇ ନାହିଁ । ପାଖରେ ତା ସ୍ୱାମୀ ନାହିଁ । ଯୋଡ଼ାଏ ଛୁଆ । ଦୁହିଁର ଶର୍ଦ୍ଦି ଦୁହିଁଙ୍କ ନାକରେ । ଝରିବାକୁ ଆରମ୍ଭ କରିଛି ।

ସ୍ତ୍ରୀଲୋକଟି ଯେମିତି ଇଞ୍ଚେ ଦ'ଇଞ୍ଚ ଘୁଞ୍ଚିଛି ଏବଂ ଗୋଟାଏ ଛୁଆକୁ କୋଡ଼କୁ ନେଇଛି ମୁଁ ସୁଯୋଗ ନେଇ ତରବରରେ ବସିପଡ଼ିଲି ତା ଦେହରେ ପ୍ରାୟ ଲାଗିଯାଇ । ତାର ବି ଯୋଡ଼ିକ ଯାକ ଝିଅ । ଭାବିଲି ଭଗବାନ ଏବେ ପୁଅ ଜନ୍ମ ହେଉନାହାନ୍ତି; ସେ ବି ବୋଧହୁଏ ଜାଣିଲେଣି ପୁଅଗୁଡ଼ାକ ଉତ୍ପାତିଆ; ତାଙ୍କ ସୃଷ୍ଟିକି ଧ୍ୱଂସ କରିବା ତାଙ୍କ ଜନ୍ମଗତ ପ୍ରକୃତି ।

ନିଃଶ୍ୱାସର ବେଗ ଧୀରେ ଧୀରେ କମିଲା । ରୁମାଲ ବାହାର କରି ଝାଳ ପୋଛୁଥାଏ ଏବଂ ଥଳିଟାକୁ ଦୁଇ ଗୋଡ଼ ମଝିରେ ଖୋଇ ସାବଧାନରେ ରଖିଥାଏ ଯେମିତି କେଶରର ଗନ୍ଧଯାଉ ଡାଲି, ମାଛଚୋଳ, ଦହି, ବିଲାତିବାଇଗଣ ଖଟା, ମିଶି ଏକାକାର ହୋଇ ନଯାଏ । ଡାହାଣ ପାଖରେ ମୋଟ ବୟସର ଏକ ଧଳାମୁଣ୍ଡିଆ ମୋଟାସଳ ବୁଢ଼ା ବସିଥାଏ ଯାହାକୁ ମୁଁ ବୁଝାଉଥାଏ ଭେକ୍ୟୁମ ଫିଟାଇଲେ କାହିଁକି ତିନଥର କୁ କୁ କୁ ହୋଇ ହୁଇସିଲ୍ ବାଜେ ଏବଂ କାହିଁକି ଲୋକାଲ ଗାଡ଼ିର ଚେନ୍ ଟାଣିଲେ ଗାଡ଼ି ଛିଡ଼ା ହୁଏନା । ସେ ବଲ ବଲ କରି ମୋ ମୁହଁକୁ ଚାହିଁ ମୋ ଜ୍ଞାନର ତାରିଫ୍ କରୁଥାଏ ।

ମୋ ସାମନାର ନୂଆ ବାପମାଆ ବନିଥିବା ଯୋଡ଼ିଟିକୁ ମୋତେ ଭଲ ଲାଗୁଥାଏ; ସେ ଦୁହେଁ ଦେଖେଇ ହେଉଥାନ୍ତି, ସମସ୍ତଙ୍କୁ ଯିମିତ ଜଣାଇ ଦେବାର ଇଚ୍ଛା "ଦେଖ ଆମେ କେତେ ଅଳ୍ପ ସମୟରେ କେତେ ଯତ୍ନରେ କେତେ କାମ କରି-ପାରୁ ।" ବାପ ବାରମ୍ବାର ଝିଅକୁ ନେଇ ନାନା ମୁଖଭଙ୍ଗୀ, ଖେଳ କଉତୁକ ଦେଖାଉଥାଏ; ଝିଅ ଖିଲ୍ ଖିଲ୍ ହସେ, ବାପ ହସେ, ସେ ଦୁହିଁଙ୍କି ଦେଖି ମାଆ ଫୁଲି ଫୁଲି ହସି ଉଠେ । ତାଙ୍କ ପାଖ ଫ୍ରକ୍‌ପିନ୍ଧା ଝିଅର (ଭଉଣୀ ହୋଇଥିବ ଟୋକାଟାର) କିନ୍ତୁ ପ୍ରତିକ୍ରିୟା ନାହିଁ ସେ ଖାଲି ଚାହିଁଥାଏ ଯହିଁକି ତା ଆଖିଯାଏ କାରଣ ସବୁ ତା' ପକ୍ଷରେ ନୂଆ ।

ଏଣେ ମୋ ପାଖ ସ୍ତ୍ରୀଲୋକଟି ତା କୁନିଝିଅକୁ ଗୁଡ଼ରେ ଆଉଜାଇ ଧରିଥାଏ, ଦୁଧ ଗୋଟାକୁ ଚିକ୍‌ନା ଭରି । ବଡ଼ ଝିଅଟା ରେଲିଂ ଧରି ନାଚୁଥାଏ । ରୂପା ଷ୍ଟେସନ ପାର ହେଲାବେଳକୁ ତା ମାଆ ତାକୁ ତା ଭାଷାରେ ଯାହା କହିଲା ତାର ଅର୍ଥ ମୁଁ ଅନୁମାନରେ ଯାହା ବୁଝିଲି ତାହା ହେଲା, "ହେଇ ଦେଖ ସାନ ରେଲ ଲାଇନ୍‌କୁ ହେଇ ଦେଖ ପୁରୁଣା ରେଲ ।" ସାନ୍ତାଳୀ ଭାଷାରେ କହିଲେ ମଧ୍ୟ "ରେଲ ସଡ଼କ୍" ଶବ୍ଦ ସେ ବ୍ୟବହାର କରିଥିଲା । ମୋର ହୃଦବୋଧ ହେଲା ରାଷ୍ଟ୍ରଭାଷା ଅପେକ୍ଷା ସାନ୍ତାଳୀ ଭାଷା ଉନ୍ନତ ଦ୍ରୁତତର ହେବ । କାରଣ ସାନ୍ତାଳୀ ଭାଷା ରକ୍ଷଣଶୀଳ ନୁହେଁ, 'ରେଲ' ବା 'ସଡ଼କ', କେହି ସାନ୍ତାଳୀ ଶବ୍ଦ ନୁହଁନ୍ତି । ତାକୁ ପ୍ରୟୋଗରେ ସାନ୍ତାଳୀର କୁଣ୍ଠା ନାହିଁ ଅଥଚ ରାଷ୍ଟ୍ରଭାଷା 'ବଲ'କୁ ଗେଁଦ କହିବେ; ସର୍ବଜନବୋଧ 'ବଲ' କହିବେ ନାହିଁ । ବେଟ୍‌କୁ ବଲ୍ଲା କହିବେ ।

ମୋର କମେ ଭୟ ହେଲା ଯେ ପରବର୍ତ୍ତୀ ସମ୍ଭାବତ ଏମିତ ଘଟଣାବହୁଳ ଓ ଅନାକର୍ଷଣୀୟ ହେବ ଯେତେବେଳେ ବଡ଼ିଆ ବେଶଭୂଷା ପରିହିତ ପେଷାଦାର ଭିକାରୀ ଆରମ୍ଭ କରିଦେଲା ବାବା 'ଆଇଶ୍ରେଲମଣି' ଗୀତ । ହାତରେ ଷ୍ଟେଟ ବମାନରେ ମଣିଙ୍କ ଫଟୋ ରଖିଛି, ନାନାରଙ୍ଗର କନାଗୁଡ଼ାଇ ସେଥିରେ ଗୁଡ଼େ ଗଣ୍ଡଆ ଧୂପକାଠି ଜାଳିଛି ଏବଂ ଖଡ଼ିକା ଖଣ୍ଡିକରେ ସ୍ୱା ତା କପାଳରେ ମଣିଙ୍କ ଚନ୍ଦନ ଲେପୁଛି ।

ଏଗୁଡ଼ାକୁ ଦେଖିଲେ ମୋର ରକ୍ତ ଫୁଟିବାକୁ ଆରମ୍ଭ କରେ, ବରଂ ପଇସା-ଗୁଡ଼ାକୁ ନର୍ଦ୍ଦମାଲରେ ଫୋପାଡ଼ି ଦେବି ତେବେ ଏ ପେଶାଦାର ଭକ୍ତ ବା ଭିକାରୀ-ଗୁଡ଼ାକୁ ଦେବି ନାହିଁ । କେଜାଣି କାହିଁକି ହାତଟା ପକେଟରେ ଆପେ ଆପେ ପଶିଗଲା । ଦେଖିଲି ଯୋଡ଼ାଏ ଦଶପଇସି ଅଛି । ଘରୁ ବାହାରିଲାବେଳେ ଟେବୁଲ ଉପରୁ ଏ ଦୁଇଟାକୁ ଗୋଟାଇ ଆଣି ପକେଟରେ ପୂରାଇ ଦେଇଥିଲି, କାଳେ କେତେବେଳେ ଦରକାର ପଡ଼ିପାରେ । ନାନା ସମସ୍ୟା ଭିତରେ ଏବେ ଦେଶରେ ଖୁଚୁରା ଏକ ସମସ୍ୟା ରୂପେ ଦେଖା ଦେଇଛି । ଯାହାର କୌଣସିମତେ ସମାଧାନ ହୋଇପାରୁନି । କିଏ ବାକି ରଖୁଛି, କିଏ ଗୁଡ଼ ଦେଉଛି, କିଏ ଦରକାର ଅଦରକାରୀ ଜିନିଷକୁ ମିଶାଇ ଗରାଖଙ୍କୁ ପୁରା ଟଙ୍କାର ବଣ୍ଡା ଦେଉଛି । ଖୁଚୁରା ନାହିଁ ତ ବହୁ ଆକାଂକ୍ଷିତ ପଦାର୍ଥ କିଣି ହେଉନି । ପୁରା ଟଙ୍କାଟି ମଧ୍ୟ ଖୁଚୁରା ପାଲଟି ଯାଉଛି, ଟଙ୍କାଳିଆ ନୋଟ ଆଙ୍ଗୁଳିରେ ଉଠାଇ ହେଉନି, ଖସି ପଡ଼ୁଛି । ଖୁଚୁରା ପାଇଁ ବଜାରରେ ପାଟିତୁଣ୍ଡ, କଳିତକରାଳ ଏପରିକି ମାରପିଟ । ଏଇ ଯେ ଭିକାରୀ ଦ'ଟା ଯେମାନେ ଖୁଚୁରାରେ ବ୍ଲେକ୍ କରି ନୂଆ ରୋଜଗାର ପନ୍ଥା ବାହାର କରିଛନ୍ତି ।

ଦେଖିଲି ପାଖ ସ୍ତ୍ରୀ ଲୋକଟା ଲୁଗାକାନି ଫିଟାଇ ଦ'ଟଙ୍କିଆ ନୂଆ ନୋଟଟାଏ ବାହାର କରି ତା ସିଙ୍ଘାଣିଆ ସାନଝିଅ ହାତକୁ ବଢ଼ାଇ ଦେଲା । ଯେତେବେଳେ ସେ କେଁ କେଁ ହୋଇ କାନ୍ଦିବାକୁ ଆରମ୍ଭ କଲା ଗରମ ସମ୍ଭାଳି ନ ପାରି । ଆଶ୍ଚର୍ଯ୍ୟ କଥା ଛଅ ଆଠ ମାସର ଝିଅ ଦ'ଟଙ୍କିଆ ନୋଟରୁ କ'ଣ ପାଇଲା ଯାଙ୍ଗେ ଯାଙ୍ଗେ ଚୁପ୍ ହୋଇଗଲା । ଟଙ୍କା ପଇସାର ମୂଲ୍ୟ ଜନ୍ମ ପଡ଼ିଲା ଛୁଆ ବି ଜାଣୁଛି । ରେଲ୍‌ଂ ଧରି ଛିଡ଼ା ହୋଇଥିବା ବଡ଼ ଭଉଣୀ ତା ହାତରୁ ନୋଟଟା ଛଡ଼ାଇ ନେଇ ହାତ ବାହାର କରି ପବନରେ ଫରଫର ଉଡ଼ାଇ ଖେଳନା କଲା । ମୋ ଭିଡାରେ ତା ମାଆକୁ କହିଲି

"ଦେଜା ତାକୁ ନୋଟଟା, ପବନରେ ଉଡ଼ିଯିବ । ଟଙ୍କା ପଇସା ଦେଇ ଜୁଆ ଖେଳାନ୍ତୁ ନା !" ମୋ କଥା (ଠାର) ଅନ୍ଦାଜରେ ବୁଝିପାରି ମୋ କଥାମାନ ନୋଟଟି ଆଣି ପୁଣି ତା ଲୁଗାକାନିରେ ଗଣ୍ଠି କରି ରଖିଦେଲେ ।

ବସ୍ତା ଷ୍ଟେସନ । ଶହେ ଖଣ୍ଡେ ପାନ ଝୁଣ୍ଡ ଗାଡ଼ିକି ଉଠିବ । ପବନ ବନ୍ଦ । ଗରମର ସୀମା ନାହିଁ, ମଣିଷ ଦେହରୁ ପ୍ରଚଣ୍ଡ ତାତି ଝରୁଛି । ପଙ୍ଖାଗୁଡ଼ାକ ଛାତରେ ଗହଣା ଭଳି ଝୁଲୁଛନ୍ତି । ସଂଖ୍ୟାତୀତ ପଙ୍ଖା କଳ୍ପ ସମସ୍ତେ ଚଳନ୍ତି ଶକ୍ତି ରହିତ । ମୃତ । ଏ ଷ୍ଟେସନରେ ବି ଭିଡ଼ କମିବା ପରିବର୍ତ୍ତେ ବଢ଼ିଲା । ଦେଖିଲି, ଯେଉଁ ସ୍ଥାନରେ ମୁଁ ପ୍ରଥମେ ଛିଡ଼ା ହୋଇ ବସିବା ସ୍ଥାନର ସନ୍ଧାନ କରୁଥିଲି ସେଇଠି ଆଉ ଏକ ସ୍ତ୍ରୀ ଛିଡ଼ା ହୋଇଛି କାଖରେ ଛୁଆଟିଏ ଧରି । (ତାର ବି ଝିଅ ! ଖୁବ୍ ବ୍ୟାକୁଳ ଆଖିରେ ସେ ଖୋଜୁଛି ଟିକିଏ ବସିବା ସ୍ଥାନ ନ ହେଲେ ଦମ୍ ମାରିବା ସ୍ଥାନ । କାଖର ଛୁଆଟା ବେଶ ଓଜନଦାର ତ ! କେହି ତା ଆଡ଼କୁ ନଜର ଦେଲେ ନାହିଁ । ବୀଭତ୍ସ ବିକଳ ମୁମୂର୍ଷୁ ସହଯାତ୍ରୀ ନ ହେଲେ କେଉଁବି ସେ ପାଦେଷ୍ଟର ଟ୍ରେନ ହବ କମିଛି ?

ମୁଁ ପୁଣି ମଧ୍ୟଯୁଗୀୟ ନାଇଟ୍ ପରି ଶେଲେଣ୍ଟ ହୋଇ ଉଠିଲି । ନାସ୍ତି ଜାତି ନର୍ଯ୍ୟାତିତ ହେବ; ଅସହାୟ ହୋଇ ଦୁଃଖ ଯନ୍ତ୍ରଣା ଭୋଗିବ ଏହା ନାଇଟ୍ ସହିବ ନାହିଁ ବୋଲି ରଜା ଅଗରେ ସିମିତି ଶପଥ ନେଇଛି ।

ସେତେବେଳକୁ ମୁଁ ବେଶ୍ ଜାଣିଲଣି ଯେ ପାଖରେ ଯୋଡ଼ିଏ ଛୁଆ ନେଇ ବସିଥିବା ଆଦିବାସୀ ସ୍ତ୍ରୀ ଲୋକଟି ଏକାବେଳକେ ନିସ୍ପୃହା, କାର୍ଣ୍ଣରେ ଓଜନର ଅପନ୍ତି ନାହିଁ, ସବୁ କଥାରେ ବାଧ୍ୟ । ତା ଆଡ଼କୁ ଚାହିଁଛି କି ନାହିଁ ସେ ପୁଣି ପ୍ରଶ୍ନାସୂଚକ କରି ଆଉ ଚାଖଣ୍ଡେ ଖଣ୍ଡେ ଜାଗା ଦେଲା । ଛିଡ଼ା ହୋଇଥିବା ସ୍ତ୍ରୀ ଲୋକକୁ ଡାକିଦେଲି "ଆ ଏଠାକୁ ଆ ।" ସେ ଲାଜସଙ୍କୋଚରେ ଆସିଯାଇ ଆଦିବାସୀ ମହିଳା ଓ ମୋ ଭିତରେ ଥିବା ସ୍ଥାନରେ ବସିଗଲା । କୁନିଝିଅକୁ କୋଳରେ ରଖି ବସିଲା ମାତ୍ରେ ସେ ଝିଅଟି ମୋ ମୁହଁକୁ ଚାହିଁଲା, ଦେମାକୁ ଚାହିଁଲା, ଦାନ୍ତ ଦଣ୍ଟାକୁ ବି ଚାହିଁଲା । ମୁଁ ତାକୁ ଡରାଇବା ପାଇଁ ମୁହଁ ଆଁ କଲି । ସେ ନିଶ୍ଚୟ ଅନ୍ଧାର ଗହ୍ୱରରେ ଯୋଡ଼ାଏ ମାଚଲ ପଥର ପରି ଦୁଇଟା ଧଳା ଦାନ୍ତକୁ ଦେଖିଥିବ । ମୁଁ ଟିକିଏ ତାକୁ ହସାଇବା ପାଇଁ ମୁଖ ଆଖି ଭଙ୍ଗୀ କଲି । ଆରେ ! ସିମିତି ତା ସାଙ୍ଗରେ ମୋର କେଉଁ ଦିନର ରକ୍ତର

ସମ୍ପର୍କ ! ସରସ ସୁନ୍ଦର କୁନି ହସଟି ତା' ମୁହଁରେ ପ୍ରତିଦାନ ସ୍ୱରୂପ ଫୁଟିଉଠିଲା । ତା ମାଆ ଏଥର ବେଶ୍ ଖୋଲା ହସ କୃତଜ୍ଞତାର ସୁହାଣୀ ଦେଲା । ତାକୁ କହିଲି "ଆଉ ଅଳ୍ପ ସମୟ ପରେ ମୁଁ ଓହ୍ଲାଇ ଗଲେ ତୁ ଆରାମରେ ବସିକରି ଯିବୁ ।"

ମୋର ପ୍ରତିଟି କଥା, କାମ ଯାତ୍ରୀମାନେ ଲକ୍ଷ୍ୟ ନିରୀକ୍ଷଣ କରୁଥାନ୍ତି । ପୋଷାକ ପରିଚ୍ଛଦରେ ସହଯାତ୍ରୀମାନଙ୍କ ସହିତ ଆକାଶ ପାତାଳ ପାର୍ଥକ୍ୟ ଥିବାରୁ ସେମାନେ ହୁଏତ ଚିଡ଼ିଆଖାନା ବା ଯାଦୁଘରର ଏକ ପ୍ରାଗୈତିହାସିକ ଜୀବ ବୋଲି ଭାବୁଥିବେ । ମୋତେ ଏମେ ଅଶ୍ୱସ୍ତି ଲାଗୁଥାଏ । ଖୁଚୁରା ଭିତରେ ମୁଁ ନିମିତ୍ତ ନମ୍ବସ୍ତ ।

ଡବା ଦୁଆର ମୁହଁଆଡ଼ୁ ଡାକ ଶୁଭିଲା, "ଖଟା ମିଠା ଲେମ୍ବୁ ନାରଙ୍ଗ, ଗୋଟାକ ଦଶ, ତିନିଟା ପଚିଶ । ପତଳା ଲୋକଟି, ବେକରେ ଶାନ୍ତିନିକେତନୀ ଝୁଲି, ପେଟ ଗ୍ରନ୍ଥିକୁ ଲଗାଇ ବାଁ ହାତରେ ଜାବୁଡ଼ି ଧରିଛି ଏକ ବିରାଟ ଓ କଳିଆ କାଚଡବା, ଯାହା ଭିତରେ ମୁହଁ ପର୍ଯ୍ୟନ୍ତ ବିଭିନ୍ନ ରଙ୍ଗର ଲଜେନ୍ସ୍ ରହିଛି । "ଖଟା ମିଠା ଲେମ୍ବୁ ନାରଙ୍ଗ, ଗୋଟାକୁ ଦଶ, ତିନିଟା ପଚିଶ ।"

ଯେତେ ପିଲାଝିଅ ଥିଲେ ସମସ୍ତେ ସତୃଷ୍ଣ ନୟନରେ ଚାହିଁ ରହିଲେ ଫାଦର କ୍ରିଷ୍ଟମାସ ଆଡ଼କୁ । ସେମାନଙ୍କ ବାପାମାଆ ମଧ୍ୟ ସଜାଗ ସତର୍କ ହୋଇ ଉଠିଲେ । ମୋ ସାମନାରେ ବସିଥିବା ଯୁବକ ସ୍ୱାମୀର ହାତ ଟଳବଳ କଲା ଖୁଚୁରା କେଉଁଠି ଅଛି ଅଣ୍ଡାଳିବାକୁ । ରାୟବାହାଦୁର ଦାତା ଶିରୋମଣି ଉପାଧି ପାଇବା ପାଇଁ ସେ ପୂର୍ବରୁ 'ବାବା ଅଖଣ୍ଡଳମଣି' 'କେଣେ ଯେବ ଯାଉଛ ଜଗନ୍ନାଥଙ୍କୁ' ଭଜନ ଗାଇଥିବା ପରମ ଭକ୍ତମାନଙ୍କୁ ପାଞ୍ଚପଇସି ଦାନ କରି ସାରିଛି । ପୁଣି ଡବା ବାହାରପଟୁ ହାତ ବଢ଼ାଇ ମାଗୁଥିବା କୁଷ୍ଠରୋଗୀକି ଛୁଆଙ୍କ ହାତ ଦେଇ ପାଞ୍ଚ ପଇସିଟିଏ ଦେଇଛି । ଖୁଚୁରାର ବେଙ୍କ୍ ହେଇ ଲୋକଟା । ତିନିଟା ସେ କିଣିଲା ଯୋଡ଼ିଏ ଦଶପଇସି ଗୋଟିଏ ପାଞ୍ଚପଇସି ଦେଇ । ସେମାନେ ଏମିତି ଭଙ୍ଗୀରେ ଖାଇବାକୁ ଲାଗିଲେ ଯେ ମୋ ପାଖ ଅନ୍ତତଃ ଦୁଇଟା ଝିଅର ଆଖିରୁ ପାଣି ପାଟିରୁ ଲାଳ ଝରିବାକୁ ଆରମ୍ଭ କଲା ।

ଆଦିବାସୀ ମହିଳାଟି ପୁଣି ଲୁଗା କାନିର ଗଣ୍ଠି ଫିଟାଇ ଦୁ' ଟଙ୍କିଆ ନୋଟଟି ବାହାର କରି ବିକାଳି ଆଡ଼କୁ ଦେଖାଇଲା । ସାଙ୍ଗେ ସାଙ୍ଗେ କଡ଼ା ଉତ୍ତର "ରେଜା ନାହିଁ, ଖୁଚୁରା ହବନି, ରେଜା ଦିଅ ।" ନୋଟ ଫେରାଇ ନେଲା ସ୍ତ୍ରୀଲୋକଟି । ମୋ ପାଖରେ ବସିଥିବା ସ୍ତ୍ରୀଟି ଖୁବ୍ ଗ୍ରେଟ ପ୍ଲାଷ୍ଟିକ ବେଗ୍‌ରୁ ଟଙ୍କିଆ ନୋଟ୍ ବାହାର କରି ବଢ଼ାଇଛନ୍ତି କି ନାହିଁ ସେଇ ଏକା ସ୍ୱର "ଖୁଚୁରା ହବନି, ରେଜା ଦେବତ ଦିଅ, ନହେଲେ ନାହିଁ ।" ତା' ହାତ ବି ଫେରିଗଲା । ସାମନା ଟୋକା ଓ ତା'ର ସ୍ତ୍ରୀ ଭରି ଖୁସି । ସେମାନେ କିଣି ପାରିଲେ; ସେଇଁଠି ଦୁଇଜଣ ଫେଲ ମାରିଲେ ।

ସେମାନଙ୍କ ତରଫ ହୋଇ ବିକାଳିକୁ କହିଲି, "ତୁ ନୋଟ ଭାଙ୍ଗେଇ ନ ପାରିବୁ ତ ଭଜନବାଲାଙ୍କ ପାଖରୁ ଭଙ୍ଗାଇ ଆଣ; ଦେଖୁନୁ ସିଅଧଟା ଲୋକେ ଜିନିଷ ଖାଇବେ ବୋଲି ବ୍ୟସ୍ତ ବିକଳ ହେଉଛନ୍ତି ଯା, ଯା ।" ଉତ୍ତର ଆସିଲା, "ଆପଣ ପାଉନାହାନ୍ତି । ସେମାନେ ଟଙ୍କାଏ ନେବେ ସତୁରି ପଇସା ଦେବେ, ତିରିଶ ପଇସା କଟି ।" ମୁଁ ଚୁପ୍ ।

ଖୁବ୍ ସନ୍ତର୍ପଣରେ ପକେଟରେ ପୁଣି ହାତ ପୁରାଇ ପାଇଲି ଦଶପଇସି ଯୋଡ଼ିକୁ । କିନ୍ତୁ ପକେଟରୁ ବାହାର କଲା ବେଳେ ଭାବିଲି, ଯଦି ଯୋଡ଼ିଏ ଛାଣି ଦୁଇ ଝିଅଙ୍କୁ ଦିଏ ତେବେ ହୁଏତ ଓଲଟା ଫଳ ଫଳିବ । ସାମନାରେ ବସିଥିବା ବାଳେ ଫୁଟାଣିଆ ଟୋକା ଓ ତା'ର ଟେଣ୍ଟି କାଳୀ ସ୍ତ୍ରୀ ଓ ତାଙ୍କର ସମବୟସ୍କଙ୍କୁ ନେଇ ଯାତ୍ରୀଗୁଡ଼ାକ ମତେ ଭଲ ଆଖିରେ ନ ଦେଖି, ମୋର ସବୁ କଥା ଓ କାମକୁ ବିଦ୍ରୂପାତ୍ମକ ଦୃଷ୍ଟିଭଙ୍ଗୀ ନିକ୍ଷେପ କରୁଛନ୍ତି ସେମାନେ ଅଧିକ ଖୋରାକ ପାଇଯିବେ ମୁଁ ଓହ୍ଲେଇ ଗଲା ପରେ ହସି ଥଟ୍ଟା କରିବା ପାଇଁ । ମୁଁ ଯାହା କରିବାକୁ ଚାହୁଁଥିଲି, ନିବୃତ୍ତ ହେଲି ।

ନମ୍ବରୀ ସ୍ତରରୁ ସର୍ବସାଧାରଣରେ ଖୁଚୁରା ସ୍ତରକୁ ଖସି ଆସିବାର ଦୁଃସାହସ ସଂଗ୍ରହ କରି ପାରିଲି ନାହିଁ; ଅନ୍ତରାତ୍ମା ବାଧା ଦେଲା । ମାତ୍ର ଆଶ୍ଚର୍ଯ୍ୟ କଥା, ଟ୍ରେନ୍‌ରୁ ଓହ୍ଲାଇ ଯିବା ପରେ ସେଇ ଅନ୍ତରାତ୍ମା ମତେ ପ୍ଲାଟଫର୍ମରେ ଅତି ଅଶ୍ଳୀଳ ଭଙ୍ଗୀରେ ଘୂରି ବୁଲୁଥିବା ବାରବନିତା ହାତରେ ସମସ୍ତଙ୍କ ଅଲକ୍ଷିତରେ ଯୋଡ଼ିକଯାକ ଦଶ

ପଇସି ସମର୍ପଣ କରି ଦେଇପାରିଲି । ନିଶ୍ଚିତ ରୂପେ ନମ୍ରତା ସ୍ତରରୁ ଖୁଚୁରା ସ୍ତରକୁ ଖସି ଆସିଲି ବୋଲି । ଏଥର ମୋର ହୃଦବୋଧ ହେଲା । ଏ ନମ୍ରତା ଝିଅଟା ପଇସା ପାଇଁ 'ବାବୁ ନମସ୍କାର' କହିଲା; ସେ ଝିଅଟା ଲଜେନସ୍ ଖାଇଥିଲେ ହୁଏତ 'ଅଜା ନମସ୍କାର, ଜେଜେ ନମସ୍କାର' ବୋଲି ତାଙ୍କ ଭାଷାରେ ଦରବଟିରେ ଶୁଣାଇଥାନ୍ତା ଏବଂ ଯଥାର୍ଥ ନମସ୍କାରର ଆନନ୍ଦ ଓ ଗର୍ବ ସାମାନ୍ୟ ଖୁଚୁରା ଦଶ ପଇସି ଦଟାରେ ପାଇଥାନ୍ତା । ମୁଁ ଖୁଚୁରା ହୋଇଗଲି । କିଏ କହିବ ମୁଁ ବା ମୋରି ପରି ଲୋକ ଥିଲାଯାକ ଖୁଚୁରାର ଅଭାବ ଅଛି ବୋଲି ଆମର ଏ ମଣିଷଙ୍କ ଦେଶରେ ?



# ଜନ୍ମଦିନ

ମୋତେ ଯଦି କେହି ପଚାରିବ, "ଆପଣ ବାପାମାଆଙ୍କ ଜନ୍ମଦିନ (ଏପରିକି ମୃତ୍ୟୁଦିନ) କେବେ କହିପାରିବେ ?" ମୋର ଉତ୍ତର ହେବ, "ବାପାମାଆଙ୍କ ଜନ୍ମଦିନ କ'ଣ ମୋର ନିଜ ଜନ୍ମଦିନ ବି କହିପାରିବି ନାହିଁ; କିନ୍ତୁ ସମ୍ରାଟ ପଞ୍ଚମ ଜର୍ଜ କେବେ ଭାରତକୁ ଆସିଥିଲେ ବା କେବେ ମଲେ କହିଦେବି ।"

ସତକହିଲେ ଜନ୍ମଦିନ ମୋର ମନେ ନାହିଁ, କେବଳ ସର୍ଟିଫିକେଟମାନଙ୍କରେ ବା ସରକାରୀ ସର୍ଭିସ ବହିରେ ଲିପିବଦ୍ଧ ହୋଇଥିବା ଜନ୍ମ ତାରିଖଟି କହିପାରେ । ସତରବର୍ଷ ଏକମାସ ଏଗାରଦିନ ମୁଁ ମେଟ୍ରିକ୍ ପାସ୍ କରିଥିଲି । ରେଭେନ୍ସା କଲେଜରେ ଏଡ୍‌ମିସନ ନେବା ଦିନଠୁ ବୟସ ବା ଜନ୍ମତାରିଖ ଅବସର ଗ୍ରହଣ ପର୍ଯ୍ୟନ୍ତ ଜାଣିବାର କେବେ ଚେଷ୍ଟା କରି ନାହିଁ । ଫେବୃୟାରୀ ପନ୍ଦର ଉଣେଇଶ ପନ୍ଦର ଏଇଟି ମୁଖସ୍ଥ ରହିଛି । ତା' ମଧ୍ୟ ସରକାର ଅବସର ଦେଲାବେଳେ ଫେବୃୟାରୀ ଏକ ତାରିଖ କରିଦେଲା ।

ଆମ ଅଞ୍ଚଳରେ ଜନ୍ମଦିନ ପାଳନ ପ୍ରଥା ହେଉନଥିଲା । ପିଲାଟିଏ ଜନ୍ମ ହେଲେ ନଅଦିନ ପାଳନ କରାଯାଉଥିଲା ଲୁଗାପଟା କଚାଇ ବା ହାଣ୍ଡିକୁଣ୍ଡି ବଦଳାଇ । ଏଇଟା ହେଲା ମାଆ ବିପଦମୁକ୍ତ ବୋଲି ଜାଣିବାର ଦିନ । ଏକୋଇଶିଅରେ ଉନ-ପଇସିଆ ତ୍ରିନାଥ ମେଳା ହୁଏ ବା ସତ୍ୟନାରାୟଣ ପୂଜା ହୁଏ ଯଦି ଫେଣାଏ ଅଧେ ବା କାନ୍ଦିଏ କଦଳୀ ମିଳେ । ଏକୋଇଶିଆର ତାତ୍ପର୍ଯ୍ୟ ପିଲା ବିପଦମୁକ୍ତ । ପିଲାର ସେଇଦିନ ନାଆଁ ଦିଆଯାଏ, ଠାକୁର ଆଗରେ ଶୁଆଇ ଦେଇ ।

ଜନ୍ମଦିନ କଥା ଉଠିଲେ ମୋର ମନେପଡ଼େ ବାପାମାଆଙ୍କ କଥାବାର୍ତ୍ତା । ମାଆ କହେ ଆଷାଢ଼ ମାସ ଗୁରୁବାର ମୀନ ଲଗ୍ନରେ ମୋର ଜନ୍ମ । ବାପା ଦିନ ତେରଣ···ଏମିତି କ'ଣ କହନ୍ତି । ମୋର ଜନ୍ମଜାତକ ତିଆରି ହୋଇଥିଲା ଏବଂ କୁଟୁମ୍ବଙ୍କ କୋଷ୍ଠୀ ସହିତ ମୋର କୋଷ୍ଠୀ ମଧ୍ୟ ଲାଲ ଶାଲୁ କନାରେ ବନ୍ଧାହୋଇ ପେଡ଼ି ଭିତରେ ଥିଲା । ମୁଠାଏ ଥିଲା, ଏବେ ଗୋଟିଏ ଅଛି । ସେଇଟି ମୋର । କେହି ମରିଗଲେ କୋଷ୍ଠୀଟା ବୋଧହୁଏ ପାଣିରେ ପକାଇ ଦିଆଯାଏ । ମଝିରେ ମଝିରେ ମୁଁ କୌତୂହଳରେ ସେଇଟାକୁ ଦେଖେଁ । କିନ୍ତୁ ଅକ୍ଷର ସବୁ ଓଡ଼ିଆ ଲିପି ବର୍ତ୍ତୁଳ ଅବସ୍ଥା ଲାଭର ପୂର୍ବଲେଖା ! ଅକ୍ଷର ବହୁ କଷ୍ଟରେ ପଢ଼ିଲେ ମଧ୍ୟ ଦିନ

ତେରଶ କୋଡ଼ିଏ ସାଲ ମିଥୁନ ମାସ ବୃହସ୍ପତି ବାସର ଅର୍ଥ ତର୍ଜମା କରିପାରେନି । ତେଣୁ କୋଷ୍ଠୀ ବନ୍ଧାହୋଇ ବାକ୍ସରେ ଥୁଆ ହୋଇଥାଏ ମୋ ଆଠପୁଅ ଝିଅର କୋଷ୍ଠୀପତ୍ର ସହିତ । ପୁଅ ଝିଅ ବାହା ହୋଇଯିବାପରେ ସେସବୁ ଭାଗ୍ୟ ତାଲପତ୍ରରେ ଟଣି ମୋପରୁ ଚାଲି ଯାଇଛନ୍ତି । ସ୍ତ୍ରୀ, ଶ୍ରେଷ୍ଠ ପିଲାଟି ନାହିଁ, ଧନ ପାଞ୍ଜିରୁ କଟି ଯାଇଛନ୍ତି ।

ଜାତକ ମୁଁ କେବେ ଦେଖିବାର ଅଭ୍ୟାସ ରଖିନି । ପ୍ରଥମ କାରଣ ମୋର ବିଶ୍ୱାସ ନାହିଁ ଜାତକ ଉପରେ; କାରଣ ଯେ ମୋ ଛୁଆଙ୍କ ଜାତକ କରିଥିଲା, ତାକୁ ତା' ପୁଅ ଓ ସ୍ତ୍ରୀ ମିଶି କୁରାଢ଼ିରେ ହାଣି ଦେଇଥିଲେ । ଯେବେ ସେ ଏତେବଡ଼ ଗଣକ ତେବେ ସେ ନିଜ ମୃତ୍ୟୁ ଦିନଟାକୁ ଜାଣି ସାବଧାନ ନହେଲା କାହିଁକି ? ଦ୍ୱିତୀୟତଃ ଜୀବନରେ ଦୁଇଥର ନେ ମହାଗ୍ରହ ଯଥା ( ଗୋଟିଏ ଦଶା ଚବିଶ ବର୍ଷ ରହେ ) ଭୋଗିଲିଣି, ଆଉ ଗୋଟିଏ ଦଶା ଜାତକରୁ ବାହାରି ପଡ଼ିଲେ ତାକୁ ଭୋଗିବାକୁ ଜୀବନ କାହିଁ ? ବୟସ ଜାଣିବାର ଅର୍ଥହୀନତା ବା ଅନାବଶ୍ୟକତା ଯୋଗୁଁ ଜାତକ ସାଇତି ସମ୍ଭାଳି ରଖାଯାଏ, ଯେମିତି ନ ଫାଟେ । ଫାଟିଲେ ଅଶୁଭ, ମୃତ୍ୟୁ ସନ୍ନିକଟର ସୂଚନା ଲକ୍ଷଣ ।

ଅସଲ କଥା ହେଲା ମୁଁ ଇଚ୍ଛାକରି ବୟସ ଜାଣିବାର ଚେଷ୍ଟା କରେନି । କଲେଜ ଦିନର ପଢ଼ାକଥାଟି ମୋ ମନକୁ ଖୁବ୍ ପାଇଛି । Not to Keep time for life is to live for ever. ସମୟର ହିସାବ ନ ରଖିଲେ ମଣିଷ ଅମର ହେବ, ସବୁଦିନ ଯୌବନ ଥିଲାପରି ଜଣାଯିବ । ଆଜି କେତେ ତାରିଖ, କାଲି କେତେ ତାରିଖ, କେବେ ବାହାଘର ହୋଇଥିଲା—ଏମିତି କଥା ପ୍ରତି ଧ୍ୟାନ ନଦେଲେ ମଣିଷ ଦେବତାଙ୍କ ପରି ଅର୍ବୁଦ ବର୍ଷ ବଞ୍ଚିବ । ସାର୍ଟିଫିକେଟ୍ ବୟସରୁ ମୁଁ ଜାଣିଛି ମୋର ବୟସ ସତୁରି ଆଡ଼କୁ ଯାଉଛି । ପିଲାମାନେ କେବେ ଯିମିତି କୋଷ୍ଠୀ ବାହାର ନ କରନ୍ତି ସେଥିପାଇଁ ଆଠଜଣ ପୁଅ ଝିଅଙ୍କ ଜନ୍ମତାରିଖ ଜାନୁଆରୀ ପହିଲାରେ ରେଜେଷ୍ଟ୍ରିରେ ଲେଖେଇଛି । ଦିନେ ଦିନେ ସେମାନେ ପଚାରନ୍ତି, "ବାପା ଆମର ସମସ୍ତଙ୍କ ଜନ୍ମ ଜାନୁଆରୀ ପହିଲାରେ, ଏ ପାଖ ସେ ପାଖ ନାହିଁ । ଏମିତି କିମିତି ସମ୍ଭବ ହେଲା ?" ମୁଁ ଉତ୍ତର ଦିଏ, "ଏମିତି ବି ହୁଏ ।"

ଅବସର ଗ୍ରହଣ ପରେ ପୁଣି ଏକ କଲେଜରେ ଚାକିରି କଲି । ସେମାନେ ମୋ ରୂପ ଚେହେରା ଦେଖି ଷାଠିଏ ବୋଲି ଧରିନେଇ ଦୁଇବର୍ଷ ପାଇଁ ନିଯୁକ୍ତି ଦେଲେ ।

କୋଷ୍ଠୀ ଜାତକ ଦେଖା ହୋଇ ନଥାନ୍ତା ଜୀବନରେ । ଯବେ ଖବର କାଗଜରୁ ଜାଣିଲି ରାଷ୍ଟ୍ରପତିଙ୍କ ଜନ୍ମଦିନ ପାଳନ ହେଉଛି; ପ୍ରଧାନମନ୍ତ୍ରୀ ଅମୁକ ଅମୁକ କେତେ କେତେ ଲୋକଙ୍କ ଜନ୍ମଦିନ ଉତ୍ସବ ହେଉଛି । ନନ୍ଦୋତ୍ସବ ପରି । ଭୋଜି ଭାତ ହେଉଛି, ଫଟୋ ବାହାରୁଛି, ବିଶିଷ୍ଟ ପୁରୁଷ ସ୍ତ୍ରୀ ସକାଳରୁ ସଞ୍ଜଯାକେ ଧାଡ଼ି ଧାଡ଼ି ଫୁଲତୋଡ଼ା, ଉପାୟନ ହାତରେ ନେଇ ଶୁଭେଚ୍ଛା ଜଣେଇବାକୁ ଚାଲିଛନ୍ତି । ବାପାମାଆ ଜନ୍ମୋତ୍ସବ ପାଳନ କରିବା କଥା । ମୋ ବାପାମାଆ ବଞ୍ଚିଥିଲାବେଳେ କେବେ ମୋ ଜନ୍ମଦିନ ପାଳି ନାହାନ୍ତି । ପାଳିଥିଲେ ଜନ୍ମତିଥି ଜାଣିବା ପାଇଁ ମୁଁ ଏତେ ହନ୍ତସନ୍ତ ହୋଇନଥାନ୍ତି । "ବଡ଼ ବଡ଼ ଲୋକ ମର୍ତ୍ତ୍ୟମଣ୍ଡଳେ ଜନ୍ମିଛନ୍ତି, ମୁଁ କ'ଣ ଜନ୍ମିନାହିଁ କାହା ପେଟରୁ ? ମୋର କାହିଁକି ଜନ୍ମଦିନ ପାଳନ ନ ହେବ ?" ତେବେ ସମସ୍ୟା ହେଲା କିଏ ପାଳିବ ? ପୁଅ ଝିଅ ମୋର ବାପାମାଆଙ୍କ ବଦଳରେ ଭଲ ପାଳନ କରନ୍ତେ ! ତେବେ ସେମାନେ କେହି ପାଖରେ ନାହାନ୍ତି; ଥିଲେ ବି କେଉଁଦିନଟି ମୋର ଜନ୍ମଦିନ ସେକଥା ତାଙ୍କୁ ଜାଣିବାର ସୂତ୍ର ଦେଇ ନାହିଁ । ଜାତକ ତ ବାକ୍ସରେ । ସେମାନେ ଜାଣନ୍ତି ନାହିଁ ହୁଏତ ହାତପନ୍ଥୁଅରେ ସେ ମୂଲ୍ୟବାନ ଚିଜଟି ଅଛି । ହେଲା, କେହି ନକରନ୍ତୁ । ବନ୍ଧୁ ସାହିତ୍ୟିକଙ୍କୁ ଭେଟି ମୋର ଉତ୍କଟ ଚିନ୍ତା ପ୍ରକାଶ କଲି, ଜନ୍ମ ତାରିଖ ସେପାଇଁ ଦେବି ବୋଲି ମଧ୍ୟ କହିଲି । ଉଦ୍ଦେଶ୍ୟ ହେଲା ନାଆଁ କାଗଜରେ ବାହାରିବ, ମୁଁ ବଞ୍ଚିଛି ବୋଲି ଲୋକେ ଜାଣିବେ । ସେମାନେ ବା କାହିଁକି ଏ ହେଙ୍ଗାମକୁ ଯାଇ ବଦ୍‌ନାମ ନେବେ ? ଯଦିବା ପାଳନ କରିଯିବ ତେବେ ଜନ୍ମଦିନ ଉତ୍ସବକୁ ଆସିବ କିଏ ? ମୁଁ ତ କେବେ କାହା ପୁଅଝିଅଙ୍କ ଏକୋଇଶିଆ, ଜନ୍ମଦିନକୁ ଯାଇନି । କାରଣ ଖରଚ ଅଛି । ଆମ ସମାଜରେ ଇଏ ଏକ ପ୍ରକାର ଶ୍ରେଷ୍ଠକାଟର ଯୌତୁକ ପ୍ରଥା । ନିମନ୍ତ୍ରଣ କଲାବେଳେ ଲୋକେ ଆଶା କରିଥାନ୍ତି ଖାଦ୍ୟପାନୀୟ ଖର୍ଚ୍ଚ ବାବଦ୍ ସନ୍ତୁଳିତ ଫେରିବ । ତଥାପି ଜନ୍ମଦିନ ପାଳନର ଖିଆଲ ମୋତେ କାବୁ କରି ଧରିଲା । ଅତଏବ ବାକ୍ସ ଖୋଲି ଶୁଭାରମ୍ଭ କଲି । ଶାଳୁକନା ଭିତରର ୧୩୬୦ ସାଲର ଜନ୍ମ ପତ୍ରିକାଟି ବାହାର କଲି, କେଉଁଦିନ କେଉଁ ମୁହୂର୍ତ୍ତରେ ଜନ୍ମ ସଠିକ୍ ଜାଣିବା ପାଇଁ । ସେବେ ବାପାମାଆ କାହିଁକି କେଜାଣି ବୟସ କମେଇ ଗୃହଶାଳୀ ପାଠଶାଳାରେ ନାଁ ଲେଖାଇଥିଲେ ।

ପୁଣି ସେଇ ୧୩୬୦ ସାଲ । ସ୍ୱସ୍ତି ଶ୍ରୀ ମୟୂରବଂଶୋଦ୍ଭବ ମୟୂରଭଞ୍ଜାଧୀଶ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ମହାରାଜାଙ୍କ ଦ୍ୱିତୀୟ ଅଙ୍କ...ଗୁଳିଲି ପୁରୁଣା ବଜାର ଗଡ଼କ ସାହି

ଆଡ଼କୁ । ଗୃହ କଲେମିଟର ରସ୍ତା । ପନ୍ଥସ୍ଥ ଜାଣିଲି ତମାଣ୍ଡ ଅଭାବରେ ଜ୍ୟୋତିଷୀ ଗଣକେ ଯାହାର ବୁଢ଼ା ସବୁ ଅକାଳରେ ମରିଗଲେଣି । ଜଣେ କହିଲା, "ମୁଁ ସେ କାମ ଜାଣେ ହେଲେ ଶହେ ବର୍ଷର ପାଞ୍ଜି ମୋଠି ନାହିଁ, ହାଇସ୍କୁଲର ହେଡ୍‌ପଣ୍ଡ ସଂସ୍କୃତ ପଣ୍ଡିତ ପାଖକୁ ଯାଆନ୍ତୁ । ତାଙ୍କ ବାପାଙ୍କର ପାଞ୍ଜି ସବୁ ସେ ସାଇତିଛନ୍ତି ।" ଗଲି, ସେ ଯାଇଥିଲେ ଟିଉସନକୁ, ଜଣେ ନାମଜାଦା ଡାକ୍ତରଙ୍କ ଘରକୁ । ଦୈବକ୍ରମେ ଡାକ୍ତରବାବୁ ମୋର ଫେମିଲି ଡକ୍ଟର । ଚେମ୍ବରର କାମ ଶେଷକରି ଡାକ୍ତର ଅନ୍ୟ ଏକ ଘରକୁ ଯାଇଥିଲେ । ଡାକ୍ତରଙ୍କ ପତ୍ନୀଙ୍କୁ କାଗଜଟି ଦେଇ ଫେରିଲି । ଦେଖିଲି ଡାକ୍ତରଙ୍କ ସ୍ତ୍ରୀ ସାଇତି ସମ୍ଭାଳି ଲକଲିଲୁରେ ଥିବା ମୂଲ୍ୟବାନ ଜେଟିକା ଯତନରେ ତାଙ୍କ ବାକ୍ସରେ ରଖିଲେ ।

ପ୍ରାୟ ସପ୍ତାହକ ପରେ ଡାକ୍ତରବାବୁ ନିଜେ ଆଣି କାଗଜଟି ସହିତ ପଣ୍ଡିତ ମହାଶୟଙ୍କ ଟିପ୍ପଣୀ ଦେଇଗଲେ । ଲେଖାଥିଲା ସନ ୧୩୨୦, ଶକାବ୍ଦ ୧୮୩୫, ଇଂରାଜୀ ୧୯୧୩ ଜୁନ୍ ଛବିଶ ।

ଦଶପନ୍ଦର ମିନଟ୍ ଭିତରେ ପୁଅଝିଅମାନଙ୍କ ପାଖରୁ ବାଣୁକ ଜନ୍ମ ତାରିଖର ସମ୍ବାଦ ଚାଲିଗଲା । ସେମାନେ ଜଣେ ଜଣେ ପ୍ରତିବର୍ଷ ତାଙ୍କ ମାଆଙ୍କ ତିଥି ସବୁ ପାଳୁଛନ୍ତି । ବାପାଙ୍କ ଜନ୍ମଦିନ କାହିଁକି ନପାଳିବେ ? ଭାବିଲି ସାହିତ୍ୟିକ ବନ୍ଧୁମାନଙ୍କୁ ଜଣାଇଦେବି ଏକ ବଡ଼ କାଗଜ ବିଜ୍ଞାପନ ଜରିଆରେ । ନା, ନା, ବହୁତ ଖର୍ଚ୍ଚ ପଡ଼ିବ, ଯିମିତି ଦରକାର ମ୍ୟୁନିସିପାଲିଟିମାନେ ହଜାର ହଜାର ଟଙ୍କା ଖର୍ଚ୍ଚକରି ପୃଷ୍ଠାକୁ ପୃଷ୍ଠା ବିଜ୍ଞାପନ ଦେଉଛନ୍ତି, ଯାହା ଫଳରେ ବୃଥା ଯଥେଚ୍ଛା ଖର୍ଚ୍ଚ ଟେକ୍ସ-ଦାତାଙ୍କ ଉପରେ ପଡ଼ୁଛି । ନାଆଁକୁ ଦାମ ବଳିପଡ଼ିବ । କେତେଜଣ ସାମ୍ବାଦିକଙ୍କୁ ଉତ୍ସବକୁ ଡାକିଲି । ଦୁ'ଜଣମାତ୍ର ସାମ୍ବାଦିକଙ୍କୁ । କାମଲ ଓ ବିମଲ । କାମଲ ସାମ୍ବାଦିକରୁ ଅନେକ ବନ୍ଧୁ, ତାଙ୍କୁ ନ ଡାକି ବିମଲଙ୍କୁ ଡାକିବି । ନିଜେ ଗୃହପାଞ୍ଚ-ଜଣଙ୍କ ଦ୍ୱାରସ୍ଥ ହୋଇ ମୋ ଅଭଡ଼ାଅ ସେମାନଙ୍କୁ ଦେଲି । କେଡ଼େ ବନ୍ଧୁଭାବାପନ୍ନ ସେମାନେ ! ସାଙ୍ଗେ ସାଙ୍ଗେ ସ୍ୱୀକୃତ ଓ ସହଯୋଗର ପ୍ରତିଶ୍ରୁତି ।

ଜନ୍ମଦିନ ଆସିଲା, ମନ୍ଦିରରେ ଶଙ୍ଖ, ଘଣ୍ଟା ଆରତିର ଧ୍ୱନି ସହିତ । ମୁଁ ନିଜେ ଅନନ୍ଦାତିଶଯ୍ୟରେ ଘଣ୍ଟା ପିଟିଲି । ବଡ଼ପୁଅ କେବେ ସନେ ଦେଇଥିବା ଧୋତି, ସାନପୁଅ ଦେଇଥିବା ଗେଞ୍ଜି, ମଝିଆ ଦେଇଥିବା ସାର୍ଟ ଏବଂ

ବେର୍ଥ ଦେଇଥିବା ଅନୁବାଦ ପିଛ, ନୂଆ ପଇଡା କାଛରେ ପକାଇ ତାକୁ ଅଲମାରିରେ ଓିଣପଟା ଫ୍ରେମରେ ଆବଦ୍ଧ ଥିବା ଠାକୁରଙ୍କ ଦାଷ୍ଟାଙ୍କ ପ୍ରଣିପାତ କରି ସାଗ୍ୟାଙ୍କୁ ମାଗିଲି ।

ସନ୍ଧ୍ୟବେଳକୁ ଅସିଲେ ଅଂଠ ଦଶଜଣ ସାମ୍ବାଦିକ ବନ୍ଧୁ । ସେ ଭିତରୁ ଜଣେ କବିତାଟିଏ ନେଇ ଆସିଥିଲେ । ପ୍ରଥମଧାଡ଼ି ହେଲା—"ମଧୁର ବାସରେ ମଧୁର ହାସରେ ନାଚେ ହୃଦୟ ଆବେଶେ" "ମଧୁର ବାସରେ ବସନ୍ତ କୁମାର"...ଅବ । ଆଉ ଜଣେ ବାଟରୁ ଦୁଇ ଗୁଚ୍ଛ କସମର ବୋଟନ ଡାଲକୁ କାହା ବାଡ଼ିରୁ ଭାଙ୍ଗି ତୋଡ଼ କରି ଅଣିଥିଲେ । ତାକୁ ଗୋଟାଏ ଟବ୍‌ରେ ପୋତି ଦେଇଥିଲି ଯେ ଏବେ ସବୁ ବର୍ଷଯାଏ କେତେ ସୁନ୍ଦର ଦିଶୁଛି ! ଯିଏ ଯାହା ଉପହାର ଦେବା ପାଇଁ ଅଣିଥିଲେ ଦରଦାମ୍ ସେ ସବୁର କଷିଲେ ଶୂନ୍ୟ ଫଳ ବାହାରିବ । ମୁଁ ତାଙ୍କୁ ଦେଲି ଘରତିଆରି କାକରା, ପୋଡ଼ପିଠା, ହରୁଚକୁଳି, ଖିରି ଯାହାକୁ ଯେତେ । ଖୁବ୍ ହୋହଲ୍ଲା ହେଲା । ଜଣେ ଅଧେ 'Happy birth day to you' ପାଟିକରି ଗାଇଲେ । ମୋ କୁକୁରକୁ କୁଣ୍ଢାଇ ନାଚିଲେ ମଧ୍ୟ । ଏତେ । ଏତେ ଜୋର୍ ଅଟ୍ଟହାସ୍ୟ ଯେ ପାଖ ପଡ଼ିଶା ଚମକିଗଲେ; ଆସିଲେ ନାହିଁ; ସେମାନଙ୍କ ମୁହଁରେ କେବେ ହସ ଫୁଟେ ନାହିଁ । ଏତେ ହିଂସା ଯେ ମୁଁ ମରିବାର ଶୁଣିଥିଲେ ଆଗ୍ରହରେ ଧାଇଁ ଆସିଥାନ୍ତେ । ମୁର୍ଦ୍ଦାରକୁ ଶ୍ରଦ୍ଧାଞ୍ଜଳି ଦେବା ପାଇଁ । ପାଣି ଟେକିବା ପାଇଁ ମଧ୍ୟ । ପରଦିନ ମୋ ନାଁରେ କେତେ କ'ଣ ଲେଖା ବାହାରିଲା, ସେମାନଙ୍କ ପରିଚାଳିତ ପ୍ରକାଶିତ ପତ୍ରପତ୍ରିକାରେ । ମୋତେ ବନ୍ଦ୍ର ପକାଇ କଥାବାର୍ତ୍ତା କରୁଥିବା ଦୁ'ଜଣଙ୍କ ଭାଷଣ ଶୁଣିଲି । ମହାପାତ୍ରେ କହୁଥାନ୍ତି ମାହାନ୍ତିକି, "ହଇହେ ରମାବୋବୁ, ତୁମର କେବେ ଜନ୍ମଦିନ ପଡ଼ୁଛି ?" ମାହାନ୍ତି ଉତ୍ତର ଦେଉଥାନ୍ତି, "ଅକ୍ଲାନୁଙ୍କ, କିଏ ଅଛ ତୁମଠୁ ବଳି ? ପଞ୍ଚାଶି ବର୍ଷର ବୁଢ଼ା—(ମୋ ବାପାମାଆ ଯିମିତି ତାଙ୍କ ପାଖରେ ମୋ କାତକ ରଖି ଯାଇଥିଲେ ! ) ଟା ପାଗଳ ହୋଇ କ'ଣ କରୁଛି ? ସ୍ୱାର ମରଣ ପାଖ ହୋଇ ଅସିଲା ।" ସେମାନେ କେହି ବଧାଇ ଦେଲେ ନାହିଁ; ହେଥିରେ କ'ଣ ପଇସା ପଡ଼ିଥାନ୍ତା । ମୁଁ କ'ଣ କାହାକୁ ଦୁଆରି ମୁହଁରେ ବସାଇ ରଖିଥିଲି ପୁନା ଚେନ୍, ମୁଦି ଫରଦ କରିବା ପାଇଁ, ମଳା ବୟସରେ ?

ପରଦିନ ଯେଉଁମାନେ ମୋର ପଞ୍ଚସ୍ତରି ବର୍ଷରେ ପଦାର୍ପଣ କରିବାର ଶୁଣିଲେ ସେମାନେ ଶୋକଗଦ୍‌ଗଦ୍ ସ୍ୱରରେ କହିଲେ, "ହେଁ, ବୁଢ଼ା ଏ ଯାକେ ବଞ୍ଚିଛି, ସ୍ୱାର

ମରଣ ନାହିଁ । ବୁଢ଼ୀ ମଣଯାଇ ତା'ର ହେବୁ ବଳକା ବୟସ ସ୍ୱାକୁ ଦେଇଯାଇଛୁ । ଯୁଦେହେଲ ବଢ଼ିଲଣି, ଫେର ଗୁଜର କରୁଛୁ; କେତେ ଲୋଭ ! ବୁଢ଼ା ହେଲେ ଏମିତ ଲୋଭ ହୁଅନ୍ତ ମଣିଷଗୁଡ଼ା !"

ପରଦନ ଜନ୍ମଦନର ଯାବତୀୟ ଘଟଣା ଓ ସମ୍ବାଦ କହଗଲ, ଅଧ୍ୟାପକବର୍ଗ ଓ ଜଣେ ଦ୍ୱ'ଜଣ ଗଭର୍ଣ୍ଣିଂ ବଡ଼ିର ସଦସ୍ୟଙ୍କ ସାମନାରେ । ଅରହର ସହିତ ସେବୁ ଶୁଣିଲେ ସମସ୍ତେ । ପ୍ରତ୍ୟେକର କଛୁ ନା କଛୁ ଅଭାବ ଅସୁବଧା ଥିବାରୁ ଉତ୍ସବରେ ଯୋଗଦେଇ ନପାର ଦୁଃଖପ୍ରକାଶ କଲେ ।

ସ୍କୁଲରେ ବବେର୍ଧୀଦଳ ବୈଠକରେ ବସି ମୋର ପଞ୍ଚପ୍ରଶତମ ଜନ୍ମଦନ ବଷୟ ଜୋର୍‌ସୋର୍ ଆଲୋଚନା କଲେ ବୋଲ ଶୁଣିଲ, ଏପରିକ ପରଗୃଲନା ସମିତର ଏକ ଜରୁରୀ ନୈଶ ବୈଠକ ହୋଇଥିଲ ।

ମୋର ସେଉଁଦନ ପଞ୍ଚପ୍ରଶ ବର୍ଷର ଦ୍ୱିତୀୟ ଦନ ଗୃଲଲ ସେଇଦନ ସମିତର ଏକ ପୂର୍ଣ୍ଣାଙ୍ଗ ବୈଠକରେ ମୋତେ ଡକାଯାଇ କୁହାଗଲ,···ଦେଖନ୍ତୁ ସାର୍ ଆପଣ ଆମକୁ କହଥିଲେ ଆପଣଙ୍କ ବୟସ ଷାଠିଏ ବାଷଠି ହେବ; କନ୍ତୁ ଆପଣ ପଞ୍ଚପ୍ରଶ ବର୍ଷରେ ସନେ ତଳେ ପଦାର୍ପଣ କଲେ ବୋଲ ପତ୍ରପତ୍ରିକାରେ ବାହାରଛୁ । ଆପଣଙ୍କୁ ଆଉ ରଖି ହେବ ନାହିଁ । ସରକାର invalid ବୋଲ କହବ । ଇସ୍ତଫାପତ୍ର ଦାଖଲ କରନ୍ତୁ ।

ସନ୍ନିପାତ ହେଲେ ଯିମିତ ଥାର୍ମୋମିଟରରେ ଉତ୍ତାପ ହଠାତ୍ ଖସି ଖସି ଅସେ ମୋର ବୟସର ସେମିତ ହେଲ । 'ରକ୍ତ ଅଣ୍ଡା ହୋଇଯାଉଛୁ' ପର ଲାଗିଲ । ସଙ୍ଗେ ସଙ୍ଗେ ପଞ୍ଚପ୍ରଶ ବର୍ଷର ଲକ୍ଷଣ ପ୍ରକଟିତ ହେଲ ସବାଙ୍ଗରେ । ଚୁଲ ପୂରା ଧଳା ହୋଇଗଲ ମୁଣ୍ଡରେ । ହାତ ଗୋଡ଼ର ଚୁଲ ମଧ ପାଚଗଲ । ବାର୍ଦ୍ଧକ୍ୟର ପୂର୍ବଲକ୍ଷଣ ଦେଖାଗଲ । ଅଙ୍ଗ ଗଳତ, ମୁଣ୍ଡ ପଳତ, ଦନ୍ତ ଦମନବହୀନ, କରଧୃତ ଦଣ୍ଡ କମ୍ପିତ । ଅଙ୍ଗପ୍ରତ୍ୟଙ୍ଗ ଏକାବେଳକେ ଶିଥିଳ । ମୃତ୍ୟୁ ଦ୍ୱାର ଦେଶରେ ।

ନଜକୁ ଧିକ୍‌କାର କଲ କାହିଁକ ଜନ୍ମଦନ ଖୋଜୁଥିଲ ଜାତକରୁ, ଯଦ ବା ଜନ୍ମଦନ ଜାଣିଲ, ତାକୁ ପ୍ରକାଶ କଲ କାହିଁକ ? ଅନ୍ତୁ ବା ବୟସ ଗୋପନ ନକଲ କାହିଁକ ଯାହା ବାପାମାଆ କରଥିଲେ । ଯାହା ସାମ୍ବାଦକଙ୍କ ଗହଣରେ ପାଳନ କଲ, ତାହା ମୋର ଜନ୍ମଦନ ନା ମୃତ୍ୟୁଦନ !

